ପ୍ରକାଶକ :

ଅଭିରାମ ମହାପାତ୍ର
ଗ୍ରନ୍ଥ ମନ୍ଦିର
ବିନୋଦବିହାରୀ, କଟକ-୨

ମୁଦ୍ରକ :

ପ୍ରେସ୍ ଇନ୍ଦ୍ରଧନୁ
ଓଡ଼ିଆବଜାର, କଟକ-୧

ପ୍ରଥମ ମୁଦ୍ରଣ : ୧୯୭୯
ପୁନର୍ମୁଦ୍ରଣ : ୧୯୮୩

ମୂଲ୍ୟ : ଟ ୧୬.୦୦
ସାଦାବନ୍ଧେଇ ଟ ୧୩.୫୦

# ସୂଚୀ





# ମିମିର ସଭ୍ୟତା ଶିକ୍ଷା

—ମିମି, କମ୍ ହ୍ୱିୟାର । କମ୍ ହ୍ୱିୟାର ।

ଗମ୍ଭୀର ଭାବରେ ଜୀବନବାବୁ ଡାକଲେ—ଯେମିତି ଡାକନ୍ତି ମୁଦାଲୀଙ୍କୁ—ଧନେଇ ପଗଡ଼ା ହାକର୍ ହେୟ୍...

ମିମି ଧୀରେ ଧୀରେ ଫୁଲୁକା ଫୁଲୁକା ପାଦଯୋଡ଼ିକ ଥପ୍ ଥପ୍ କରି ପ୍ରବେଶ କଲା କବାଟ ଫାଙ୍କରୁ ବାହାରି । ସେଇଟା ତାର ଗ୍ରୀନ୍ ରୁମ୍—ଆଉ ବାପାଙ୍କ ବସିବାଘରଟା ରଙ୍ଗମଞ୍ଚ ।

ମିମିର ହାତରେ ଧରିହୋଇଚି ଅଧଖଣ୍ଡେ ରୁଟି । ଦୁଇଟି ନାଲି ଟହଟହ ପାତଳା ଓଠର ଦୁଇପାଖରେ ଚିନି ବୁନ୍ଦା ବୁନ୍ଦା ହୋଇ ଲାଗିରହିଚି । ଅଳ୍ପସମୟ ପୂର୍ବେ ସେ ବୋଉ ପାଖରେ ଅଳି କରୁଥିଲା । ଆଖିର ଲୁହସ୍ରୋତ ବନ୍ଦ ହୋଇଯାଇଛୁ ସତ; କିନ୍ତୁ ଏପର୍ଯ୍ୟନ୍ତ ଶୁଖିନାହିଁ, ଗଢ଼ିଗଲୁଚି । ପେଣ୍ଟର ଫାଳେ ଝୁଲି ପଡ଼ିଚି, ଆଉ ଗୋଟିଏ ଫାଳ ହାତରେ ଟେକାହୋଇ ଧରିହୋଇଚି । ବଡ଼ ବଡ଼ ଭୟାର୍ତ୍ତ ଆଖିଯୋଡ଼ିକ ମେଲି ମିମି ଧୀରେ ଧୀରେ ଆଗେଇ ଆସିଲା ।

—କମ୍ ହ୍ୱିୟାର । ଜୀବନବାବୁ ଅଙ୍ଗୁଳି ଦେଖାଇ ଯେଉଁ ସ୍ଥାନଟି ଦର୍ଶାଇଦେଲେ ମିମି ତାକୁ ବେଳ ଟିକିଏ ଲମ୍ବାଇ ଦେଖି ମୁଣ୍ଡ ଟେକି ବଡ଼ ବଡ଼ ଆଖିଯୋଡ଼ିକ ଆହୁରି ବଡ଼ ବଡ଼ କରି ବାପାଙ୍କ ଆଡ଼େ ଅନାଇ ରହିଲା । ସ୍ଥାନଟି ବାପାଙ୍କ ହାତପାଆନ୍ତ ।

—କମ୍ ହ୍ୱିୟାର ଆଇ ସେ ।

ମିମି ଅମକିଯାଇଥିଲା, ଆଶା କରି ଯେ ବାପା ଉକ୍ତ ସ୍ଥାନକୁ ଯିବା ପାଇଁ ଅନୁଯୋଗ ଜିଦ୍ କରିବେ ନାହିଁ; କିନ୍ତୁ ବାପା ଜିଦ୍ ନ ଛାଡ଼ିବାରୁ ଦେଖି ସେ ଗୋଟିଏ ପାଦ ଆଗକୁ ବଢ଼ାଇ ଆଗେଇଲା ।

ଗତି ଏତେ ଧୀର-ମନ୍ଥର ଯେ ଜୀବନବାବୁ ଆଉ ଧୈର୍ଯ୍ୟ ଧରି ରହିନପାରି ଚୌକିରୁ ଉଠିପଡ଼ି ଟାଣିଆଣିଲେ ।

—କେତେଥର କହିଚି ଯେ ମା’ ଯାହା ଦେବେ ଆନନ୍ଦରେ ନେବୁ, ଗୋଳ କରିବୁ ନାହିଁ, ଆଉ ନେଇସାରି କହିବୁ ଥ୍ୟାଙ୍କ୍ ଇୟୁ...ଆଁ ଏ ?

ମିମିର ଆଖିପତାଯୋଡ଼ିକ କ୍ଷିପ୍ରଗତିରେ ଥରେ ବନ୍ଦହୋଇଗଲା ଓ ଖୋଲିଗଲା । ଏପରି ଅବସ୍ଥାରେ ମିମି ବାପାଙ୍କର ପ୍ରଶ୍ନର ଉତ୍ତର କଥାରେ ନଦେଇ ଆଖିପତା ଦ୍ୱାରା ଦେଇଥାଏ । ଜୀବନବାବୁଙ୍କୁ ଏ ଭାଷା ଯେତେବେଳେ ଜଣାନଥିଲା, ସେତେବେଳେ ସେ ରାଗୁଥିଲେ ଅଧିକରୁ ଅଧିକ; କିନ୍ତୁ ମିମିବୋଉ ଯେତେବେଳେ ବୁଝାଇଦେଲେ ଆଖିପତା

କେତେଥର ପଢ଼ିଲେ ମିନି କଅଣ ବୁଝେ, ସେତେବେଳେ ସେ ଶାନ୍ତ ହେଲେ । ଆଖିପତା ଯଦି ଥରେ ପଡ଼ି ପୁଣି ଖୋଲିଯାଏ କ୍ଷିପ୍ରଗତିରେ, ତେବେ ତାହାର ଅର୍ଥ ହେଲା—ହଁ, ସ୍ୱୀକାର କରୁଚି, ତମେ ଉପରେ କହିଥିଲ ।

ତେବେ କାନ୍ଦୁଥିଲୁ କାହିଁ ? ଜୀବନବାବୁ ଗର୍ଜନ କଲେ ।

ମିନିର ଫୁଟନ୍ତା ପଦ୍ମଫୁଲ ପରି ଆଖିଯୋଡ଼ିକ ମୁଦି ହୋଇଗଲା । ଏହାର ଅର୍ଥ ଏ ପ୍ରଶ୍ନର ଉତ୍ତର ମୁଁ କଅଣ ବା ଦେବି ? ଦେଇ ଲାଭ ବା କଅଣ ? ତୁମେ କଅଣ ବୁଝିବ କାନ୍ଦନ୍ତି କାହିଁକି !

—ସେ କଥା ମୁଁ ଶୁଣିବ ନାହିଁ । ବୋଉକୁ ଆଙ୍କ୍ ଇୟୁ କହୁଚୁ କି ନା ? ସିଧା କଥାରେ ହଁ କି ନା କହ ।

ମିନିର ଆଖିପତା ଦୁଇଥର ସଞ୍ଚାଳିତ ହେଲା ।

—କାହିଁକି କହିନୁ ? ଯା କହି ଆ !

ମିନିର ପ୍ରବେଶ ଯେଉଁ ପରିମାଣରେ ମନ୍ଥର ଓ ନିରାନନ୍ଦମୟ ଥିଲା, ପ୍ରସ୍ଥାନ ସେହି ପରିମାଣରେ କ୍ଷିପ୍ର ଓ ଆନନ୍ଦମୟ ହେଲା । ନେପଥ୍ୟରୁ ଶୁଭିଲା ବୋଉ ପିଠିରେ ଦାଲୁକିନା ଲଦିହୋଇପଡ଼ିବାର ଶବ୍ଦ ଓ ଚୁମ୍ବନର ଶବ୍ଦ ସହ ବାରମ୍ବାର ଥ୍ୟାଙ୍କ୍ ଇୟୁ, ଥ୍ୟାଙ୍କ୍ ଇୟୁ ।

ଆମେରିକା ଓ ବିଲାତରୁ ଫେରିବା ପରେ ଜୀବନବାବୁଙ୍କ ଘରେ ଶିକ୍ଷା, ସଭ୍ୟତା ଆଦିରେ ଘୋର ବିପ୍ଲବ ସୃଷ୍ଟି ହୋଇଚି । ତାଙ୍କର ଦୃଢ଼ ଧାରଣା ଜନ୍ମିଛି ଯେ ପାଶ୍ଚାତ୍ୟ ଦେଶର ସର୍ବାଙ୍ଗୀନ ଉନ୍ନତିର ପ୍ରଧାନ କାରଣ ହେଉଚି ଘରେ ପିଲାମାନଙ୍କ ଶୃଙ୍ଖଳା ଶିକ୍ଷା, ସଦାଚାର ଶିକ୍ଷା । ସେମାନଙ୍କ ଘରେ ପିଲାମାନଙ୍କ ଅଳି ନାହିଁ, ଅଝଟପଣିଆ ନାହିଁ, ଘରେ ଟିକିଏ ଗୋଳମାଳ ନାହିଁ । ଆଉ ଆମ ଦେଶର ଘରେ ! କେଉଁ ପିଲା କାଚଗିଲାସ ଫୋପାଡ଼ିଦେଲାଣି ତ, କିଏ ଗଛ କାଟିଦେଇସାରିଲାଣି । କିଏ ବାପାଙ୍କ ଜୋତା ପଟେ ପିନ୍ଧି କେଉଁଠି ଗୁଡ଼ିଦେଇ ଆସିଲାଣି ତ ଆଉ ଜଣେ ମଶାରି ଉପରେ ଶୋଇ ଝୁଲୁଚି ! ଆମ ସ୍ତ୍ରୀମାନେ ବି ସେମିତି !

···ଏଇ ତ ସେଦିନ ଦେଖିଲି ବିଜୟଙ୍କର ପିଲାମାନଙ୍କୁ । ଗୋଟିଏ ଭଲ ଟେବୁଲରେ କଣ୍ଟା ପିଟୁଛନ୍ତି । ବିଜୟଙ୍କୁ ପଚାରିଲି, ଏ କଅଣ ? ବିଜୟ କହିଲା, ପିଲାଏ ଖେଳୁଛନ୍ତି । ଅତି କ୍ଷୋଭର ସହିତ କହିଲି, ବାଃ ମଜାର ଖେଳ ତ, କିନ୍ତୁ ଏମିତି ଖେଳ ପାଇଁ ତୋତେ ଅନେକ ଖର୍ଚ୍ଚାନ୍ତ ହେବାକୁ ପଡ଼ୁଥିବ ତ ? ହ୍ୟାପ୍ ଅମ୍ଲାନ ବଦନରେ କହିଲା, ନା ଖର୍ଚ୍ଚ ସେମିତି ବେଶି ନୁହେଁ । ଖୁଚୁରା ହିସାବରେ କଣ୍ଟା ନକିଣି ମହଣଦରିଆ କଣ୍ଟା କିଣିଥାଏ !

କିନ୍ତୁ ଆମେରିକା ବିଲାତରୁ ଫେରି ଜୀବନବାବୁ ଦୋର୍ଦ୍ଦଣ୍ଡ ପ୍ରତାପରେ ସୌଜନ୍ୟ ଶିକ୍ଷା ଦେବାରେ ଲାଗିପଡ଼ିଲେ । ବଡ଼ପିଲାଙ୍କୁ ଉଠି ବାପା ବୋଉଙ୍କୁ ଗୁଡ଼ମର୍ଣ୍ଣି, ତା'ପରେ

ଦାନ୍ତଘଷା । ଦାନ୍ତଘଷା ପାଇଁ ସେ ପାଉଁଶ ବା କୋଇଲାଗୁଣ୍ଡ ଉଠାଇଦେଇ କିଣିଦେଲେ ଟୁଥ୍‌ପେଷ୍ଟ ଓ ବ୍ରୁସ୍ । ମିମି ପ୍ରଥମେ ଟୁଥ୍‌ପେଷ୍ଟ ସବୁ ଖାଇଦେଉଥିଲା; କିନ୍ତୁ ଦୁଇ ଘୁଷରଢ ଢେଙ୍କ ଖାଇଲା ପରେ ଠିକ୍‌ଏ ବାଗକୁ ଆସିଚ । ଦାନ୍ତଘଷା ପରେ ବ୍ରେକ୍‌ଫାଷ୍ଟ । ଯେଉଁଠି ପାରେ ସେଇଠି ବସି ନୁହେଁ, ଖାଉମତ ଟେବୁଲ ଚୌକିରେ । ଖାଇବାକୁ ଦେଲେ ବୋଉକୁ କହିବାକୁ ହବ ଥ୍ୟାଙ୍କ୍ ଇୟୁ । ମିମି କିନ୍ତୁ ଏସବୁ ସେମିତି ପସନ୍ଦ କରିପାରିନାହିଁ ଏ ପର୍ଯ୍ୟନ୍ତ; ବିଶେଷତଃ ଥ୍ୟାଙ୍କ୍ ଇୟୁ କହିବାକୁ ତାକୁ ଖୁବ ଲାଜମାଡ଼େ ।

ମିମିବୋଉଙ୍କର ବି ଏସବୁରେ ଆପତ୍ତି । ଦିନସାରା ପିଲାମାନଙ୍କ ଉପରେ ପାଟି କରୁଥିବେ, ଆଉ କହୁଥିବେ 'ମରିଯା ଆନ୍ତି କି ମୁଁ ! ଏଗୁଡ଼ାକ ଲୁଆଡ଼ୁ ଆସିଲେ, ବଣୁଆ-ଗୁଡ଼ାକ ।' କିନ୍ତୁ ଶୃଙ୍ଖଳା ଆସିବା ପରେ ସେ ପୁଣି ଓଲଟିପଡ଼ି କହିଲେ, 'ଏସବୁ ସୁଖ ଲାଗୁନାହିଁ, ପିଲାମାନଙ୍କ ଗୋଳମାଳ ନାହିଁ, ଅଝଟପଣିଆ ନାହିଁ, ଘରଟା ମଶାଣି ଭଳି ଲାଗୁଛି ।'

ମିମିବୋଉଙ୍କ ଆଖି ଛଳଛଳ ହୋଇଗଲା, କିନ୍ତୁ ଜୀବନବାବୁ ଗୋଟାଏ ବକ୍ତୃତା ଝାଡ଼ିଦେଲେ । କହୁ କହୁ ସେ ନିଜ କଥାରେ ନିଜେ ଏପରି ମୁଗ୍ଧ ହୋଇଗଲେ ଯେ କଥାର ସୂଅ ଖୁଲିଲା ।

…ଆଜି ଏ ଦେଶ ଆଗେଇ ପାରୁନାହିଁ କାହିଁକି ? ମୁଁ ପୁଣି ପଚାରେ, ଏ ଦେଶ ଆଗେଇ ପାରୁ ନାହିଁ କାହିଁକି ? ଘରିଆଡ଼େ ବିଶୃଙ୍ଖଳା, କାହାର କାହା ପ୍ରତି ଭୟ ନାହିଁ । ଯିଏ ଯାହା ଇଚ୍ଛା ତାହା କରିଯାଉଚି । ଯଦି ଦୁର୍ନୀତି ହେଉଚି ତ ସେଥିପାଇଁ ଆଇନ୍ ଅଛି, ଅଦାଲତ ଅଛି । ନା, ସେ ବାଟ ଧରିବେ ନାହିଁ—ବିକ୍ଷୋଭ, ବିଦ୍ରୋହ କରିବେ । କଅଣ ନା ବିଳମ୍ବ ହେଉଚି ଆଇନ ବାଟେ । ତେବେ କଅଣ ଆଇନ ଉଠିଯିବ ? ଧୈର୍ଯ୍ୟ ନାହିଁ, ଶୃଙ୍ଖଳା ନାହିଁ…

—କିରେ, ଶୃଙ୍ଖଳା ବିଷୟରେ ଏତେ ବିଶୃଙ୍ଖଳ ଭାବରେ ଉତ୍ତେଜିତ ହେଉଚ ଯେ ! ହସି ହସି ପ୍ରବେଶ କଲେ ବନ୍ଧୁ ବିଜୟବାବୁ ।

—ତୋର ସେଥିରୁ କଅଣ ମିଳିବ । ତୁ ଯା ପିଲାଙ୍କୁ ମହଣଦରିଆ କଣ୍ଢା କିଣିଦେବୁ । ହ୍ୟାପ୍ ଭୂମର ପାଇଁ…ଜୀବନବାବୁଙ୍କ ସବୁ କ୍ରୋଧ ବନ୍ଧୁଙ୍କ ଉପରେ ପଡ଼ିଲା ।

—ଆରେ, ପିଲାଙ୍କ ଦାଉରୁ ଘରୁ ପଳେଇଆସିଲି ଯେ ଏଠି ବଡ଼ଙ୍କ ଦାଉ ।

—ଆପଣା ହସ୍ତେ ଜିହ୍ୱା ଛେଦ କେ ତାର ଅଛି ପ୍ରତିବାଦୀ । ତୁ ତ ନିଜେ ପିଲାଙ୍କୁ ସେମିତି କରିଚୁ, ଆଉ ପଚ୍ରେଇ ଲାଭ କଅଣ ?

—ବୁଝିଲୁ ଜୀବନ, ଆନୁଷ୍ଠାନିକ ଭାବରେ ବାହାରର ଶୃଙ୍ଖଳାରେ କିଛି ଲାଭ ତ ନାହିଁ; ବରଞ୍ଚ ଘୋର କ୍ଷତି । ଗୀତାରେ ପଢ଼ିନାହୁଁ, କର୍ମେନ୍ଦ୍ରିୟକୁ ସଂଯମ କରି ଇନ୍ଦ୍ରିୟ ବିଷୟସବୁକୁ ଯିଏ ସର୍ବଦା ଚିନ୍ତୁଥାଏ ସେ ମିଥ୍ୟାଚାରୀ ।

—ଚୁପ୍ କର, ରଖ୍ ତୋ ଗୀତା ଭାଗବତ । ଦ୍ୟାପ ଯେ ଦେଶ କ୍ଷିପ୍ରଗତିରେ ଆଗେଇ ଚାଲିଚ, ଆଉ ଏଠି ଗୀତା ଉପରେ ଶୋଇଗଲେଣି ···

—ଆରେ ଜୀବନ, ବୈଜ୍ଞାନିକମାନେ କୁହନ୍ତି, ଯେଉଁ ବସ୍ତୁ ଯେତେ କ୍ଷିପ୍ରଗତିରେ ଯାଏ, ତାହାର ଜଡ଼ତା ସେତେ ବୃଦ୍ଧି ପାଉଥାଏ । ଧୀରେ ବନ୍ଧୁ ଧୀରେ···

—ନା, ଆଉ ବେଳ ନାହିଁ । ଦେଖ୍, ମୁଁ ମିମିକୁ କେମିତି ଶୃଙ୍ଖଳା ଶିଖାଇଚି । ମିମି କମ୍ ହିୟାର୍ ।

ଉହୁଁ, ହେଲ ନାହିଁ । କମ୍ ହିୟାର୍ ପ୍ଲିଜ୍ । ଯଦି କହୁଚ ସେ ଦେଶର ସଭ୍ୟତା ମାନୁ···

—ମିମି କମ୍ ହିୟାର୍ ପ୍ଲିଜ୍ । ଜୀବନବାବୁ ବଇସ୍ୟଙ୍କ କଥା ସ୍ୱୀକାର କରିନେଇ 'ପ୍ଲିଜ୍' ବ୍ୟବହାର କଲେ ସତ, କିନ୍ତୁ କହିବାର ଭଙ୍ଗୀ ସେମିତି ମୁଦାଲିକୁ 'ହାଜର୍ ହେୟ' ଡାକିବା ଭଳି ।

ବାପାଙ୍କ ମୁହଁରୁ 'କମ୍ ହିୟାର୍' ସହିତ ଗୋଟିଏ ନୂତନ ଶବ୍ଦ ଶୁଣି ମିମି କୌତୂହଳୀ ହୋଇ ଆଗେଇ ଆସିଲା ରଙ୍ଗମଞ୍ଚକୁ; କିନ୍ତୁ ଏ ରଙ୍ଗମଞ୍ଚ ମିମିର ବାହାଦୁରି ଦେଖାଇବା ପାଇଁ ନୁହେଁ—ମିମିର ବାପାର ବାହାଦୁରି ଦେଖାଇବା ପାଇଁ ସର୍ବଦା ବ୍ୟବହୃତ ହୁଏ ।

ମିମିର ଧୀରେ ପ୍ରବେଶ ଓ ସାଙ୍ଗେ ସାଙ୍ଗେ ଜୀବନବାବୁଙ୍କ ଗୋଟାଏ ହୁଙ୍କାର । ଏ ହୁଙ୍କାରଦ୍ୱାରା ସେ ସଙ୍କେତ ଦେଲେ ବଇସ୍ୟଙ୍କୁ ନମସ୍କାର କରି ଗୁଡ଼୍‌ମର୍ଣ୍ଣିଂ କହିବାକୁ ହେବ । କିନ୍ତୁ ମିମିର ସେ ସବୁ ଏପର୍ଯ୍ୟନ୍ତ ଆୟତ୍ତ ହୋଇନାହିଁ । ଯାହାବା ଟିକିଏ ଆୟତ୍ତ ହୋଇଚି, ବାପାଙ୍କ ହୁଙ୍କାର ସବୁ ଗୋଳମାଳ କରିଦେଲାଣି ।

କ୍ଷୀଣକଣ୍ଠରେ ମିମି କହିଲା, ଗୁଡ଼ ନାଇଁ ।

ବଇସ୍ୟ ହୋ-ହୋ ହସି କହିଲେ, ଗୁଡ଼ ନାହିଁ ମା, ନ ଥାଉ, ଚକ୍‌ଲେଟ ତ ଅଛୁ ?

ମିମିର ଓଠ ଦୁଇଟି ପ୍ରସ୍ଫୁଟିତ ଗୋଲାପ ଫୁଲ ପରି ଆନନ୍ଦରେ ଖୋଲିଗଲା । ମୁକ୍ତା ଭଳି ସାନ ସାନ ଦାନ୍ତଗୁଡ଼ିକ ହସି ଉଠିଲେ ଏକାସାଙ୍ଗରେ । ମୁଣ୍ଡ ଟୁଙ୍ଗାରି ସେ ଜଣାଇଲା, ବୋଉ ଟିଣରେ ଟିକେ ଚକ୍‌ଲେଟ ଲୁଚାଇ ରଖିଚି, ମୁଁ ଦେଖିଚି ।

ଜୀବନବାବୁ କିନ୍ତୁ ପୁଣି ଗର୍ଜନ କରିଉଠିଲେ । 'ଗୁଡ଼୍‌ମର୍ଣ୍ଣିଂ' ନ କୁହାଇ ସେ ଛାଡ଼ିବେ ନାହିଁ । ମିମିର ସେ କଥାଟା ଅସ୍ପଷ୍ଟଭାବରେ ମନକୁ ଆସିଗଲା । ସେ କହିଲା, ଗୁଡ଼୍ ମର୍ଲଣି ।

ଜୀବନବାବୁଙ୍କର ମର୍ମନ୍ତୁଦ ଗର୍ଜନ ଶୁଭିଲା । ମିମିର ଆଖିପତା ଥରଥର ପଡ଼ିଲା ଉଠିଲା—ଯାହା କହିବାର ତ କହିଲା, କେଜାଣେ କାହିଁକି ହେଣ୍ଟାଳୁଚ ଶୁଣେ !

ବିଜୟ ପୁଣି ଥରେ ହୋ-ହୋ କରି ହସି ଉଠିଲେ । ଆନନ୍ଦରେ ମିମିକୁ କୋଳକୁ ଟାଣିନେବାକୁ ହାତ ବଢ଼ାନ୍ତେ ମିମି ଭୟରେ ପଛେଇଗଲା । କଅଣ ଗୋଟାଏ ହାତରେ ଅଛି, ତାକୁଇ ଲୁଚେଇବାକୁ ସେ ଯେପରି ବ୍ୟାକୁଳ ।

ଜୀବନବାବୁ ପଚାରିଲେ, ହାତରେ କଅଣ ?

ମିମିର ଆଖିପତା ମୁଦି ହୋଇଗଲା । କବାଟ କଣରୁ ମିମିବୋଉ ଉତ୍ତର ଦେଲେ, ଟୁଥ୍ ପେଷ୍ଟ ସରିଯାଇଚି ଯେ ଝୁଁଥ ଖୁଆ କରି ରଖିଥିଲି ସେଇଥିରେ ଦାନ୍ତ ଘଷୁଛନ୍ତି । ସକାଳୁ ପାଞ୍ଚଥର ଦାନ୍ତଘଷା ସରିଲାଣି ।

ସମସ୍ତେ ଏଥର ହୋ-ହୋଇ କରି ହସିଉଠିଲେ ।

ଜୀବନବାବୁ ଆକ୍ଷେପ କରି କହିଲେ, ଏଟା ଅସଭ୍ୟ ରହିଗଲା । ପାରିଲି ନାହିଁ ସ୍ୱାକୁ ।

□□□

# ସ୍ୱର୍ଗାଦପି

ଖରାବେଳେ ନରିଆ-ମା' ଘରେ ବସେ ନନ୍ଦପଡ଼ାର ବୁଢ଼ୀମାନଙ୍କର ବୈଠକ । ବୋହୂମାନେ ଯେ ଯାହା ଘରୁ ନେଇଯାଆନ୍ତି ପଖାଳ, କାଞ୍ଜି, ବେସର, ମହୁର, ସନ୍ତୁଳା, ରାଇ ଇତ୍ୟାଦି । ଯିଏ ଯେତେ ପ୍ରକାର ଭଲ ଜିନିଷ ତିଆରି କରିଥାଆନ୍ତି, ନେଇ ଯାଆନ୍ତି ନରିଆ-ମା' ଘରକୁ । ଅତି ଭୟରେ ଶାଶୁମାନଙ୍କ ପାଇଁ ରାନ୍ଧିଥାଆନ୍ତି ବୋହୂମାନେ; କାରଣ ପ୍ରତିଦିନ ସେଇଠି ବୋହୂମାନଙ୍କର ରାନ୍ଧୁଣୀପଣିଆର ଟିକିନିଖି ବିଚାର ହୁଏ ।

ବାସୁଆ-ମା' ପାକୁଆ ପାଟିରେ ମେଞ୍ଚାଏ ଶାଗ ଗୁଡ଼ିଦେଇ ଦୁଇ ମାଢ଼ି ଭିତରେ ଥରେ ଦାନ୍ତ ଦେଇ କହିଲା, ଉଁ ହୁଁ ହୁଁ, ମାଆଲୋ, କେତେ ନୁଣ ଦେଇଛୁ ଶାଗରେ ତୋ ବୋହୂଟା ଲୋ, ଆମ୍ବକଷି ! କୁହନ୍ତି, ଶାଗ ଅଲଣା ମାଛରେ ଲୁଣ, ତେବେ ଜାଣିବ ରାନ୍ଧୁଣୀ ଗୁଣ । ଟିକିଏ କଅଣ ଖାତିର ଅଛି ଏ ବୋହୂଙ୍କର । ଆଜିକାଲି ପାଠପଢ଼ା ବୋହୂ ସବୁଏ ଆସିଛନ୍ତି । ମାଆଲୋ ଢ଼ପ !

ବୋହୂ ମେଞ୍ଚାକ ଓଢ଼ଣା ଟାଣି ଜାକିଜୁକି ହୋଇ ମନ୍ଦାଏ ତେଲଗୁଣ୍ଡି ପୋକ ଭଳି ଗୋଟିଏ କଣରେ ଛୁଡ଼ାହୋଇଥାଆନ୍ତି ଶାଶୁମାନଙ୍କ ଆଦେଶ ବା ଟିପ୍ପଣୀକୁ ଟାକି

ରହ । ବାସୁଆ-ମା'ର ଟିପ୍ପଣୀ ଶୁଣି ସେମାନଙ୍କ ଭିତରେ ପରସ୍ପର ପ୍ରତି ଘୃଣାଭାବର ଗୋଟିଏ ତରଙ୍ଗ ଖେଳିଗଲା ।

ଆମ୍ବକଷିର ନାଁ'ଟି ଆମ୍ବକଷି ନୁହେଁ । ବାସୁବାବୁଙ୍କ ମା' ଓ ଗୋପୀ ବାବୁଙ୍କ ମା' ଦୁହେଁ ବସିଛନ୍ତି ଆମ୍ବକଷି । ଦୁହେଁ ଏକାସାଙ୍ଗରେ ନନ୍ଦପଡ଼ାକୁ ବୋହୂହୋଇ ଆସିଥିଲେ । ସେତେବେଳେ ଧନେ ଶସ୍ୱଧନର ଉଦୁଉଦଆ ଖସୁବେଳେ ମଇଦାନ ଯିବା ବାହାନାରେ ନନ୍ଦମାନଙ୍କର ଇଜମାଲି ପ୍ରକାଣ୍ଡ ଆମ୍ବତୋଟାରେ ଦୁହେଁ କୁଲୁ କୁଲୁ କୋଇଲିର ଅବଶ୍ରାନ୍ତ କୁହୁକୁହୁ ଶୁଣି ଶୁଣି ବିଦେଶରେ ଥିବା ସ୍ୱାମୀମାନଙ୍କ ବିରହରେ ବିଧୁଣିତା ହୋଇ ଉଠିଥିଲେ ଓ ନୀରବରେ ଅଶ୍ରୁ ବିସର୍ଜନ କରିବା ପରେ ପରସ୍ପରର ଲୁହ ପୋଛିଦେଇ ପରସ୍ପରକୁ ଆମ୍ବକଷି ଖୁଆଇ ଦେଇଥିଲେ । ସେଇଦିନୁ ସେମାନେ ପରସ୍ପରକୁ ଆମ୍ବକଷି ବୋଲି ଡାକନ୍ତି ।

ଗୋପୀବାବୁଙ୍କ ସ୍ତ୍ରୀ ଫୁସ୍‌ଫୁସ୍ କରି ତାଙ୍କର ସଇଙ୍କୁ କହିଲେ, କି ବୁଦ୍ଧି କଲି ଗୋ ସଇ ମୁଁ ଆଜି ! କାହିଁକି ପୋଡ଼ାମୁହିଁ ମୁଁ ତାଙ୍କ ଚିଠି ପଢ଼ିବାକୁ ଗଲି । ଶାଶୁମାନେ କାଲେ ଏ କଥା ଶୁଣିପକାଇବେ ଏଇ ଭୟରେ ସଇ ତାଙ୍କ ସଇଙ୍କ ମୁହଁରେ ହାତ ଥାପି-ଦେଲେ ।

ଗୋପୀବାବୁଙ୍କ ଚିଠି ଆଜି ଆସିଥିଲା । ତାଙ୍କର ସ୍ତ୍ରୀ ସେଇ ଚିଠି ଧୋଇବାଇ ତେଡେବାଇ ପଢ଼ୁ ପଢ଼ୁ ବିଭୋର ହୋଇ କେତେବେଳେ ଶାଗରେ ଦୁଇଥର ଲୁଣ ପକାଇ-ଦେଇଛନ୍ତି ।

କିନ୍ତୁ ସେ ବିଷୟରେ ବିଶେଷ କିଛି ଆଉ ଟିପ୍ପଣୀ ହେଲାନାହିଁ । ରଜକୁଟି ଅସୁଚି । ପୁଅମାନେ ସବୁ ଆସିବେ । ମା'ମାନଙ୍କର ମନ କୁଣ୍ଢେ ମୋଟ । ସେ ଖୁସିରେ ଆମ୍ବକଷି ବୋହୂର ଲୁଣିଆ ଶାଗ ଉପରେ ସାମାନ୍ୟ ଟିକିଏ ଟିପ୍ପଣୀ ହେଲା ସିନା, ସମସ୍ତେ ସେଥିରୁ ମେଞ୍ଚାଏ ମେଞ୍ଚାଏ ପାଳୁଆ ପାଟିରେ ପକେଇ ଟାକରା ମାରିଦେଲେ ।

ଖାଇବା ସରିଲା । ବୋହୂମାନେ ଖୁସି ମନରେ କଲବଲ ହୋଇ ଦୌଡ଼ିଲେ ଯେ ଯାହା ଘରକୁ ଦ୍ୱିତୀୟ ପରୀକ୍ଷା ପାଇଁ । ଶାଶୁମାନେ ଖାଇସାରିବା ପରେ ଯାହା ଘରକୁ ଖୁସି ହେବ ତା ଘରକୁ ଯିବେ, ଆଜି ସ୍ୱା ଘର ତ କାଲି ତା' ଘର । ସେ ଘର ବୋହୂ ଗୋଟିଏ ଲମ୍ବାଚଉଡ଼ା ହେଁସ ପାରିଦେବ । ଶାଶୁ ବୁଢ଼ୀମାନେ ତା ଉପରେ ଲମ୍ବେ ଲମ୍ବେ ପଡ଼ିଯିବେ । ସେ ଘର ବୋହୂ ପାନକୁଟାରେ ପାନ ଛେଚି ଟେଳାଏ ଟେଳାଏ ସମସ୍ତଙ୍କ ମୁହଁରେ ଗଳେଇଦବ । ଶାଶୁମାନେ ପାକୁଆ ପାଟି ବୁଲାଇବେ । ତା'ପରେ ସେ ଘର ବୋହୂ ଜଣ ଜଣ କରି ପ୍ରତ୍ୟେକ ଶାଶୁଙ୍କୁ ଘଷିବସିବେ । ସେଇଠି ଗୁଳବ ପ୍ରଶଂସା ବା ନିନ୍ଦା । ଗୋଟିଏ ବଲୁଆ ବୋଦେଇଲେ ଯେମିତି ସବୁ ବଲୁଆ ବୋବାନ୍ତି, ଜଣେ ନିନ୍ଦା କଲେ

ସେମିତି ସମସ୍ତେ ନିନ୍ଦା କରି ବସିବେ । ସେ ନିନ୍ଦା ବି ପ୍ରଶଂସାରେ ପରିଣତ ହେବାକୁ ବେଶି ସମୟ ଲାଗେନାହିଁ । ଯାହା ଘରେ ଯେଉଁ ଦିନ ପାଳି ପଡ଼େ ସେ ଦିନ ସେ ବୋହୂର ଛାତି ଭୟରେ ଧଡ଼ଧଡ଼ ହେଉଥାଏ । ଶାଶୁମାନେ ଘଷା ଖାଇ ଖାଇ ଗପ କରୁ କରୁ ଯେତେବେଳେ ଶୋଇପଡ଼ିବେ, ତା ପରେ ବସିବ ବୋହୂମାନଙ୍କ ପଙ୍ଗତ । ଫୁସ୍ ଫୁସ୍ କରି ନିଜ ସ୍ୱାମୀମାନଙ୍କ ବିଷୟରେ କେତେ କଥା, ସାମାନ୍ୟ ସାମାନ୍ୟ କଥାରେ କେତେ ହସର ଲହରୀ ପରେ ଲହରୀ, ଆଉ ଚାରିଆଡ଼କୁ ଚାହିଁ ଡରି ଡରି ମଝିରେ ମଝିରେ ଶାଶୁମାନଙ୍କ ଉପରେ ଟିପ୍ପଣୀ ।

ଆଜି ଶାଶୁମାନେ ଖାଇସାରି ବାହାରିଲେ ଆମ୍ବକପି ଘରକୁ । ଗୋପୀବାବୁଙ୍କ ସ୍ତ୍ରୀ ପ୍ରମାଦ ଗଣିଲେ; କିନ୍ତୁ ଉପାୟ ନାହିଁ । ସେ ବି. ଏ. ପାସ୍ କରିଚନ୍ତି ବା ବଡ଼ଲୋକର ଝିଅ ବା ଶ୍ରୀ ଗୋପୀନାଥ ନନ୍ଦ, ଏମ୍. ଏ., ଡେପୁଟି ମାଜିଷ୍ଟ୍ରେଟଙ୍କ ସ୍ତ୍ରୀ ବୋଲି ନିସ୍ତାର ପାଇବେ ନାହିଁ ।

ଘଷା ଖାଇ ଖାଇ ବାସୁଆ ମା’ କହିଲେ, କିଲୋ ବୋହୂ, ତୁମ କଲେଜରେ ଘଷିବା ଶିଖାନ୍ତି କି ? ଏଡ଼େ ସୁନ୍ଦର ଘଷା କେମିତି ଶିଖିଲୁ ବା !

ହରିଆ ବୋଉ କହିଲେ, ଅହିସୁଲକ୍ଷଣୀ ହୋଇ ଥା ମା, ବାଳରେ ସିନ୍ଦୁର ନାଇଥା ମା’ । ଆମ୍ବକପିର କପାଳ ଭଲ । ଗୋଟିଏ ପୁଅ, ହେଲେ, ଶହେ ପୁଅ ସଙ୍ଗେ ସମାନ । ହାକିମ ଚାକିରି । ସେଥିରେ ବୋହୂ କରିଚି ଯେ ଲକ୍ଷ୍ମୀ ତ !

ଦୀର୍ଘନିଃଶ୍ୱାସ ପକାଇ ଆଖିର ଲୁହ ପୋଛି ଗୋପୀବାବୁଙ୍କ ମା’ କହିଲେ, ଆଶୀର୍ବାଦ କରିଥ ତୁଳସୀ, ପୁଅ ନାତି ନେଇ ସେମାନେ ସୁଖରେ ଘର କରନ୍ତୁ, ସମସ୍ତଙ୍କ ମନକଥା ବୁଝି କାମ କରନ୍ତୁ । ମୋର ଆଉ କେତେଦିନ ବା, ତାଳଗଛର ଚୁଇ, ଏବୁଣି ଅଛି ଏବୁଣି ନାହିଁ ।

ଆଉ ଥରେ ଦୀର୍ଘ ନିଃଶ୍ୱାସ ପକାଇ ଲୁହ ପୋଛି ସେ କହିବସିଲେ ତାଙ୍କର ଦୁଃଖର କାହାଣୀ । ଯେତେବେଳେ କଥା ପଡ଼େ ସେ ଫିଟାନ୍ତି ତାଙ୍କ ଜୀବନର ସେଇ ଅଧ୍ୟାୟଟି । ସେ ଅଧ୍ୟାୟଟି ତାଙ୍କର ଯେତିକି ଦୁଃଖର ସେତିକି ସୁଖର ମଧ୍ୟ ।

…ସେ ଦିନ କଥା ପରି ଲାଗୁଚି ଲୋ ଆମ୍ବକପି ! ଗୋପୀ କଅଣ କମ୍ କଷ୍ଟରେ ଜନ୍ମ ହୋଇଚି !! ସେତେବେଳେ ଥାଏ ପୁରୀରେ । ତା ବାପା ସେଠି ଚାକିରି କରୁଥାଆନ୍ତି । ତାହା ପରେ ପରେ ପୁରୀରେ ରହିଲି ସାତ ବରଷ । ଶାଶୁ ବି ରହିଲେ ସେଠି । ତାଙ୍କର ତ ଗୋଟିଏ ବୋଲି ପୁଅ—ପୁଅକୁ ଛାଡ଼ି ସେ ବି ଗାଁରେ ରହିବେ କେମିତି ।

ମୋ ଶାଶୁ ଥିଲେ ଯେ…କଅଣ କହିବି ସେ କଥା—ପାନରୁ ଚୂନ ଖସିଚି ତ ସେ ଦିନ ତଳ ଉଝୁଳେଇଦେବେ । ବାହାଘର ବରଷେ ଚାଲିଗଲା, ଗାଧୋଇବା ବନ୍ଦ ହେଲାନାହିଁ । ଶାଶୁଙ୍କର ତ ଦିନ ସାରା ଚାଲିଲା ଗାଳି । କେତେ ମାନସିକ କଲି । କେତେ

ଡେଉଁଣିଆ ପିଇଲି, କେତେ ଜଡ଼ିବୁଟିକା ଖାଇଲି, କାହିଁରେ କିଛି ହେଲା ନାହିଁ । ପ୍ରତି ମାସରେ ଗାଧୋଇଲି ।

ଆମ ପଡ଼ିଶାଘରେ ଜଣେ ବାବୁ ଥାଆନ୍ତି ଯେ ତାଙ୍କର ବୋହୂ ଆଜି ବେଇଚି ତ ତା'ପର ମାସରେ ମାସିକିଆ ହୁଏ, ଆଉ ତା'ପର ମାସରେ ମାସିକିଆ ବନ୍ଦ । ସାତବର୍ଷ ରହିଲି, ପାଞ୍ଚୋଟି ଛୁଆ ତାର ହେଲେ । ମୋ ଶାଶୂ ତ ତାଙ୍କୁ ଦେଖି ମୋ ଉପରେ ଆହୁରି ରାଗ ହେଉଥାଆନ୍ତି । ଗଳିତ ଗାଉଲି ଗାଳିବାଡ଼ି ଥାଆନ୍ତି ସେ । ଦିନ ରାତି ଅଲକ୍ଷଣୀ, ଅଣ୍ଟୁକୁଡ଼ି, ପିଚାସୁଣୀ, ହାତଗୋଡ଼ଖାଇ ଗାଳି ।

ସିଏ ଖାଲି କହୁଥାଆନ୍ତି, ବ୍ୟସ୍ତ କାହିଁକି, ହେଲେ ହବ, ନ ହେଲେ ନାହିଁ । ଆମ ଦେଶରେ ତ ବର୍ଷକୁ କୋଟିଏ ଜନ୍ମ ହେଉଚନ୍ତି । ଆମେ ଏବେ ଆଉ ଲୋକସଂଖ୍ୟା ନ ବଢ଼େଇଲେ ତ ଭଲ ହେଲା । ଖାଲି ତ ଜନ୍ମ କଲେ ହବନାହିଁ—ଖୋଇପେଇ ମଣିଷ କଲେ ସିନା ହବ ।

ହେଲେ, ମୋ ମନ ମାନୁନଥାଏ । ଅଣ୍ଟୁକୁଡ଼ୀ ହୋଇ ମରିବି । ମଶ ଡାକୁଣୀ ହୋଇ ଶୋକରେ ହା-ହା ହୋଇ ବୁଲିବି । କେଉଁଠି ମୁନ୍ଦାଏ ପାଣି ବି ମିଳିବ ନାହିଁ । ପଡ଼ିଶା-ଘର ବୋହୂକୁ ଦେଖି ଖାଲି ମନେହେଉଥାଏ, କେମିତି ତା ମାସିକିଆ ବନ୍ଦ ହେଉଥାଏ !! ଯେତେ ପ୍ରକାର ଯେ କହିଲା, ସେତେ ପ୍ରକାର କଲି । ଏଇଟୁକିଣିକା ସିନା କହିବାକୁ ଲାଜ ମାଡୁଚି, ସେତେବେଳେ ଆତୁରରେ ପଡ଼ି ଟିକିଏ ବି ଲାଜ ମାଡୁନଥାଏ । ଥରେ···ଆଲୋ ବୋହୂ, ଯା ସବୁ ଖାଇବ ଯା । ଉଛୁର ହୋଇଗଲାଣି ଯା ।

ଟୋବହୂ ଅନେକ ଥର ଶାଶୁଙ୍କର ସେ ଇତିହାସ ଶୁଣି ସାରଲେଣି । ସେ ଇତିହାସ କହିବାର ପ୍ରଚ୍ଛନ୍ନ ଇଙ୍ଗିତ ମଧ୍ୟ ସେ ବୁଝି ସାରଲେଣି । ଆଉ ଶୁଣିବାକୁ ତାଙ୍କର ମନ ନାହିଁ । ଶାଶୂ କହିବା ମାତ୍ରକେ ସେ ଉଠିଗଲେ ସଇଙ୍କ ଘରକୁ । ଆଜି ସେଇଠି ତାଙ୍କର ପଙ୍ଗତ ବସିବ ।

ବୋହୂ ଗଲା ପରେ ଆମ୍ବକଷି ଫିସ୍ ଫିସ୍ କରି କହିଲେ, ଛୁଆ ଜନ୍ମହେବା ପାଇଁ ପଡ଼ିଶାଘର ବୋହୂ ଥରେ ଗୋଟିଏ ବାଟ ବତାଇଥିଲା । 'ବ୍ରତସାଗର ···' ବୋଲି ଯାହା କହନ୍ତି । ଆମେ ସେଇଆ କଲୁ ।

କିନ୍ତୁ କିଛି ଫଳ ହେଲାନାହିଁ, ତା ଆରମାସକୁ ସେଏଣେ ଗାଧୋଇଲି । ସାତ ବରଷ ଗ୍ଲଲଗଲା । ତନେ ଶୁଣିଲି ଶାଶୂ ତାଙ୍କୁ ବୁଝାଉଛନ୍ତି ଆଉ ଗୋଟିଏ ବାହା ହେବାକୁ । ତାଙ୍କର ତ ବୋଉଙ୍କୁ ଭାରି ଡର । ବୋଉଙ୍କ କଥା ଟଳେ ପଡ଼ିବ ନାହିଁ ତାଙ୍କର । ସେ କହିଲେ, ବୋଉ ! ତୁ ଯଦି ଭଲ ବୁଝୁଚୁ ମୁଁ ଆଉ କଅଣ କହିବି । କିନ୍ତୁ ତାର କି ଦୋଷ ବୋଉ ? ସେ କଅଣ କରିବ ? ସେ କଥା ଟିକିଏ ଭାବୁଚୁ ? ଶାଶୂ କହିଲେ, ସେ ମରୁ କି ଯାଉ ଲୁଆଡ଼େ ଅଣ୍ଟୁକୁଡ଼ୀ, ମୁଁ କି ଜାଣେ, ତା' ପାଇଁ ତ ତୋ ବାପ ନିର୍ବଂଶ ହେବନାହିଁ ?

ପୁଅକୁ କହି ଶାଶୁ ଯେମିତି ଘରୁ ବାହାରି ଆସିଲେ; ମୁଁ ତାଙ୍କ ଗୋଡ଼ ଧରି ଲମ୍ବେ ଲମ୍ବେ ପଡ଼ିଗଲି । ଶାଶୁ ଗୋଇଠା ଗୋଟାଏ ମାରିଦେଇ ମୋତେ ଗଡ଼େଇ ପକେଇ କହିଲେ ଦୂର... ଆଣ୍ଟୁକୁଡ଼, ତୋ ମୁହଁ ସକାଳୁ ଦେଖି ମୋ ପୁଅର ଆୟୁଷ କମିଯାଉଚି ।

ମୁଁ ତାଙ୍କ ଗୋଡ଼ ନ ଛାଡ଼ି କହିଲି, ମା, ମୋତେ ଆଉ ଦୁଇମାସ ସମୟ ଦିଅନ୍ତୁ, ତା ପରେ ଯଦି ତମ ବଂଶକୁ ପୁଅ ଗୋଟିଏ ନ ଦେବି, ମୋତେ ଘରୁ ତଡ଼ିଦେବ । କିଛି କହିବି ନାହିଁ ।

ସେଦିନ ରାତିରେ କାନ୍ଦି କାନ୍ଦି ତାଙ୍କ ପାଦତଳେ ବି ଲୋଟିପଡ଼ିଲି ଆମ୍ଭକପି ! କେତେ ପିଠିରେ ଆଉଁସି ମୋତେ ସେ କେତେ ବୁଝାଇଲେ । ଭାରି ଭଲ ଥିଲେ ସେ । ଏମିତି କେହି ପାଇନଥିବେ ପରା ...

ସେଦିନର କଥା ଭାବି ଆଖିରୁ ତାଙ୍କର ଲୁହ ଝରିପଡ଼ିଲା । କୋହରେ ସେ କିଛି କହିପାରିଲେ ନାହିଁ । ସମସ୍ତେ ବହୁବାର କହିଥିବା ସେ କାହାଣୀ ଶୁଣି ପୁଣି ସୁଁ-ସୁଁ ହେଲେ । ଗୋପୀନାଥବାବୁଙ୍କ ମା' ଲୁହ ପୋଛି କହିଚାଲିଲେ ।

...ଏମିତି ମନ ବୁଝେଇ କଥା କହିବା ଲୋକ ତାଙ୍କ ପରି ଆଉ ଗୋଟିଏ ବି ଦେଖି ନାହିଁ ପରା !! ପିଠି ଆଉଁସି ହସି ହସି ସେ କହିଲେ, ବୋଉକୁ କହି ତୁମକୁ ଦୁଇମାସ ସମୟ ମୁଁ ଦିଆଇବି ।

ତା ପରଦିନ ସେ ବୋଉଙ୍କୁ ବୁଝେଇ କହିଲେ । ବୋଉ କହିଲେ, ହଉ, ଦୁଇମାସ ପରେ ତୋ ବାହା । ନମେଇବାବୁଙ୍କ ସହିତ ସବୁ କଥା ଠିକ୍ କରି ରଖିଚି । ପଣ୍ଡାଶାଘର ବୋହୂ ତାଙ୍କର ଝିଅ, ତା'ର ସାନଭଉଣୀ ସହିତ ତୋ ବାହାଘର ହେବ ।

ସେଇଦିନୁ ଆମ୍ଭକପି, ଏକାନିଷ୍ଠାରେ ରହିଲି । ନିଇତି ଉପାସ କରେ, ଗୋପୀନାଥଙ୍କୁ ପୂଜାକରେ । ମାସେ ଚାଲିଗଲା । ଗାଧୋଇଲି । ତା'ପରେ ଖାଇବା ଛାଡ଼ିଦେଇ କାନ୍ଦି ଗଡ଼ିଲି ଗୋପୀନାଥଙ୍କ ଗୋଡ଼ ତଳେ । ସାତଦିନ ସାତରାତି ଗଡ଼ିଲି ।

ତା' ପରେ...କହିଲାବେଳକୁ ରୁମ ଟାଙ୍କୁରି ଉଠୁଚି । ଦିନେ ରାତିରେ ଶୋଇଚି । ରାତି ଭୋଓର ବେଳକୁ ସପନ ଦେଖିଲି । ଗୋପୀନାଥ ମୋ ଘର ଦୁଆରମୁହଁ ପାଖରେ ଛିଡ଼ାହୋଇ କହୁଛନ୍ତି, ଉଠ, ତୁମେ ଯଦି ସ୍ୱାମୀଙ୍କ ବିଷ୍ଠାର ପୋକ ଖାଇବ, ତେବେ ତୁମର ଗୋଟିଏ ପୁଅ ହେବ ।

ଚିଉଁକିନା ନିଦ ଭାଙ୍ଗିଗଲା । ଉଠି ଦେଖିଲି ନିଘୋଡ଼ ନିଦରେ ସେ ଶୋଇଛନ୍ତି । ତାଙ୍କ ଗୋଡ଼ତଳେ କେତେବେଳେ ମୁଁ ଶୋଇପଡ଼ିଥିଲି ମୋତେ ଜଣାନାହିଁ ।

ଉଠି ତାଙ୍କୁ ଜୁହାର ହୋଇ, ଗୋପୀନାଥଙ୍କ ଘରକୁ ଯାଇ ତାଙ୍କୁ ଜୁହାର ହୋଇ କହିଲି, ଯାହା କହିଲ ତା କରିବି—କରିବି ।

ତାଙ୍କୁ ଯେ ସେତେବେଳେ ନାଳଝାଡ଼ା ହେଉଥାଏ ଲୋ ଆମ୍ଭକଣି, କଅଣ କହିବି !! ବାରିପଟକୁ ଗଲି । ଦୁଇଟା ଇଟା ପକାଇ ଗୋଟିଏ ଜାଗା କଲି । ହଁ, ଫେର୍ ଜାଗା କରୁ କରୁ ଗୋଟାଏ କଙ୍କଡ଼ା ବିଛା କାମୁଡ଼ି ଦେଲା । ଏତେ ବିଷ ତା'ର, ଲୋଟିକି ତ ପଡ଼ିଲି । ହେଲେ, ପାଟି କଲେ ତ ଶାଶୁ ଉଠିବେ, ସବୁ ଭଣ୍ଡୁର ହୋଇଯିବ । ଦିହ କଅଣ ହୋଇଯାଉଥାଏ । କିନ୍ତୁ ଉଁ କି ଚୁଁ ବି କଲିନାହିଁ । ଜାଗା କରିସାରି ରାତି ନ ପାହୁଣୁ ତାଙ୍କୁ ଯାଇ ବିଛଣାରୁ ଉଠେଇଲି । ସେ ତ ଉଠନ୍ତି ଡେରିରେ । ମୋତେ ଦେଖି ସେ ଚୋର ପଶିଚି ବୋଲି ପାଟିକରିବାକୁ ଯାଉଥିଲେ । ଦି' ହାତରେ ତାଙ୍କ ମୁହଁ ଚିପିଧରି ଡାକିଲି ବାଡ଼ିକୁ ।

ବାଡ଼ିରେ ତାଙ୍କ ଗୋଡ଼ ଧରି କହିଲି, ଏଇଠି ବସି ହଗ । ସେ ତ ଆବାକାବା ହୋଇ ଚାହିଁଥାନ୍ତି । ମୁଁ ଖାଲି ଠାରିକରି କହୁଥାଏ, ପାଟି କରନା, ଯାହା କହୁଚି କର । ସେ ସେଇଠି ବସି ଝାଡ଼ା ଫେରିଲେ । ପାଣିଦେଲି । ସେ ଗଲେ ବିଛଣାକୁ । ସେ ଝାଡ଼ାରେ ମୁଁ ଗୋଟିଏ କାଠି ପୋତିଦେଲି ।

ଆଉ ଅଛି ମାତ୍ର ପନ୍ଦର ଦିନ ଦୁଇମାସ ପୂରିବାକୁ । କାଠି ପୋତିବାର ତିନିଦିନ ପରେ ସେଥିରେ ପୋକ ହେଲେ । ସେ ପୋକରୁ ଗୋଟିଏ ଆଣି ଲୁଚେଇ ଖାଇଦେଲି ।

ଆଉ ଗୋଟିଏ କାଳ ପଡ଼ିଲା । ତାଙ୍କର ତ ନାଳଝାଡ଼ା—କରେ କଅଣ । ଇସ୍କାଡ଼େ ରହିଲା ଆଉ କେତୁଟା ଦିନ । ଯେତେ ଟୁଟୁକା ଟୁଟୁକି ଥିଲା ବାଟିକରି ତାଙ୍କୁ ଦିନରାତି ଖୋଇଲି । ତିନିଦିନ ପରେ ତାଙ୍କର ଝାଡ଼ା ଭଲହେଲା ।

ଯେଉଁଦିନ ଭଲହେଲା ସେଦିନ ରାତିରେ ଭଲ ଶାଢ଼ୀ ପିନ୍ଧି, ଅତର ମାଖି, ମୁଣ୍ଡ ଭଲ କରି କୁଣ୍ଡେଇ ଗହଣା ପିନ୍ଧି ଗଲି ଶୋଇବାକୁ । ମନେ ମନେ ଖାଲି ଗୋପୀନାଥଙ୍କୁ ଡାକୁଥାଏ ।

ଦୁଇମାସ ପୂରିବାକୁ ଆଉ ଦୁଇଦିନ ଥାଏ । ମୋ ମାସ ପୂରିଗଲା । ସେଦିନ କିଛି ହେଲାନାହିଁ । ଦିନରାତି ଖାଲି ଡାକୁଥାଏ ଗୋପୀନାଥଙ୍କୁ କେମିତି ଏ ମାସକଥାଟା ଅଟକିଯାଉ । ତା ଆରଦିନ ଗଲା, ଗାଧୋଇଲି ନାହିଁ । ତା ଆରଦିନ ବି ଗଲା । ଏମିତି ସେତେବେଳେ ସାତଦିନ ପୂରିଗଲା ଶାଶୁ ଶୁଣିଲେ ଯେ ମୁଁ ସେ ମାସରେ ଗାଧୋଇ ନାହିଁ ।

ଶାଶୁଙ୍କ ଖୁସି ଆଉ ଦେଖେ କିଏ । ଓଃ, କେତେ ପୂଜା ଯେ ସେ କଲେ । ଗୋପିଆ ହବା ପର୍ଯ୍ୟନ୍ତ ସବୁ ସେ ମୋତେ କୁଟା ଖଣ୍ଡିକ ଦି'ଖଣ୍ଡ କରିବାକୁ ଦେଉନାହାନ୍ତି । ଦିନ ରାତି ମୋତେ ଆଗୁରି ବସିଥାଆନ୍ତି, ଆଉ ପୁରାଣ ଭାଗବତ ଶୁଣାଉଥାଆନ୍ତି ।

ଗୋପିଆ ସେତେବେଳେ ହେଲା···କି ଦେଖିବ ଶାଶୁଙ୍କ ଆନନ୍ଦ !

ମୋ ଗୋପୀ ପୁଅ ବୋହୂ ନେଇ ସୁଖରେ ଘର କରୁ, ଏଇ ଆଶୀର୍ବାଦ କର ତମେମାନେ ।

□□□

# ଧରଣୀ ଓ ଧରଣୀ

ଏଇ ସେଇ ସର୍ବଂସହା ଧରଣୀ—କବିମାନେ ଯାହାଙ୍କୁ ନାରୀରୂପରେ କଳ୍ପନା କରିଛନ୍ତି; ଯାହାର ସୁ-ଉଚ୍ଚ ପର୍ବତକୁ କୁଚ ସହିତ ତୁଳନା କରାଯାଇଛି, କୋଟି କୋଟି ବର୍ଷ ବୟସ ହେଲେ ବି ଯେ ଚିରଯୌବନା, ଯେ ନିରଳସ ଭାବରେ ଚରକି ଭଳି ବୁଲିବୁଲୁଛି । ପ୍ରସବ କରିଚାଲିଛି କୋଟି କୋଟି ପ୍ରାଣୀ । କେତେ ଅଦ୍ଭୁତ ପ୍ରକାର ସନ୍ତାନ ! କୋଟି କୋଟି ସନ୍ତାନ ଯାହାଙ୍କୁ ଦିବାରାତ୍ର ଦୋହନ କରୁଛନ୍ତି ।

ପାଣ୍ଡବ-ବଂଶାବତଂସ ରାଜା ପରୀକ୍ଷିତଙ୍କ ରାଜତ୍ୱକାଳରେ ଏଇ ଧରଣୀ ଏକଦା ହତପ୍ରଭ ଓ ଅଶ୍ରୁମୁଖୀ ହୋଇ ବିଚରଣ କରୁଥିବାର ଦେଖି ଧର୍ମ ପଚାରିଲେ, ଭଦ୍ରେ ! ତୁମର ମଳିନପ୍ରଭା ଓ ବିବର୍ଣ୍ଣ ମୁଖଶ୍ରୀ ଦେଖି ବୋଧହେଉଛି ତୁମେ କୌଣସି ମହତ୍ତୀ ମନଃପୀଡ଼ାରେ ନିପୀଡ଼ିତା । ଏହା ପରେ ତୁମ୍ଭଙ୍କୁ କାମାନ୍ଧ ଉନ୍ମାଦ କ୍ଷମତାଲୋଭୀ ହିଂସ୍ରକମାନେ ଭୋଗ କରିବେ ଏବଂ ତଥାକଥିତ ପଣ୍ଡିତ ବୈଜ୍ଞାନିକମାନେ ସେ ଉନ୍ମାଦମାନଙ୍କର ଭୃତ୍ୟ ହୋଇ ତୁମ୍ଭର ବହୁସନ୍ତାନର ବାରମ୍ବାର ଦୁଃଖର ଓ ବିନାଶର କାରଣ ହେବେ, ସେଥିପାଇଁ କ'ଣ ତୁମ୍ଭେ ଶୋକ କରୁଛ ? ଆତ୍ମ-ସମ୍ମାନିତ ଶାସକମାନେ ଜନମଙ୍ଗଳ, ଶାନ୍ତି, ଆଦର୍ଶର ଦୋହାଇ ଦେଇ ଅନ୍ୟମାନଙ୍କୁ ଶୋଷଣ କରି ନିଜର ପାଶବିକ ଲାଳସା ଚରିତାର୍ଥ କରିବେ, ଯେଥିପାଇଁ କଅଣ ତୁମ୍ଭେ ଉଦ୍‌ବିଗ୍ନା ? ସମସ୍ତେ ପରସ୍ପରର ବିନାଶକୁ ହିଁ ପ୍ରାଧାନ୍ୟ ଦେଇ ଉତ୍ତମ କାର୍ଯ୍ୟ ବୋଲି ପ୍ରଚାର କରିବେ, ସେଥିପାଇଁ କ'ଣ ତୁମ୍ଭେ ଚିନ୍ତିତା ? ଯେଉଁ ମନୁଷ୍ୟ-ସନ୍ତାନ ମାନଙ୍କୁ ତୁମ୍ଭର ଶ୍ରେଷ୍ଠ ସୃଜନ ବୋଲି ଭାବି ତୁମେ ଗର୍ବ ଅନୁଭବ କରୁଥିଲ, ସେମାନେ ଦିନକୁ ଦିନ ହୀନବୁଦ୍ଧି ହୋଇ ଏବଂ ନିଜନିଜର କ୍ଷୁଦ୍ରତାରେ ମୁଗ୍ଧ ହୋଇ ପରସ୍ପରକୁ ବିନାଶ କରି ଓ ତୁମ୍ଭ ପ୍ରତି ନାନା ଅତ୍ୟାଚାର କରି ଦିନେ ତୁମ୍ଭ କୋଳରୁ ନିଶ୍ଚିହ୍ନ ହୋଇଯିବେ, ସେଇଥି ପାଇଁ କ'ଣ ତୁମ୍ଭେ ଲଜ୍ଜିତା ଓ ଅପମାନିତା ? ତୁମ୍ଭେ ପ୍ରଚୁର ରସ ଓ ଶସ୍ୟ ଉତ୍ପାଦନ କରୁଥିଲେହେଁ ଲୋଭୀମାନେ ସେ ସବୁକୁ ଲୁକ୍କାୟିତ କରି ଅବା ନଷ୍ଟକରି ତୁମ୍ଭର କୋଟି କୋଟି ସନ୍ତାନଙ୍କୁ ଅନାହାରରେ ରଖି ଦୁର୍ଭିକ୍ଷ ସୃଷ୍ଟି କରିବେ ଏବଂ ରାଜା ଓ ରାଜକର୍ମଚାରୀ-ମାନେ ସେ ଲୋଭୀମାନଙ୍କୁ ସାହାଯ୍ୟ କରି ନିଜର ବିତ୍ତ ବଢ଼ାଇବାରେ ଲାଗିବେ ଓ ଶେଷରେ ସମୂହ ବିପ୍ଳବରେ ନାଶଯିବେ, ସେଥିପାଇଁ କଅଣ ତୁମ୍ଭେ ମର୍ମାହତା ? ଯେଉଁ ଜ୍ଞାନ ବିଜ୍ଞାନ ସାହାଯ୍ୟରେ ମନୁଷ୍ୟ ଦିନେ ପରମପୁରୁଷଙ୍କ ପ୍ରତି ଆକୃଷ୍ଟ ହୋଇ ଶାନ୍ତି ସାମ୍ୟ ଲାଭ କରିଥିଲ ସେଇ ଜ୍ଞାନକୁ ଦିନେ ମନୁଷ୍ୟମାନେ ପରସ୍ପରର ବିନାଶ ପାଇଁ ବିନିଯୋଗ କରିବେ ଓ ଭଗବାନଙ୍କୁ ଭୀତ ମାନବର କଳ୍ପନା ବୋଲି ଅବଜ୍ଞା କରିବେ, ସେଥିପାଇଁ କଅଣ ତୁମ୍ଭେ ବ୍ୟଥିତା ? ଧରଣୀ କୌଣସି ଉତ୍ତର ନ ଦେଇ ଅଧୋମୁଖୀ ହୋଇ ନୀରବରେ ଅଶ୍ରୁବର୍ଜନ କରିବାକୁ ଲାଗିଲେ ।

ଆଉ ଏଇ ସେଇ ଧରଣୀ । କାମଦେବଙ୍କ ସ୍ତ୍ରୀ । ଯାହାକୁ ଅନେକ ଧରଣୀ ସହିତ ତୁଳନା କରନ୍ତି । ଯାହାଙ୍କ କୁଚ-ଯୁଗଳ ପର୍ବତ ତୁଲ୍ୟ । ବୟସରେ ଯିଏ ପ୍ରୌଢ଼ା ହେଲେ ବି ଏପର୍ଯ୍ୟନ୍ତ ଯୁବତୀ ଓ ସୃଜନକ୍ଷମା । ଯିଏ ସକାଳୁ ରାତି ଦୁଇଟା ପର୍ଯ୍ୟନ୍ତ ନିରଳସ ଭାବରେ ଚରକି ଭଳି ବୁଲି କାମ କରୁଥାନ୍ତି, ଯାହାଙ୍କର ଏ ପର୍ଯ୍ୟନ୍ତ ବି କୋଳରେ ଗୋଟିଏ ସନ୍ତାନ ସ୍ତନ୍ୟପାନ କରୁଛି, ଦୋହନ କରୁଛି । ଯିଏ ବାରେଟି ସନ୍ତାନର ଜନନୀ ହୋଇ ମଧ୍ୟ ପୁଣି ଗର୍ଭବତୀ ।

ରାତି ପ୍ରାୟ ଦୁଇଟା । ଧରଣୀର କେତେକେ ସନ୍ତାନ ଗୋଟାଏ ବିରାଟ ମାରଣାସ୍ତ୍ର ନେଇ ଗ୍ଲକିଛନ୍ତି ନୀରବରେ । ମାରଣାସ୍ତ୍ରର ପରୀକ୍ଷା ହେବ ଧରଣୀର ସମୁଦ୍ର ବକ୍ଷରେ । ବ୍ୟୋମଯାନରୁ ମାରଣାସ୍ତ୍ର ନିକ୍ଷେପ କରାଗଲା । ଭୀଷଣ କଡ଼ କଡ଼ ଶବ୍ଦରେ ଧରଣୀର ବକ୍ଷ ଆନ୍ଦୋଳିତ ହେବାକୁ ଲାଗିଲା । ଗଭୀର ବେଦନାରେ ଧରଣୀ କମ୍ପି ଉଠିଲେ । ନୀଳାକାଶ ସହସ୍ର-ସହସ୍ର ବିସ୍ମାରିତ ନୟନରେ ଅନାଇ ରହିଲେ । ଏ ମାରଣାସ୍ତ୍ର, ଏକ ଲହମାରେ କୋଟି-କୋଟି ମନୁଷ୍ୟ ବିନାଶ କରିପାରିବ, ଯେଉଁ ଦେଶର ସେ ମାରଣାସ୍ତ୍ର, ସେ ଦେଶର ରାଷ୍ଟ୍ରପତି ଆନନ୍ଦରେ, ଗର୍ବରେ ସାମ୍ବାଦିକ ବକ୍ତୃତା ଦେବାକୁ ଲାଗିଲେ । ଧରଣୀର ଆଉ ଏକ କୁଳରେ ଦୁର୍ବଳ ସନ୍ତାନମାନଙ୍କ ଉପରେ ହିଂସ୍ର ପାଶବିକ ମନୁଷ୍ୟ-ସନ୍ତାନମାନେ ଆଦର୍ଶର ଦୋହାଇ ଦେଇ ଶୋଷଣ ଓ ହତ୍ୟାରେ ବ୍ୟାପୃତ ସେତେବେଳେ ।

ଧରଣୀର ଆଉ କେତେଗୁଡ଼ିଏ ସନ୍ତାନ କେଉଁଠି ଚିତ୍କାର କରି ଘୋଷଣା କରିବାକୁ ଲାଗିଲେ, ହୁଆ, ହୁଆ, ହତ୍ୟା ହୁଆ ହତ୍ୟା ହୁଆ···

ଧରଣୀ କଡ଼ ଲେଉଟାଇଲେ । ସେ ନିଜେ ଲେଉଟିଲେ ନାହିଁ । କାମଦେବ ତାଙ୍କୁ ଜବରଦସ୍ତି ଲେଉଟାଇ ଦେଲେ ନିଜ ଆଡ଼କୁ । ଧରଣୀଙ୍କ ଆର କଡ଼ରେ କୋଳ-ଛୁଆଟି ନିଘୋଡ଼ ନିଦରେ ଶୋଇଛି; କିନ୍ତୁ ମୁହଁ ତା'ର ଲାଗିରହିଛି ସ୍ତନାଗ୍ରରେ । ଧରଣୀ ଆରାମରେ ଶୋଇବା ପାଇଁ ଟିକିଏ ହଲଚଲ ହେବା ମାତ୍ରକେ ସେ ଚେଇଁ ଉଠି ଜୋର୍‌ରେ ସ୍ତନକୁ କାମୁଡ଼ି ଧରି ସଶବ୍ଦେ ଦୋହନ କରିଯାଉଛି କିଛିକ୍ଷଣ ଧରି । କାମଦେବ ଅନେକ କ୍ଷଣ ଧରି ଅପେକ୍ଷା କରିଥିଲେ । ବିରକ୍ତ ହୋଇ ଶେଷରେ ସେ ନିଜ ବିଛଣାରୁ ଯାଇ ଧରଣୀର ଗୋଟିଏ କଡ଼ରେ ଶୋଇଲେ । ଅପେକ୍ଷା କରି ରହିଥିଲେ, କେତେବେଳେ ଛୁଆଟା ସ୍ତନ୍ୟପାନ ଛାଡ଼ିଲେ ସେ ଧରଣୀକୁ ନେବେ । ଶୋଇ ଶୋଇ ସେ ଧରଣୀକୁ ଉପଭୋଗ କରିବାର ନାନା ଉତ୍ତେଜକ କଳ୍ପନା କରୁଛନ୍ତି । ଧରଣୀର ଗୋଟିଏ ପଟରେ ଛୁଆଟି ଦୋହନ କରି ଚାଲିଛି ଓ ଅନ୍ୟପଟରେ ଛକି ବସିଅଛନ୍ତି କାମଦେବ ମଧ୍ୟ ସେଇଥି ପାଇଁ ।

କାମଦେବ କହିଲେ ଶେଷରେ, ତୁମକୁ ସେ ଦୁହିଁ ଦୁହିଁ ଦୁର୍ବଳ କରିଦେବ । ସବୁ ରକ୍ତ ଶୋଷିଦେବ ସେ ତୁମର ।

ଧରଣୀ ମ୍ଲାନ ଭାବରେ ହସି ହସି କହିଲେ, ଆଉ ତୁମେ କାହିଁକି ଆସିଲ ମୋ ବିଛଣାକୁ ! ଯେତିକି ହୋଇଛନ୍ତି ସେତିକି ତ ମଣିଷ ହେଉନାହାନ୍ତି···

କାମଦେବ ରାଗିଯାଇ କହିଲେ, ସେ ନୀତିକଥାଗୁଡ଼ାକ ଆଉ ଶୁଣାଅ ନାହିଁ ତମେ । ଯିଏ ପିଲା ଛୁଆ ଦେଉଛନ୍ତି, ସିଏ ବୁଝିବେ ସେ କଥା— ତୁମେ କିଏ ନା ମୁଁ କିଏ ? ସେଥିପାଇଁ ତୁମେ ଚିନ୍ତା କରନା ।

ଛୁଆଟି ଶୋଇପଡ଼ିଲାଣି । କାମଦେବ ନିଜକୁ ଭାଗ୍ୟବାନ୍ ମନେକଲେ, ଛୁଆଟା ଆଜି ସହଜରେ ଧରଣୀକୁ ଛାଡ଼ିଦେଇଛି ! କାମଦେବ ଧରଣୀକୁ ଭିଡ଼ିଆଣିଲେ ନିଜ ଆଡ଼କୁ । ଧରଣୀ ପ୍ରତିବାଦ ନ କରି ପଡ଼ିରହିଲେ କାଠଖଣ୍ଡ ପରି ଦେହକୁ କାଠକରି । ସେ ଜାଣନ୍ତି, କେତେଥର ଦେଖିଛନ୍ତି, ବାରଣ କଲେ କାମଦେବ ଉତ୍କ୍ଷିପ୍ତ ହୋଇଉଠନ୍ତି । ଛୁଆଟି ଇତି ମଧ୍ୟରେ ଉଠିପଡ଼ି କିଛିକ୍ଷଣ ନିର୍ବାକ୍ ଭାବରେ ଚାହିଁ ଧରଣୀଙ୍କ ବୁକୁ ଉପରକୁ ଲୁଦିପଡ଼ିଲା । ଅଗତ୍ୟା କାମଦେବ ପୁଣି ଅପେକ୍ଷା କରିବାକୁ ଲାଗିଲେ । ଛୁଆଟି ବୁକୁ ଉପରୁ ଖସିଯାଇ ଧରଣୀକୁ ଲେଉଟାଇ ଦେଲା ତା ପଟକୁ ଓ ସ୍ତନ୍ୟପାନ କରିବାକୁ ଲାଗିଲା ।

ଧରଣୀର ଏକ ସ୍ତନରୁ କୁଳୁକୁଳୁ ନାଦରେ ଝରଣା ବୋହିଯାଉଛି । ରାତ୍ରିଚର-ମାନେ ଧାଡ଼ି ଧାଡ଼ି ହୋଇ ତାହାର କୂଳରେ ବସି ନିଃଶବ୍ଦରେ ପାନ କରୁଛନ୍ତି । ଗୋଟାଏ ପଥରକଟା ଠିକାଦାର ସେ ସ୍ତନର ଅନ୍ୟପଟେ ବାରୁଦ ପୁରାଇ ଗୁଡ଼ୁମ ଗୁଡ଼ୁମ କରି ଫୁଟାଉଛି, ଫୁଟାଉଛି ସେ ସ୍ତନକୁ । ଧରଣୀ କମ୍ପିଉଠୁଛି ବାରମ୍ବାର । ଠିକାଦାର ଏ ସ୍ତନଟିକୁ ଠିକା ନେଇଛି । ଅଳ୍ପଦିନ ଭିତରେ ସେ ଏ ସ୍ତନକୁ ଧରଣୀର ବୁକୁ ସହିତ ମିଶାଇ ଦେବ । ବହୁତ ଅର୍ଥ ଉପାର୍ଜନ କରିବ ସେ । ମହା ଉତ୍ସାହରେ ସେ ଦିନ ରାତି ଲାଗିଛି କାମରେ । ଆଉ ଏକ ଠିକାଦାର ପ୍ରକାଣ୍ଡ ଭଅଁରଦ୍ୱାରା ଧରଣୀର ବୁକୁର ନାନା ସ୍ଥାନରେ ଗାତମାନ ଖୋଳି ରସ ଅନ୍ୱେଷଣରେ ବ୍ୟସ୍ତ । ଧରଣୀର ବୁକୁତଳେ ଯେତେ ରସ ଅଛି ସେ ଶୋଷି ନେବ !

ବାଲୁଆମାନେ ପୁଣି ଚିତ୍କାର କରି ଉଠିଲେ—ହୃତ୍ୟା ହୁସ୍ୟା···

କାମଦେବ ଆଉ ଅପେକ୍ଷା କରିପାରିଲେ ନାହିଁ । ପୁଣି ସେ ଜବରଦସ୍ତି ଧରଣୀକୁ ଲେଉଟାଇ ଦେଲେ ନିଜ ପଟକୁ । ଛୁଆଟି କିଛିକ୍ଷଣ ଦୋହନ କଲା ପରେ ତୃପ୍ତିର ସହିତ ଶୋଇପଡ଼ିଛି । ଅଳ୍ପକ୍ଷଣ ଭିତରେ ତା'ର ତୃପ୍ତି ଚାଲିଯାଇ ପୁଣି ବୁଭୁକ୍ଷା ଜାତହେବ । ଏଥର କାମଦେବ ଶୀଘ୍ର ଶୀଘ୍ର କ୍ରୀଡ଼ା କରିବାକୁ ଲାଗିଲେ । ଧରଣୀକୁ ପ୍ରଲୋଭନ ଦେବାକୁ ଲାଗିଲେ—ଗହଣା ଦେବେ, ଭଲ ଶାଢ଼ୀ ଦେବେ । ଧରଣୀ ପଡ଼ିରହିଲେ ସେମିତି ନିଷ୍ଫଳ ବିସ୍ଫାରିତ ନୟନରେ ଉପରକୁ ଚାହିଁ । କାମଦେବଙ୍କ ଗହଣା ଶାଢ଼ୀ ଦେବା କଥା ଶୁଣି ମ୍ଲାନ ଭାବରେ ଟିକିଏ ହସିଲେ କେବଳ । ନିଜ ଇଚ୍ଛାର ଅନୁରୂପ ପ୍ରତିକ୍ରିୟା ପାଇଁ ଧରଣୀକୁ ପ୍ରଲୋଭନ ଦେବା କାମଦେବଙ୍କର ବ୍ୟର୍ଥ ହେବାରୁ ସେ ମନେ ମନେ ରାଗିଗଲେ ଓ ହିଂସ୍ର ଭାବରେ ଉପଭୋଗ କରିବାକୁ ଲାଗିଲେ ।

ଧରଣୀର ବୁକୁରେ ଗୋଟାଏ ଭୂଗର୍ଭ ବୋମା ପୋତାହେଉଛି । ଏକ କାମାନ୍ଧ ହିଂସ୍ର ତଥାକଥିତ ଜନନାୟକ ସେ ମାରଣାସ୍ତ୍ରର କ୍ଷମତା ପରୀକ୍ଷା କରୁଛି । ତଥାକଥିତ

ବୈଜ୍ଞାନିକମାନେ ଉପସ୍ଥିତ ଥାଇ ନିର୍ଦ୍ଦେଶ ଦେଉଛନ୍ତି । ଧରଣୀ ପୃଥିବୀରେ କମ୍ପି ଉଠିଲେ । କମ୍ପି ଉଠିଲେ ବିଶ୍ୱମାତା ଜନନୀ ! ବୈଜ୍ଞାନିକମାନେ ପରିମାପକ ଯନ୍ତ୍ରରେ ସେ କମ୍ପନରେ କ୍ରମ ଓ ପରିମାଣ ଦେଖି ଉଲ୍ଲସିତ ହୋଇ ନୃତ୍ୟ କରିବାକୁ ଲାଗିଲେ ।

ଧରଣୀର ବୁକୁର ଏକ ନିଭୃତ କୋଣରେ ଏକ ସନ୍ନ୍ୟାସୀ ବସିଛନ୍ତି ଚିନ୍ତାକୁଳ ଭାବରେ । ଏ ସନ୍ନ୍ୟାସୀଟି କିଏ ଗୁରୁଦେବ ? ଏ ସନ୍ନ୍ୟାସୀଟି କବି, ଦାର୍ଶନିକ । ବୈଜ୍ଞାନିକମାନେ ଧରଣୀକୁ ଜଡ଼ ପିଣ୍ଡ ବୋଲି ପ୍ରମାଣ କରିବା ସତ୍ତ୍ୱେ ଏ ସନ୍ନ୍ୟାସୀଟି ଧରଣୀକୁ ପ୍ରାଣବନ୍ତ-ରୂପେ ସ୍ପଷ୍ଟ ଦେଖିପାରୁଛନ୍ତି । ତାଙ୍କ ମତରେ ଜଡ଼ରୁ କେବେହେଁ ଜୀବନ ସୃଷ୍ଟି ହୋଇପାରେ ନା, ଜୀବନରୁ ହିଁ ଜୀବନ ସୃଷ୍ଟି ହୁଏ । ପ୍ରତ୍ୟେକ ଧୂଳିକଣାର ମଧ୍ୟ ଜୀବନ ଅଛି । ଧରଣୀ ଓ ଧରଣୀର ସନ୍ତାନମାନଙ୍କ ଦୁଃଖରେ ଏ ସନ୍ନ୍ୟାସୀଟି କାତର । ସେ ଚିନ୍ତା କରୁଛନ୍ତି ଦୁଃଖ-ମୋଚନର ପନ୍ଥା । ଧର୍ମ ଦର୍ଶନ ଆଜି ବର୍ତ୍ତମାନ ସଂସାର ଅସ୍ତ ହୋଇଛନ୍ତି । ମନୁଷ୍ୟମାନେ ସେ ସବୁର ଦୋହାଇ ଦେଇ ପରସ୍ପରକୁ ହତ୍ୟା ଓ ଶୋଷଣ କରିବାରେ ଲାଗିଛନ୍ତି । ଏକ ମନୁଷ୍ୟ ବା ଦେଶ କେବଳ ନିଜର ସ୍ୱାର୍ଥ ଓ ପ୍ରତିଷ୍ଠା ଚିନ୍ତା କରୁଥିବାରୁ ସେ ସର୍ବଦା ଭୀତ ଏବଂ ସେହି ଭୟରୁ ଜାତହୋଇଛି ହିଂସା; ତେଣୁ ସାମାନ୍ୟ ସମସ୍ୟା ମଧ୍ୟ ଭୟାବହ ଆକାର ଧାରଣ କରୁଛି । ଯାହା ନଖରେ ଛିଣ୍ଡିବା କଥା ତାକୁ କୁରାଢ଼ି ଲାଗୁଛି । ସମସ୍ୟାଗୁଡ଼ିକ ଭୟାବହ ଆକାର ଧାରଣ କରୁଛନ୍ତି ଏବଂ ଯୁଦ୍ଧ ଛଡ଼ା ସମାଧାନର ଅନ୍ୟ ପନ୍ଥା ନାହିଁ ମନେହେଉଛି । ଏ ଭୟ, କାମ, କ୍ରୋଧ, ଲୋଭ ସୃଷ୍ଟିକର୍ତ୍ତା ମନୁଷ୍ୟ ମନରେ ଦେଇଛନ୍ତି ସତ, କିନ୍ତୁ ସେ ସବୁକୁ ବିଶ୍ଳେଷଣ କରି ଆତ୍ମଜ୍ଞାନ ଲାଭ କରିବାର ବୁଦ୍ଧି ମଧ୍ୟ ଦେଇଛନ୍ତି । ତେଣୁ ସେ ସବୁର ଦାସତ୍ୱ ପାଶବିକତା । ବିଜ୍ଞାନ ପ୍ରତି ଆକୃଷ୍ଟ ହେଲେ ମନୁଷ୍ୟ ନିଜର ପ୍ରତିଷ୍ଠା ପାଇଁ ହିଂସ୍ର ହୁଅନ୍ତା ନାହିଁ; ନିଜର ଅର୍ଥ, ଯଶ, ପ୍ରତିଷ୍ଠା ପ୍ରତିପତ୍ତି ପାଇଁ ଏତେ ଶଠ ନିର୍ମମ ହୁଅନ୍ତା ନାହିଁ । ମାନବିକତାକୁ ବିସର୍ଜନ ଦେଇ ପାଶବିକତାକୁ ବରଣ କରନ୍ତା ନାହିଁ । କି ଉପାୟରେ ମନୁଷ୍ୟକୁ ବିଜ୍ଞାନ ପ୍ରତି ଆକୃଷ୍ଟ କରାଯାଇ ବୁଦ୍ଧିର ବିକାଶ ଅଣାଯାଇପାରେ ? ଏପରି ଦେଶ କେଉଁଠି ଗଢ଼ିହେବନାହିଁ ଯିଏ ହିଂସ୍ର ଯୁଦ୍ଧରେ ଜୟକୁ ହିଁ ଏକମାତ୍ର ଗୌରବର ବିଷୟ ମନେ ନ କରି ଶାନ୍ତିର ବିକାଶକୁ ହିଁ ଗୌରବ ମନେକରିବ ?

ସନ୍ନ୍ୟାସୀ ବିଜ୍ଞାନ ବିପ୍ଳବୀ । ଯିଏ ମନୁଷ୍ୟର ସହଜାତ କାମ, କ୍ରୋଧ, ଲୋଭକୁ ଓ ଅହମିକାକୁ ଉତ୍ତେଜିତ କରି ଜନପ୍ରିୟ ହୋଇ ଅଶାନ୍ତି ସୃଷ୍ଟି କରେ ଏବଂ ବହୁର ଆଧ୍ୟାତ୍ମିକ ଓ ଶାରୀରିକ ବିନାଶର କାରଣ ହୁଏ, ସେ ବିପ୍ଳବୀ ନୁହେଁ, ସେ ମନୁଷ୍ୟସମାଜର କର୍କଟ ରୋଗ । ଯିଏ ଶାନ୍ତିକାମୀ ସେଇ କେବଳ ବିପ୍ଳବୀ ।

ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ, ଚୈତନ୍ୟ, ପରମହଂସ, ରାମମୋହନ, ଗାନ୍ଧୀମାନେ, ବିଜ୍ଞାନ ବିପ୍ଳବୀ ! କି ନିର୍ଭୀକ ସେମାନେ !! ତେଣୁ ସେମାନଙ୍କ କୂଟନୈତିକ ବା ରାଜନୈତିକ ଶଠତା ଭଲଲାଗେ ନାହିଁ । ଧର୍ମ ସେମାନଙ୍କ ପକ୍ଷରେ ରାଜନୀତି କୂଟନୀତିଠାରୁ ବଡ଼ ଶ୍ରେୟ !

ସନ୍ନ୍ୟାସୀ ପ୍ରାର୍ଥନା କଲେ, ହେ ବିଶ୍ୱ ! ଯେଉଁ ଅଗ୍ନିମିକା ତୁମେ ଦେଇଚ, ଯାହାର ସୂକ୍ଷ୍ମସ୍ପନ୍ଦନରେ ବୁଦ୍ଧିର ବିକାଶ ଓ ପ୍ରବଳତାରେ ବିନାଶ, ସେ ଅଗ୍ନିମିକାକୁ ତୁମେ ହିଁ ସମ୍ଭାଳ । କେତେ ବିଚିତ୍ର ତୁମେ ! ତୁମକୁ ଜାଣିବାର ଚେଷ୍ଟା ମଧ୍ୟ କେତେ ବିଚିତ୍ର ଏ ସଂସାରରେ !!

ସନ୍ନ୍ୟାସୀ କଳ୍ପନା କରୁଛନ୍ତି ଭବିଷ୍ୟତର ଜାତିସଂଘ ସ୍ୱପ୍ନରେ । ··· ଜାତିସଂଘରେ ନାନା ଦେଶର ହିଂସ୍ର ନୀତିର ପ୍ରତିନିଧି ନ ରହି, ରହିଛନ୍ତି ସମଗ୍ର ପୃଥିବୀର ବିଜ୍ଞ ବିଜ୍ଞ ସ୍ୱାର୍ଥତ୍ୟାଗୀ ଦାର୍ଶନିକ; ଯେଉଁମାନେ କୌଣସି ଦେଶର ପ୍ରତିନିଧି ନୁହନ୍ତି, ମାନବିକତାର ପ୍ରତିନିଧି ଧରଣୀର ନିରବଚ୍ଛିନ୍ନ ବିଶ୍ୱ ବୁକୁକୁ ଯେଉଁମାନେ ନିଜର ହିଂସ୍ରବୁଦ୍ଧିରେ ଖଣ୍ଡ ଖଣ୍ଡ ଭିନ୍ନ ଭିନ୍ନ ଦେଖି କ୍ଷୁଦ୍ର ଭୁଗୋଳ ଓ ଇତିହାସ ସୃଷ୍ଟି କରିବାରେ ଲାଗିଛନ୍ତି ପରସ୍ପରକୁ ହତ୍ୟାକରି ଓ ଶୋଷଣ କରି, ସେମାନଙ୍କର ପ୍ରତିନିଧି ନୁହନ୍ତି ସେମାନେ । ସେମାନେ ଗଢ଼ିବେ ଏକ ନୂତନ ସୈନ୍ୟ, ଯେଉଁ ସୈନ୍ୟମାନେ ଆନନ୍ଦରେ ବିଶ୍ୱର ଜୟଗାନ କରୁ କରୁ ଆଗେଇଯିବେ ନିର୍ଭୟରେ ତୋପ କମାଣ ମୁହଁକୁ ଯୁଦ୍ଧ ବନ୍ଦ କରିବାକୁ । କ୍ଷୁଦ୍ରତାର ଇତିହାସ ଅନ୍ୟ ଯାହାର ଜୟଗାନ କରୁ ନା କାହିଁକି, ମାନବିକତାର ଇତିହାସ ଜୟଗାନ କରୁଛି ଓ କରିବ କେବଳ ଏମାନଙ୍କର ଜୟଗାନ ।

ଇତିମଧ୍ୟରେ ଧରଣୀର ଛୁଆଟି ଉଠିପଡ଼ି ଚିତ୍କାର କରି କାନ୍ଦିବାକୁ ଲାଗିଲା । ଆଉ ଚେଷ୍ଟାକଲା କାମଦେବଙ୍କୁ ଧରଣୀର ବୁକୁ ଉପରୁ ହଟାଇଦେବାକୁ । ଅନେକ କ୍ଷଣ ସେ ଶୋଇପଡ଼ିଥିଲା; ଲେଖକ୍ତି ହୋଇନଥୁଚ ଯେ । ଏଥର ଯେ ନିଶ୍ଚେଷ୍ଟବସ୍ଥା । କାମଦେବଙ୍କର ମଧ୍ୟ ସେଇ ଅବସ୍ଥା । ଦୁହେଁ ହିଁ ଲାଗିରହିଲେ ଧରଣୀର ବୁକୁରେ । ଧରଣୀ ପଡିଛନ୍ତି ସେମିତି ମୌନ ନିଶ୍ଚଳ ଭାବରେ । ତାଙ୍କ ବୁକୁ ଉପରେ ଲାଗିଛି ନାନା ଲୀଳା ।

ବାଲୁଆମାନେ ଶେଷ ପ୍ରାହରିକ ଗାଇଲେ—ହୁସ୍ୟା, ହୁସ୍ୟା ! ଆଉ ଥୋକେ ଦୂରରୁ ପଚାରିଲେ, କ୍ୟା ହୁସ୍ୟା, କ୍ୟା ହୁସ୍ୟା ·· । ଆହୁରି ଦୂରରେ ଆଉ ଥୋକେ ଉତ୍ତର ଦେଲେ, ହତ୍ୟା ହୁସ୍ୟା, ହତ୍ୟା ହୁସ୍ୟା ···

ଧରଣୀ ଉଠିଲେ । ଅନାଇ ଦେଖିଲେ ସ୍ୱାମୀ ଓ ପୁତ୍ର ଦୁହେଁ ହିଁ ତାଙ୍କୁ ଦୋହନ କଲା ପରେ କ୍ଲାନ୍ତ ଭାବରେ ଶୋଇପଡ଼ିଛନ୍ତି । ଦୁହିଁଙ୍କୁ ହିଁ ତାଙ୍କର ଅବୋଧ ସନ୍ତାନ ଭଳି ମନେହେଲା । ଅଧରରେ ତାଙ୍କର ସ୍ମିତ ହାସ୍ୟ ଖେଳିଗଲା । ସେ ପ୍ରାର୍ଥନା କଲେ, ହେ ପରମ ପିତା, ଏମାନଙ୍କୁ ସଂଯମ ଦିଅ, ସୁସ୍ଥ ସବଳ କର, ବୁଦ୍ଧି ଦିଅ ।

ଆକାଶରେ ଏକ ପ୍ରବୁଦ୍ଧ ଭାବ । ସନ୍ନ୍ୟାସୀ ଯାଉଛନ୍ତି ଡାକି ଡାକି, ହେ ଅମୃତର ସନ୍ତାନମାନେ ! ଉଠ, ଜାଗ, ବିଶ୍ୱ ପ୍ରତି ଆକୃଷ୍ଟ ହୁଅ, ତାହା ହିଁ ସବୁଠାରୁ ଶ୍ରେଷ୍ଠ ! ସନ୍ନ୍ୟାସୀଙ୍କ ଆହ୍ୱାନ ଶୁଣି ଧରଣୀ ଆକାଶକୁ ଗୃହିଁ ନମସ୍କାର କଲେ, ମୁହଁ ତାଙ୍କର ଆଶାରେ ଉଜ୍ଜ୍ୱଳ ହୋଇଉଠିଲା । ତା'ପରେ ସେ ଗୃହକାମ କରିବାପାଇଁ ସବୁଜ କନ୍ତାଟି ପିନ୍ଧି ଉଠିଗଲେ ଚଉକ ଭଳି ବୁଲିବାକୁ ।

ଧରଣୀ ମଧ୍ୟ ଆକାଶକୁ ଚାହିଁ ହସିଲେ । ସେ ମଧ୍ୟ ଆଶାର ଆଲୋକରେ ଉଜ୍ଜ୍ୱଳ ହୋଇଉଠିଲେ । ସେ ମଧ୍ୟ ପ୍ରାର୍ଥନା କଲେ, ହେ ଅନନ୍ତ ପୁରୁଷ, ମୋର ସନ୍ତାନମାନଙ୍କ ମନରୁ ଅବୋଧତା ଦୂରକର, ସେମାନଙ୍କୁ କ୍ଷମାକର, ସୁସ୍ଥ ସବଳ କର, ସଂଯମ ଦିଅ କୋଟି କୋଟି ସନ୍ତାନ କୋଳରେ ଧରି ସେ ମଧ୍ୟ ଚରକ ଭଳି ବୁଲୁଛନ୍ତି । ତାଙ୍କର ନାଇଁଥିବା ସବୁଜ ଲୁଗାଟି ଆନନ୍ଦରେ ତରଙ୍ଗାୟିତ ହେବାକୁ ଲାଗିଲା ।

ସନ୍ନ୍ୟାସୀ ଚାଲିଛନ୍ତି ଗାଇ ଗାଇ—ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍ । ତାଙ୍କ ପ୍ରାର୍ଥନାରେ ଯେପରି ସବୁ ହିଂସ୍ରତା ସେ ଶୋଷଣ କରିଦେଲେ ନୀଳକଣ୍ଠ ଭଳି ।

□□□

# ହୋଲି

ଋତୁରାଜ ବସନ୍ତ ସମାଗତ । ଶୀତର ଜଡ଼ତା ଛାଡ଼ି ପୃଥିବୀ କ୍ରମେ ପ୍ରଖର ସୂର୍ଯ୍ୟ ଆଡ଼କୁ ଚାଲିଯାଉଛି । ମଝିରେ ଏହି ରସମୟ ସ୍ଥିତି । ଗଛ ସବୁ କଅଁଳିଆ ପତ୍ରରେ କମନୀୟ ଦିଶୁଛନ୍ତି । ପଲାଶବନରେ ନିଆଁ ଲାଗିଛି । ଆମ୍ରତୋଟାରେ କୋଇଲି ତୁହାଇ ତୁହାଇ ଅଧୀରଭାବରେ ଡାକିଚାଲିଛି । ମଧୁମଦଲୋଭୀ ଭ୍ରମରମାନେ ଚୂତ ମଞ୍ଜରୀ ସୁବାସରେ ଉନ୍ମତ୍ତ ହୋଇ ଏ ଗଛରୁ ସେ ଗଛ ଧାଉଁଛନ୍ତି । ଚାରିଆଡ଼େ ଅପୂର୍ବ କମନୀୟ ଶୋଭା । ଜଳେ ସ୍ଥଳେ ମରୁତ-ବ୍ୟୋମେ ବସନ୍ତର ବୈଜୟନ୍ତୀ—ଦେହରେ ମନରେ ଅପୂର୍ବ ସମ୍ବେଦନ ସ୍ପନ୍ଦନ ।

ନବୀନ ବର୍ଷାର ମେଘ ଭଳି ଯାହାଙ୍କର କାନ୍ତି, ଯାହାଙ୍କର କଟୀତଟରେ କୋଟି କୋଟି ସୂର୍ଯ୍ୟ ବିରାଜିତ, "ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ଯା ଲୋମକୂପେ ବିରାଜଇ", ଯାହାଙ୍କରବଂଶୀ ଅହରହ ପ୍ରତ୍ୟେକ ଜୀବକୁ ଡାକୁଚି ଆସ ଆସ ବୋଲି, ସେଇ ବାସନ୍ତୀ ବସନ ପରିହିତ, ଆଜାନୁଲମ୍ବିତ ବନମାଳାଶୋଭିତ, ଅତି କମନୀୟ ସୁଠାମ କିଶୋରବିଗ୍ରହ ବସନ୍ତୋତ୍ସବରେ ମାତିଛନ୍ତି । ହୋଲି ଖେଳ ତ ନନ୍ଦକୁମାର । ଆମେ ଆମରି ମନର ମାଧୁରୀ ମିଶାଇ କରିଅଛୁ ତାଙ୍କୁ ରଚନା, ବୈଜ୍ଞାନିକମାନେ ବସନ୍ତର ବା ବସନ୍ତୋନ୍ମାଦନାର ଯେ କୌଣସି କାରଣ ବାଢ଼ନ୍ତୁ ନା କାହିଁକି ।

ଆଜି ଦଶମୀ ତିଥି; କିନ୍ତୁ ଏକାଦଶୀ ମଧ୍ୟ ପଡ଼ିଥିବାରୁ ପଞ୍ଚଦୋଳ ଆରମ୍ଭ ଆଜିଠୁଁ । ଲୁଣଭଦ୍ରାର ଏପାରି କୃଷ୍ଣପୁରର ଲୋକେ ଆଜିଠୁ ପାଞ୍ଚଦିନ ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉଙ୍କୁ ନେଇ

ମାରନ୍ତି, ଅବିର ଖେଳନ୍ତି । ପ୍ରତିବର୍ଷ ପରି ଆଜି ଶ୍ରୀ ଶ୍ରୀ ରାଧାବଲ୍ଲଭ ଦୁଆର ଦୁଆର ବୁଲି ଆନନ୍ଦ ବିତରଣ କରୁଛନ୍ତି । ହୋଲିଆମାନେ ଅବିରଥାଳି ଧରି ମାଦଳ ବଜାଇ ଗାଇ ଗାଇ ଯାଉଛନ୍ତି — ରାଧାବଲ୍ଲଭମୋହନ ଖେଳେ ହୋରି ···। ପିଲାଏ କାଲୁରୁ ବାଲୁରୁ ଆଗେ ଆଗେ ନାଚି ନାଚି ଯାଉଛନ୍ତି । ପ୍ରତ୍ୟେକେ ମୁହଁରେ ଅବିର ବୋଳି ହୋଇ ତାଳପତ୍ର ବାନ୍ଧି ମାଙ୍କଡ଼ ସାଜିଛନ୍ତି । କାହାକୁ ଧୋବଧାଉଳିଆ ଦେଖିପକେଇଲେ ତ ମାଦଳ ଆହୁରି ଜୋର୍‌ରେ ବାଜିଉଠେ । ପିଲାଏ କଳକଳା ନାଦରେ ଗଗନ ପବନ କମ୍ପାଇ ଦଉଡ଼ନ୍ତି ତା ପାଖକୁ । ଆଉ ହୋଲିଆମାନେ ଆନନ୍ଦରେ ଗାଆନ୍ତି—

କୋଇ କୋଇ ଗାଓ୍ୱେ ତ    କୋଇ କୋଇ ବଜାଓ୍ୱେ
କୋଇ କୋଇ ମାରନ୍ତ ପିଚକାରୀ······

ଦିନ ଦ୍ୱିପ୍ରହରପରକୁ ହେଲାଣି । ଗାଁ ବୁଲା ସାରି ଠାକୁରେ ନଈଆଡ଼କୁ ଛନ ଛନ ଆସୁଥାଆନ୍ତି । କୃଷ୍ଣଭଦ୍ରା ନଦୀରେ ସ୍ନାହାନ ସାରି ବାହୁଡ଼ିବେ । ହୋଲିଆମାନେ ଇତ୍ୟବସରରେ ମଧ୍ୟ ଗାଧୋଇନେବେ ।

ଆଜି ଇଦୁଲ୍‌ଜୁହା—କୁରବାନି ଦିନ ମଧ୍ୟ ପଡ଼ିଥାଏ । ରହିମ ଖାଁ ଠିକ୍ ଏଇ ସମୟରେ କୃଷ୍ଣଭଦ୍ରାର ଆରପାରିରୁ, ଅହମଦପୁରରୁ (ଯାହାକୁ ଏପାରିର ଲୋକେ ଆଜିକାଲି ଜନାନ୍ତିକେ ପାକିସ୍ତାନପୁର ବୋଲି କହନ୍ତି) ବାହାରି ନଈ ପାରିହୋଇ ଯାଉଥାଆନ୍ତି କୃଷ୍ଣପୁରର ଗ୍ରାମ ପଧାନଙ୍କ ଘରକୁ ମୁବାରକ୍ ଜଣାଇବାକୁ । ହାତରେ ତାଙ୍କର ଗୋଟିଏ ଥାଳି, ଥାଳିରେ ଅଛି ବିରିଆନି, କବାବ, ପଲାଉ ଇତ୍ୟାଦି । ରହିମଙ୍କ ବିବି ଜେବୁନ୍‌ନିସା ଭାରି ଭଲ ରାନ୍ଧିଜାଣନ୍ତି । ସେ ନିଜେ ତାଙ୍କ ପ୍ରିୟ ଦିଅର ଗ୍ରାମ ପଧାନଙ୍କ ପାଇଁ ଏ ସବୁ ରାନ୍ଧି ମିଆଁଙ୍କ ହାତରେ ପଠାଇଛନ୍ତି ।

ଗ୍ରାମ ପଧାନ ଓ ରହିମ୍ ଖାଁ ଆବାଲ୍ୟ ବନ୍ଧୁ । ରହିମ୍ ଅବଶ୍ୟ ଗ୍ରାମ ପଧାନଙ୍କ ଭାଗଗ୍ରାହୀ; କିନ୍ତୁ ତାଙ୍କ ବଂଶ-ବଂଶାନୁକ୍ରମେ ଅହମଦପୁରର ଖଲିଫା । ଖଲିଫାବଂଶ ଓ ପଧାନ ବଂଶର ବନ୍ଧୁତ୍ୱ ଅର୍ଥନୈତିକ ଓ ସାମାଜିକ ଆଦି ବାଧା ଅତିକ୍ରମ କରି ଅନ୍ୟ ଏକ କ୍ଷେତ୍ରରେ ମିଳିତ ହୋଇଛି ଆଜିକୁ ଚାରିପୁରୁଷ ହେବ । ଖଲିଫାବଂଶ ହେଉଛି ପ୍ରଧାନବଂଶର ସୂର୍ଯ୍ୟ-ମଇତ୍ର ବନ୍ଧୁ । ଗୋଟିଏ ବଂଶରେ କୌଣସି କ୍ରିୟାକର୍ମ ହେଲେ ଅନ୍ୟ ବଂଶର ସ୍ତ୍ରୀ ପୁରୁଷ-ମାନେ ସେଥିରେ ଯୋଗଦିଅନ୍ତି । ବାହାଘର ହେଲେ ତେଲ ହଳଦି ଯାଏ ଓ ବେଭାର ଆସେ । ହୁଏତ କେବେ ସାମାଜିକ ଆପତ୍ତି ଉଠିଥିଲା; କିନ୍ତୁ ବର୍ତ୍ତମାନ ଏ ଦୁଇ ବଂଶ ମଧ୍ୟରେ ବନ୍ଧୁତ୍ୱ ଏକ ଆଦରଣୀୟ ବ୍ୟତିକ୍ରମ ବୋଲି ସ୍ୱୀକୃତ ହୋଇସାରିଛି । ପୁଣି ରହିମ ଖାଁ ଅହମଦପୁରର ଖଲିଫା ଓ ଗ୍ରାମ ପଧାନ କୃଷ୍ଣପୁରର ଗଣ୍ୟମାନ୍ୟ ଲୋକ ଥିବାରୁ ସ୍ୱାର୍ଥାନ୍ଧ ନେତାମାନେ ଧର୍ମଭିତ୍ତିରେ ଭାରତକୁ ଭାଗ ଭାଗ କରିଦେଇଥିବାରୁ ଭିତରେ ଯାହା ଥାଉନା ନା କାହିଁକି, ଏ ଦୁଇ ଗାଁ ଭିତରେ ବାହାରର ସଦ୍ଭାବ ରକ୍ଷା କରିପାରିଛି । ବ୍ୟକ୍ତିଗତ ଭାବରେ ଦେଖିବାକୁ ଗଲେ ଏ ବନ୍ଧୁତ୍ୱ ରହିମ୍ ଗାଁ ଓ ଗ୍ରାମ ପଧାନଙ୍କ ମାନସିକ ବ୍ୟାପ୍ତି ଅନେକ ବଢ଼ାଇ ଦେଇ

ପାଣଚ । ଧର୍ମ ପ୍ରତି ଦୁହିଁଙ୍କର ଆନୁଗତ୍ୟ ଥିବାରୁ ପ୍ରତିଦିନ ସନ୍ଧ୍ୟାବେଳେ, ଗ୍ରାମ ପ୍ରଧାନ ଘରେ ହେଉ ବା ରହିମ୍ ଖାଁ ଘରେ ହେଉ, ଗୀତା, କୋରାନ୍ ସରିଫ୍ ବିଷୟରେ ଚର୍ଚ୍ଚା କରନ୍ତି, ମୁଗ୍‌ଧ ହୁଅନ୍ତି, ଆନନ୍ଦିତ ହୁଅନ୍ତି ।

ନଈବନ୍ଧ ଉପରକୁ ଉଠିଲାବେଳକୁ ଶ୍ରୀ ଶ୍ରୀ ରାଧାବଲ୍ଲଭ ଚଳି ଚଳି ଆସୁଥାନ୍ତି । ଗ୍ରାମ ପଧାନଙ୍କ ନାତି ପ୍ରଥମେ ରହିମ୍‌ଙ୍କୁ ଦେଖିପକାଇ ପାଟିକଲା-ଆରେ ହେଇରେ ଅଜା ! ବଡ଼ବଡ଼ଆମାନେ 'ହାଁ । ହାଁ ।' କହୁ କହୁ ନାତି ଯାଇ ଅଜାଙ୍କ ଦାଢ଼ିରେ ଅବିର ବୋଳି-ଦେଇ ତାଳି ମାରି ନାଚିଲା । ରହିମ୍ ପ୍ରଥମେ ଦାନ୍ତ ନିକୁଟି ହସିଦେଲେ; କିନ୍ତୁ ତତ୍‌କ୍ଷଣାତ୍ ଗମ୍ଭୀର ହୋଇଗଲେ । ତାଙ୍କର ମନେପଡ଼ିଗଲା ଅଳ୍ପଦିନ ତଳେ ଦୁଇ ଗାଁ । ଭିତରେ ଗୋହତ୍ୟା ନିରୋଧ ନେଇ ଯେଉଁ କାଣ୍ଡ ଘଟିଯାଇଛି ସେଥିରେ ଅହମଦପୁରର ସମସ୍ତେ ଉତ୍ତ୍ୟକ୍ତ ହୋଇଅଛନ୍ତି । ସେ ରାଗ କୌଣସିମତେ ଥତାମତା ହୋଇ ରହିଚି । ଗୋରୁମାଂସ ଖାଇଲେ ନାନା ରୋଗ ହୁଏ, ତେଣୁ ତାକୁ ନ ଖାଇବା ଭଲ ଏବଂ ଆମ ହିନ୍ଦୁ ଭାଇମାନେ ଆମର ଭଲପାଇଁ କହୁଚନ୍ତି, ଏ କଥା ଖଲିଫା ବୁଝାଇବାରୁ ଅହମଦପୁରିଆମାନେ ନ ବୁଝି ମଧ୍ୟ ବୁଝିଲାପରି ରହିଛନ୍ତି; କିନ୍ତୁ ଏ ଅପମାନ ମନଭିତରେ ରାଗକୁ କୁହୁଳାଉଚି ଅନବରତ । ଗୋମାଂସ ତ୍ୟାଗରେ କିଛି କଥା ନାହିଁ ଯେ, ସେ କଥାକୁ ବାଧ୍ୟ କରାଇବାଦ୍ୱାରା ତାଙ୍କର ଧର୍ମ ଓ ବ୍ୟକ୍ତିତ୍ୱକୁ ଘୃଣା ଭଳି ତାଙ୍କୁ ଲାଗୁଛି । ତେଣୁ ଆଜି ପୁଣି ହଠାତ୍ କି କାଣ୍ଡ ହେବ କିଏ ଜାଣେ ? ସେତେବେଳକୁ ଅନ୍ୟ ପିଲାଏ ରହିମ୍‌ଙ୍କୁ ଘେରିଯାଇ ସାରିଲେଣି । ରହିମ୍ ଥାଳିଆ ଟେକି ଧରି ବଡ଼ ପାଟିକରି ଚିତ୍କାର କରୁଥାଏ 'ଆରେ ହମ୍ ମୁସଲମାନ'; କିନ୍ତୁ ପିଲାଏ ସେ କଥା ଶୁଣିବା ଅବସ୍ଥାରେ ନାହାନ୍ତି । ରହିମ୍ ଭୟାର୍ତ୍ତ ଦୃଷ୍ଟିରେ ଅହମଦପୁର ଆଡ଼େ ଚାହିଁଲେ । ଗାଁର ଅନ୍ୟ ମୁସଲମାନ ଭାଇଙ୍କ କଥା ନ ମାନି ସେ ଆଜି ଆସିଛନ୍ତି, ତେଣୁ କଥାଟା ଅଧିକ ଖରାପ ଲାଗୁଚି, ଅଧିକ ଭୟର କାରଣ ମଧ୍ୟ ଅଛି । ହୋଲିଆମାନଙ୍କ ମଧ୍ୟରେ ବଡ଼ବଡ଼ଆମାନେ ମଧ୍ୟ ଚାଟକା ହୋଇ ଚାହିଁରହିଥାନ୍ତି କିଂକର୍ତ୍ତବ୍ୟବିମୂଢ଼ଭାବରେ ।

ନିମିଷକେ ହଠାତ୍ ସବୁ ଓଲଟପାଲଟ ହୋଇଗଲା । ଫୁଲଭିତରୁ ହଠାତ୍ ଯେପରି ଗୋଖର ସାପ ବାହାରିପଡ଼ିଲା । ଅହମଦପୁରର ଟୋକାଏ ଛପି ସବୁ ଦେଖୁଥିଲେ । ଏଇ ଘଟଣା ଆଳରେ ସେମାନେ ପୂର୍ବ ଅପମାନର ଦାଉ ସାଧିବାପାଇଁ ଦଳ ଦଳ ହୋଇ ଠେଙ୍ଗା ବାଡ଼ି, ତେଣ୍ଟା, ସାବଳ ଆଦି ଧରି 'ମାରେ ଶାଲେ କାଫେରକୋ'' 'ଅଲ୍ଲାହୁ ଆକବର' 'କୁର୍‌ବାନ, କୁର୍‌ବାନ' ଚିତ୍କାର କରି ତୁଆଁ ମାରି ଦୌଡ଼ିଲେ । କୁଶୁପୁରର ଜଣେ ଦୌଡ଼ି ଯାଇ ଗାଁରେ ଖବର ଦେବାରୁ ସିଆଡ଼ୁ ମଧ୍ୟ ସେମିତି ଦଳ ଦଳ ହୋଇ 'ରାଧାବଲ୍ଲଭଙ୍କୀ ଜୟ' କହି ଦୌଡ଼ିଲେ ନଈବାଲିକୁ । ନଈବାଲି ଉପରେ ଦୁଇଦଳ ମଧ୍ୟରେ ଖଣ୍ଡଯୁଦ୍ଧ ଲାଗିଗଲା ।

ରହିମ ପ୍ରଥମେ ଆବାକାବା ହୋଇ ନଈବନ୍ଧ ଉପରେ କିଛିକ୍ଷଣ ଛିଡ଼ା ହୋଇ ରହିଲେ । ଦେହ ତାଙ୍କର ଥରୁଥାଏ । ବାଧା ଦେବାର ଶକ୍ତି ତାଙ୍କର ନଥାଏ; କିନ୍ତୁ ସେ ସେ ନିଜକୁ ଏସବୁପାଇଁ ଦାୟୀ ମନେକରି କିଛି ଗୋଟାଏ କରିବାକୁ ହିଁ ହେବ ଭାବି ଦୌଡ଼ିଲେ

ଦଙ୍ଗା ଭିତରକୁ; କିନ୍ତୁ ମଣିଷ ହୋଇ ଆଉ ସେତେବେଳେ କେହି ନ ଥାନ୍ତି । ସମସ୍ତେ କ୍ରୋଧର ଏକ ଏକ ଯନ୍ତ୍ର । ତାଙ୍କ କଥା କାହାରି କାନରେ ପଡ଼ୁନାହିଁ । ସେ ଧକ୍କା ଖାଇ ଖାଇ ଛିଟିକି ପଡ଼ିଲେ ନଈଭିତରକୁ । ଆଖି ଆଗରେ ଦେଖିଲେ ସଙ୍ଗାତ ଗ୍ରାମ ପଧାନଙ୍କ ପୁଅ ନବ ଅବଦୁଲ୍‌ର ମୁଣ୍ଡ ଏକା ଶାବଲ ପାହାରକେ ଦ୍ୱ'ଫାଳ କରିଦେଲା । ଅବଦୁଲ୍‌ର ସର୍ବାଙ୍ଗ ରକ୍ତରେ ବୁଡ଼ିଗଲା । ତଥାପି ଅବଦୁଲ୍ ପଡ଼ିବା ଆଗରୁ ନବ ଗ୍ରୀବରେ ଶାବଲ ଭୂଷି ଦେବାରୁ ନବ ଗ୍ରୀବରୁ ରକ୍ତ ଫୁଆରି ଭଳି ବାହାରି କୁଶଭଦ୍ରାର ତତଲା ବାଲିରେ ପଡ଼ିବାକୁ ଲଗିଲା । ଅଳ୍ପ ସମୟ ପରେ ନବ ଓ ଅବଦୁଲ୍ କୁଣ୍ଢାକୁଣ୍ଢି ହୋଇ ତଳେ ପଡ଼ିଗଲେ ।

ରହିମ୍ ଆଉ ସମ୍ଭାଳି ପାରିଲେନାହିଁ । 'ମାରେ ଶାଲେ କାଫେରକୋ' ବୋଲି ସେ ଚିତ୍କାର କରି ଦୌଡ଼ିଲେ ପୁଣି । ତାଙ୍କର ମନେପଡ଼ିଗଲା ବର୍ତ୍ତମାନ ସଲାତୁଲ୍ ଜୁହ୍ର (ମଧ୍ୟାହ୍ନ ପ୍ରାର୍ଥନା)ର ସମୟ । ଥମ୍ କିନା ଛିଡ଼ା ହୋଇଗଲେ । କଅଣ କରିବେ ଭାବି ପାରିଲେ ନାହିଁ । ଆଜିପର୍ଯ୍ୟନ୍ତ କୌଣସି ଦିନ ଯେ ପ୍ରାର୍ଥନା ଛାଡ଼ିନାହାନ୍ତି; କାରଣ କୋରାନ୍ ସରଫ୍‌ରେ ଆଦେଶ ଅଛି ଏହି ପ୍ରାର୍ଥନାକୁ ବିଶେଷ ଧ୍ୟାନ ଦେବାପାଇଁ । କ୍ରୋଧରେ ତାଙ୍କର ସର୍ବାଙ୍ଗ କମ୍ପୁଥାଏ । ତଥାପି ସେ କୁଶଭଦ୍ରାର ପାଣିରେ ମୁହଁ ହାତ ଧୋଇ ବାଲିରେ ଗାମୁଛା ପାରି ନମାଜ ପଢ଼ିବାକୁ ଲଗିଲେ । କୋରାନ୍ ସରିଫ୍‌ର କଥା ତାଙ୍କ କାନରେ ବାଜୁଥାଏ, ସବୁ ମଣିଷ ଏକ···ଆମର ବିଭେଦ ଭାବ ହିଁ ପାପ···ଆମର ଅହଂ, ସ୍ୱାର୍ଥବୁଦ୍ଧି ଓ ଅବିଦ୍ୟା ଏ ପାପ ବଢ଼ାଏ···ଯିଏ ସନ୍ତୁମୀ ଖୁଦା ତାଙ୍କୁହିଁ ସ୍ନେହ କରନ୍ତି···ଯେଉଁମାନେ ଭଗବାନଙ୍କ ନାମରେ କଳି ସୃଷ୍ଟି କରନ୍ତି ସେମାନଙ୍କୁ ପରିହାର କର; କିନ୍ତୁ ଯେତେ ଚେଷ୍ଟା କଲେ ବି ନମାଜରେ ମନ ଦେଇପାରିଲେ ନାହିଁ । ଅବଦୁଲ୍‌ର ଶବ ଉପରେ ନଜର ପଡ଼ିବା ମାତ୍ରେ ହିନ୍ଦୁ ଉପରେ କ୍ରୋଧ, ଘୃଣା, ଈର୍ଷା ପ୍ରବଳ ଭାବରେ ଭିତରୁ ଠେଲିଆସୁଥାଏ । ନମାଜ ସହିତ ଗୋଳେଇ ହୋଇ ଯାଉଥାଏ ନିଜ କଥା···କାଫେର୍ ଏମାନେ ··· ଏମାନେ ମୁହଁରେ କହନ୍ତି ଏଙ୍କ ଧର୍ମ ଉଦାର, ଇସ୍କାଡ଼େ ସରକାରୀ ପଇସାରେ ହିନ୍ଦୁ ମନ୍ଦିର ବନାନ୍ତି···ଏମାନେ ସଂଖ୍ୟାରେ ଆମଠୁ ବେଶି ବୋଲି ଜବରଦସ୍ତି ତାଙ୍କର ହୋଲି ଆମେ ପାଳନ କରିବୁ···ଏଙ୍କୁ ବିଶୋଆସ ନାହିଁ···ପାକିସ୍ତାନ ପଳାଇବ···ଏଙ୍କର 'ଭାଇ ଭାଇ' ଡାକ ଏକ ଫରେବ (ଛଳନା)···ହିନ୍ଦୁ ଧର୍ମହିଁ ଫରେବ ଧର୍ମ···ଶାଲେ କାଫେର୍ ! ନମାଜ ଜାଗାରୁ ଉଠି ଦୌଡ଼ି ଯାଇ ଗୋଟାଏ ହିନ୍ଦୁକୁ ମାରିଦେବାକୁ ତାଙ୍କର ଖାଲି ଇଚ୍ଛା ହୁଏ; କିନ୍ତୁ ପୁଣି କୋରାନ୍ ସରିଫ୍ ମନେପଡ଼ିଯାଏ···ଜୀବନ ମରଣ ଖୁଦାଙ୍କ ହାତରେ···ପରର ପାପ ଦୋଷ ପ୍ରତି ଦୃଷ୍ଟି ନ ଦେଇ ତାଙ୍କୁ ସମବେଦନା ଜଣାଅ···ତାଙ୍କ ମନ ଭିତରେ ଏମିତି ଭିଡ଼ା-ଓଟରା ଲଗିଥାଏ । ଆଉ ସମ୍ଭାଳି ନପାରି ନମାଜ ଛାଡ଼ି ହଠାତ୍ ଉଠିପଡ଼ି ମୃତ ଅବଦୁଲ୍ ହାତରୁ ଶାବଳଟା ଟାଣିନେଇ 'ଜେହାଦ୍ ଜେହାଦ୍' ପାଟି କରି ଦୌଡ଼ୁ ଦୌଡ଼ୁ ବେହୋସ ହୋଇ ପଡ଼ିଗଲେ, ନମାଜ ଛାଡ଼ି ଉଠିପଡ଼ିଥିବାର ଲଜ୍ଜା କୋହ ସମ୍ଭାଳି ନ ପାରି । ସୂର୍ଯ୍ୟ ସେତେବେଳେ ଠିକ୍ ମୁଣ୍ଡ ଉପରେ । ଶାଗୁଣାମାନେ ଉପରେ ଚକ୍କର ମାରୁଥାନ୍ତି । କୁଶଭଦ୍ରାର

ବନ୍ଧ ଉପର ଆମ୍ବତୋଟାରେ କୋଇଲି କୁହୁକୁହୁ ଡାକୁଥାଏ । ନବ ଆଉ ଅବଦୁଲ୍ କୁଣ୍ଢାକୁଣ୍ଢି ହୋଇ ପଡ଼ିଥାନ୍ତି । ଦୁଇ ଦଳ ଭିତରେ ପିଟାପିଟି ସେମିତି ଚାଲିଥାଏ ।

ରାମ ପଧାନ ଯେତେବେଳେ ପୁଅର ମରିବା ଖବର ପାଇଲେ ସେତେବେଳେ ସେ ବଳଦମାନଙ୍କୁ ଖୁଆଉଥିଲେ କାଠ ଦାନ ପରି । ଶୁଣିବା ମାତ୍ରେ ତାଙ୍କର ଗୋଡ଼ ହାତ ଅଚଳ ହୋଇଗଲା । କଅଣ କରିବେ ବା କରିବା ଉଚିତ ସେ ଭାବି ପାରିଲେ ନାହିଁ । ଘର ଭିତରୁ ହଠାତ୍ କାନ୍ଦବୋବାଳି ଶୁଣି ସେ ଆହୁରି ଧକଚକେଇଗଲେ । କିଏ ଜଣେ କହିବା ପରି ତାଙ୍କୁ ଜଣାଗଲା ଯେ ନବବୋହୂ ମୂର୍ଚ୍ଛା ଯାଇଛନ୍ତି । ତଥାପି ସେ ସ୍ଥାଣୁ ଭଳି ଛିଡ଼ା ହୋଇ ରହିଲେ । ତାଙ୍କର ସମସ୍ତ ଦେହ କ୍ରୋଧରେ ଥରୁଥିଲା । ପାଖରେ ପଡ଼ିଥିବା କଟୁରିଟା ଜାବୁଡ଼ି ଧରି ନଈ ଆଡ଼କୁ ଖଣ୍ଡେ ବାଟ ଦୌଡ଼ିଗଲେ ପ୍ରତିଜ୍ଞା କରି ଯେ ରହିମ୍‌କୁ ହାଣି ତାରି ରକ୍ତରେ ଶ୍ରୀଶ୍ରୀରାଧାବଲ୍ଲଭ ଜୀଉଙ୍କୁ ହୋରି ଖେଳାଇବେ । ମନରେ ତାଙ୍କର ପଡ଼ିଗଲା ଯୁଗେ ଯୁଗେ ହିନ୍ଦୁମାନଙ୍କ ପ୍ରତି ମୁସଲମାନଙ୍କ ଅତ୍ୟାଚାର, ଆଉରଙ୍ଗଜେବ୍‌ର ଅତ୍ୟାଚାର···ଯାଙ୍କ ଧର୍ମହିଁ ହିଂସ୍ରତା ଉପରେ ପ୍ରତିଷ୍ଠିତ···ଏମାନଙ୍କର ଦୟାମାୟା ନାହିଁ···ଏମାନେ ବ୍ୟଭିଚାରୀ, ନରହନ୍ତା, ଅବିଶ୍ୱାସୀ···ଏମାନେ ଯାଆନ୍ତୁ ଚାଲେ ପାକିସ୍ଥାନ ପଳେଇ; କିନ୍ତୁ ଦୌଡ଼ୁ ଦୌଡ଼ୁ ତାଙ୍କର ମନେପଡ଼ିଗଲା—ମହାଭାରତ କଥା । ଶ୍ୟେନ ରୂପୀ ଇନ୍ଦ୍ର କହିଚନ୍ତି—ଯେଉଁ ଧର୍ମ ଅନ୍ୟ ଧର୍ମକୁ ଘୃଣା କରେ ତା' କୁ'ଧର୍ମ···ରହିମ୍ କହୁଥିଲା କୋରାନ୍‌ରେ ଅଛି, ଧର୍ମ ବିଷୟରେ ଜବରଦସ୍ତି ପାପ । ମନେପଡ଼ିଗଲା ତାଙ୍କର ସର୍ବଧର୍ମାନ୍ ପରିତ୍ୟଜ୍ୟ । ରହିମ୍ ଓ ମୁଁ ନିରାସକ୍ତ ହେବାପାଇଁ କେତେ ପ୍ରାର୍ଥନା କରିଚୁ । ସେ ସବୁ କଅଣ ଏଇ ଚରମ ପରୀକ୍ଷା ବେଳେ ବ୍ୟର୍ଥ ହୋଇଯିବ···ହେ ରାଧାବଲ୍ଲଭ ! ମୋତେ ଶକ୍ତି ଦିଅ···ଶକ୍ତି ଦିଅ । ମନେ ମନେ ସେ ଆବୃତ୍ତି କରିବାକୁ ଲାଗିଲେ···

ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର···
କାମ ଏଷ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ···
ପାପମାନମ୍ ପ୍ରଜହିହ୍ୟେନମ୍ ଜ୍ଞାନବିଜ୍ଞାନ ନାଶନମ୍ ।

ଦୌଡ଼ୁ ଦୌଡ଼ୁ ସେ ଅମ୍‌କିନା ଛିଡ଼ା ହୋଇଗଲେ । ହାତମୁଠା ତାଙ୍କର ଶିଥିଳ ହୋଇଗଲା, କଟୁରିଟା ସଶବ୍ଦେ ତଳେ ପଡ଼ିଗଲା । ମନେହେଲା କଟୁରିଟା ହୋ-ହୋ କରି ହସିଉଠି କହୁଛି—ଛାରୁ, ସବୁ ହିନ୍ଦୁ ଛାରୁ, ଭଗବାନ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯେତେ ବୁଝାଇଲେ କଅଣ ହେବ, ସବୁ ଛାରୁର ଦଳ···ତୁମ ଉଦାରତା ଏଇ ଛାରୁତାରୁ ଜାତ । ରାମ ପଧାନ କଟୁରିଟାକୁ ପୁଣି ଉଠାଇ ନେଇ ଖଣ୍ଡେ ବାଟ ଦୌଡ଼ିଗଲେ, ପୁଣି ଅମ୍‌କିନା ଛିଡ଼ାହୋଇପଡ଼ିଲେ । ଅସହାୟ ଭାବରେ ସେ ଉପରକୁ ଚାହିଁ ହାତଯୋଡ଼ି କହିଲେ, "ହେ ରାଧାବଲ୍ଲଭ, ମୁଁ ଅର୍ଜୁନ ନୁହେଁ ଯେ ଏ ବିପରୀତ ଭାବକୁ ଏକ କରିପାରିବି । ମୋତେ ରକ୍ଷାକର···ମୋତେ ରକ୍ଷାକର ପ୍ରଭୁ—କହୁ କହୁ ସେ ବେହୋସ ହୋଇ ତଳେ ପଡ଼ିଗଲେ ।

ସେତେବେଳକୁ ପୁଲସ୍ ଆସି ନଈବାଲିରେ ଦୁଇଟି ଶବକୁ ଜଗି ଛିଡ଼ା ହୋଇ ସାରିଲେଣି, ଦୁଇଦଳରୁ ଅନେକ ଧରାହୋଇ ଗ୍ରେଲଖ ହୋଇ ସାରିଲେଣି । ଚୌକିଦାରମାନେ ଶାଗୁଣାମାନଙ୍କୁ ଖେଦୁଥାଆନ୍ତି । କୋଇଲିର ଅଧୀର ଡାକ ଥମି ନାହିଁ । ସୂର୍ଯ୍ୟ ପଶ୍ଚିମ ଆଡ଼କୁ ଢଳିଲେଣି । ପଶୁପକ୍ଷୀମାନେ ଘରମୁହାଁ ହୋଇ ଦୌଡ଼ୁଛନ୍ତି । କୁଶଭଦ୍ରାର ସ୍ରୋତ ସେମିତି କୁଳୁକୁଳୁ ନାଦରେ ବହିଯାଉଚି ସମୁଦ୍ରକୁ । ପୃଥିବୀ ଯେମିତି ବୁଲୁଚି କାଳସ୍ଥାନ ମହାକାଳ ମଧ୍ୟରେ କାଳ ସୃଷ୍ଟି କରି । ଏତେ ଯେ କାଣ୍ଡ ଘଟିଗଲା, ତାହାର ଯେମିତି ସେଥିରେ କିଛି ଯାଏ ଆସେ ନାହିଁ । ଶ୍ରୀ ଶ୍ରୀ ରାଧାବଲ୍ଲଭ ମଧ୍ୟ ହୋରି ଖେଳସାରି ଶୋଇଲେଣି ।

× × × ×

ରାତି ପ୍ରାୟ ଚାରିଟା । ପ୍ରତିଦିନର ଅଭ୍ୟାସବଶତଃ ରାମପଧାନ ହୁ-ଦନ୍ତେ ବିଛଣା ଛାଡ଼ି ଉଠିଲେ ନଈ ଆରପାରିର କୁକୁଡ଼ା ଡାକ 'ଚକ୍ରଧର ରକ୍ଷାକର' ଶୁଣି । ରାଧାବଲ୍ଲଭଙ୍କୁ ପ୍ରଣାମ କରି ସେ କାନେଇ ରହିଲେ ରହିମ୍‌ର 'ଅଲ୍ଲାହୁ ଆକବର୍' ଡାକକୁ । ଏହା ସେମାନଙ୍କର ନିତିଦିନର ଅଭ୍ୟାସ ।

ବାହାରେ ନିସ୍ତବ୍ଧ ମୌନ ରାତ୍ରି, ସୁନ୍ଦର ଅଥଚ ଉଦାର, ମୌନ, ନିର୍ଲିପ୍ତ । ସମସ୍ତ ପୃଥିବୀ ଯେପରି ଧ୍ୟାନମଗ୍ନ । ଗଛବୃଛ ବି ଧ୍ୟାନସ୍ଥ । କୁଶଭଦ୍ରାର ନଈବାଲିରେ ନିଆଁ ଜଳୁଥିବାର ଦେଖି ରାମ ପଧାନଙ୍କ ମନେପଡ଼ିଗଲା ସବୁ କଥା । ସବୁ ଘଟଣା ପୁଣି ଥରେ ଯେପରି ତାଙ୍କ ଆଖି ଆଗରେ ଘଟିଗଲା; କିନ୍ତୁ ବର୍ତ୍ତମାନ ସେ ଖାଲି ନିର୍ଲିପ୍ତ ଦର୍ଶକ, ମନରେ କୌଣସି ଭାବାନ୍ତର ନାହିଁ । କେବଳ ଯେତେବେଳେ ମନେପଡ଼ିଗଲା ରହିମ୍‌କୁ ଏ ଘଟଣା ଶଯ୍ୟାଶାୟୀ କରିପକାଇଥିବ, ସେ ମନରେ ବେଦନା ଅନୁଭବ କଲେ । ଧୀରେ ଧୀରେ ସେ ଚାଲିଲେ ନଈ ଆଡ଼କୁ ।

ରହିମ୍‌ର ମଧ୍ୟ ନିଦ ଭାଙ୍ଗିଯାଇଥାଏ ସେତିକବେଳକୁ । ସେ ମଧ୍ୟ କାନେଇ ଥାଏ 'ରାଧାବଲ୍ଲଭ ହେ' ଡାକକୁ । ରହିମ୍‌ର ବୁଢ଼ୀମା' ଆର ବଖରାରେ ନହରେଇ ନହରେଇ କାଶି ପଚାରିଲେ, "ଏ ରହିମ୍, ଆରେ ରାମଚନ୍ଦର ଉଠିଯ୍ ନେହିଁ କ୍ୟା, କ୍ୟୁଁ ? ଆରେ ଏ ରହିମ୍, ନିଆଁ ନଗା ନିକମ୍ମା, ଆରେ ଯା କେ ଦେଖୋ କ୍ୟା ହୁଆ ଉସ୍‌କା ।" ବୁଢ଼ୀ ଆଉ କହିପାରିଲେ ନାହିଁ, କାଶି କାଶି ବେଦମ୍ ହୋଇଗଲେ । ନିତିଦିନର ଅଭ୍ୟାସ ଭଳି ସେ ଏତିକବେଳେ ଉଠି ରହିମ୍‌କୁ ଉଠାଇଦିଅନ୍ତି । ରହିମ୍ ଉଠି ନମାଜ ପଢ଼ି ଚାଲିଯାଏ ସଙ୍ଗାତ ସହିତ ଗାଧୋଇବାକୁ । ରହିମ୍ ପାଟିକରି କହିଲେ, "ଯାତ ହୁଁ ଅମ୍ମିଜାନ୍, ତୁମ୍ ମତ୍ ଫିକ୍ କରୋ, ଖାସି (କାଶ) ବଢ଼୍ ଯାଏଗା ।" ରହିମ୍ ମଧ୍ୟ ଧୀରେ ଧୀରେ ଚାଲିଲେ ନଈଆଡ଼େ ।

ନଈବାଲିରେ ନିଆଁ ଜଳୁଥିବାର ଦେଖି ତାଙ୍କ ଗ୍ରୁତି ଛିନ୍ କରି ହେଲା । ତେବେ କଅଣ ସଙ୍ଗାତ ମୋତେ ନ ଡାକି ଶବ ପୋଡ଼ାଇଦେଲେ ? ଅଭିମାନରେ ତାଙ୍କ ଆଖି ଛଳ ଛଳ ହୋଇଗଲା । କିନ୍ତୁ ନିଆଁ ପାଖକୁ ଯାଇ ଦେଖିଲେ କିଏ 'ଚନ୍ଦନଜଳ'ବିଦେଶୀ ଧୁନିଜାଳି

ହୋଲିଗୀତ ଗାଉଛନ୍ତି । ପଚାରି ବୁଝିଲେ ସେମାନେ ବିହାରୀ, ପୁରୀକୁ ଚାଲି ଚାଲି ଯାଉ ଯାଉ ବାଟବଣା ହୋଇ ରାତିକ ନଈବାଲିରେ କଟାଇ ଦେଉଛନ୍ତି । ସେମାନେ ଗାଉଥାନ୍ତି—

‘‘ଲଲ୍ଲାନ ଲଲନ ଲଲ ଅଭିରନ ଚଖିଗନ ଲଲିଦ୍ଧ ଲଲ,
ଲଲତରୁ ସଞ୍ଚାର ଲଲ ଢନ ଯାମିନୀ ଲଲିଦ୍ଧ ପିୟୁର କ ସାଲ ।

ରହିମ୍ ବିଭୋର ହୋଇ ଛିଡ଼ାହୋଇ ରହିଲେ ସେଠି । ଅନାଇ ଦେଖିଲେ ଅବ୍ଦୁଲ ଓ ନବି ଅଦୂରରେ କୁଣ୍ଢାକୁଣ୍ଢି ହୋଇ ପଡ଼ିଚନ୍ତି ସେମିତି । ପୁଲିସ୍ ଏପର୍ଯ୍ୟନ୍ତ ଶବ ଦୁଇଟିକୁ ଡାକ୍ତରଖାନା ନେଇ ନାହିଁ, ଜଗି ବସିଚନ୍ତି ଚୌକିଦାରମାନେ । ଜଣେ ବିହାରୀ ପୁଲିସ୍ ମଧ୍ୟ ବିଦେଶୀମାନଙ୍କ ସହିତ ଯୋଗଦେଇ ଗାଉଚି । ଅଦୂରେ ଶାଗୁଣାମାନଙ୍କ ଡେଣା ଫଡ଼ଫଡ଼ ଓ ବିଲୁଆ ଡାକ ଶୁଭୁଛି, କିନ୍ତୁ ନଈ ପାଖରେ ଚାଲିଚି ଭିନ୍ନ ପ୍ରକାର କଥା । କାହାରି ସହିତ କାହାର ଯେପରି ସମ୍ବନ୍ଧ ନାହିଁ; କିମ୍ବା ସତେ ଯେମିତି ଏ ସବୁ ବିପରୀତ ଭିତରେ କୋଉଠି ଗୋଟେ ସମ୍ବନ୍ଧ ଲୁଚିରହିଚି । ଆଶ୍ଚର୍ଯ୍ୟ କଥା—ସେହି ବିଦେଶୀମାନଙ୍କ ଭିତରୁ ଜଣେ ହଠାତ୍ ରହିମ୍‌କୁ ଅନୁରୋଧ କଲା—

ଏକ ହୋଲି ଶୁନାଇଏ ଭାୟା !

ରହିମ୍‌ଙ୍କ ମନଭିତରୁ ହଠାତ୍ ଗୋଟାଏ କୋହ ଉଠିଲା । ସେ କୋହ ଦୁଃଖର ନୁହେଁ କି ଆନନ୍ଦର ନୁହେଁ । କି ଏକ ଅଜଣା ଅପୂର୍ବ ବେଦନା ତାଙ୍କ ମନକୁ ଘାରିଦେଲା । ମନରୁ ତାଙ୍କର ସ୍ୱତଃ କାଫି ସିନ୍ଧୁ ରାଗର ଗାନ ବାହାରି ଆସିଲା—ବଲ୍‌ମାରେ ଚୁନରିୟା ମୈକୋ ଲାଲ ରଙ୍ଗାଦେ—ହେ ମୋର ପ୍ରିୟ ! ମୋର ଏ ଆବରଣ ତୁମରି ରଙ୍ଗ-ରଞ୍ଜିତ ହୋଇଯାଉ । ଗମଗମ ହୋଇ ତାଙ୍କର କଣ୍ଠରୁ ସ୍ୱର ବାହାରୁଥାଏ, ଝରଝର ହୋଇ ଆଖିରୁ ଲୁହ ଝରୁଥାଏ । ଗୀତ ସରିବା ପରେ ସମସ୍ତେ ନିଶ୍ଚଳ ହୋଇ ବସିରହିଲେ କିଛିକ୍ଷଣ; କାହାରି ତୁଣ୍ଡରୁ କଥା ବାହାରୁ ନଥାଏ । ପ୍ରଶଂସା ଜଣାଇବାକୁ ମଧ୍ୟ ଇଚ୍ଛା ହେଉନଥାଏ ।

ହଠାତ୍ ‘ଶୋଭାନ୍‌ଆଲ୍ଲାହ’ ଶୁଣି ଚମକିପଡ଼ି ରହିମ୍ ଦେଖିଲେ ଛିଡ଼ା ହୋଇଚନ୍ତି ସଙ୍ଗାତ । ଆଖିରୁ ତାଙ୍କର ଲୁହ ଝରିଯାଉଚି । ସେ ହଠାତ୍ ଗାଇବାକୁ ଲାଗିଲେ—

ଆଯ୍‌ହାଦୋ ଆଲ୍ଲା ଇଲ୍ଲାହା ଇଲ୍ ଆଲ୍ଲାହ,
ଆସ୍‌ହାଦୋ ଆନ୍‌ନା ମୁହମ୍ମଦର ରସୁଲୁଲ୍ଲାହ...

ରାମ ପଧାନଙ୍କ ସ୍ୱର ଉପସ୍ଥିତ ସମସ୍ତଙ୍କୁ ଅଭିଭୂତ କରିଦେଲା । ଧୀର ମନ୍ଥର ଗତିରେ ପରିଷ୍କାର ଭାବରେ କରୁଣସ୍ୱରରେ ପ୍ରତ୍ୟେକ ଶବ୍ଦ ତାଙ୍କ କଣ୍ଠରୁ ନିର୍ଗତ ହେଉଥାଏ । ବିଦେଶୀମାନଙ୍କ ଭିତରୁ ଜଣେ ଆନନ୍ଦରେ କହିଲା, ଅବ ଭଗବାନ ଜରୁର୍ ଖୁସି ହୋଙ୍ଗେ । କୋରାନ୍ ସରିଫ କହତେହେଁ ଭଗବାନ୍ କା ନାମ୍ ଶୁନ୍‌କର ଯିସ୍ କା ହୃଦୟ ଉଛୁଲ୍‌ତା ଓହି ଭକ୍ତ ହୈ, ଚାହେ ଓ୍ୱ ହିନ୍ଦୁ ହୋ ୟା ମୁସଲମାନ୍ । ଭଗବନ୍ ଶ୍ରୀକିସନ୍ କହେ ହେଁ ହାମାରା ଭକ୍ତ ଯାହା ହୈ ହାମ୍ ଓ୍ୱାହାଁ ରହୁଙ୍ଗା । ଧନ୍ ହେୟ ଆପ୍ ଲୋଗ ।

ସକାଳୁଆ ହେମାଳ ପବନ ସେତେବେଳକୁ ବୋହିବାକୁ ଲାଗିଲାଣି । ପୂର୍ବଦିଗରେ ପ୍ରଭାତୀ ତାରା ଦପ୍‌ଦପ୍ ହୋଇ ଜଳୁଥାଏ । ଅହମଦ୍‌ପୁରରୁ ଭାସି ଆସୁଥାଏ ପ୍ରଭାତୀ ପ୍ରାର୍ଥନା ଓ କୃଷ୍ଣପୁରରୁ ପ୍ରଭାତୀ ବନ୍ଦନା ।

ବିଦେଶୀମାନେ ଦାଣ୍ଡ ପର୍ଯ୍ୟନ୍ତ ଚାଲିଗଲେ । ରହିମ୍ ଗ୍ରାମ ପଧାନଙ୍କ ମୁହଁରେ ଚାହିଁ ଧୀରେ ପଚାରିଲେ—ସଙ୍ଗାତ, ଆମର ପୁଅ ପରସ୍ପର ହାତରେ ମଲେ, ତେବେ କଅଣ ଖୁଦା ଚାହାନ୍ତି ଆମେ ଚିରଶତ୍ରୁ ହୋଇ ରହିବାକୁ ?

ଗ୍ରାମ ପଧାନ ହସି କହିଲେ—ଭାଇ, ଦେଖ ନବ ଆଉ ଅବଦୁଲ୍ କେମିତି କୁଣ୍ଢାକୁଣ୍ଢି ହୋଇ ଶୋଇଛନ୍ତି । ଭଗବାନଙ୍କ ସଙ୍କେତ—ଆମେ ନୂଆ କରି ପରସ୍ପରକୁ ଚିହ୍ନିବା, ଛଳନାରେ ନୁହଁ, ସ୍ୱାର୍ଥରେ ନୁହଁ, ରାଜନୀତିରେ ନୁହଁ, ଆପଣାକୁ ବଳି ଦେଇ···

ଦୁହେଁ ହାତ ଧରାଧରି ହୋଇ ଚାଲିଲେ ନଈର ଉପର ମୁଣ୍ଡକୁ ଗାଧୋଇବାପାଇଁ, ଜନ୍ମଦିନର ଅଭ୍ୟାସ ଅନୁସାରେ ।

□□□

# ଧର୍ମକ୍ଷେତ୍ରେ

ଫାଲ୍‌ଗୁନ ମାସର ଶୁକ୍ଳପକ୍ଷ ତ୍ରୟୋଦଶୀର ସକାଳ । ସିନ୍ଦୂରା ଫାଟି ଫାଟି ଆସୁଛି । ଏତେ ସକାଳୁ ମଧ୍ୟ କାହିଁ ଗୋଟିଏ କୋଇଲି କୁଶଭଦ୍ରା ନଦୀର ବନ୍ଧ ଉପର ଆମ୍ବତୋଟାରେ ବସି ଏକୁଟିଆ ରାବିଚାଲିଛି ଆକୁଳଭାବରେ ।

ଗ୍ରାମ ପଧାନଙ୍କ ନାତି, ନବଘନଙ୍କ ପୁଅ, ଶ୍ୟାମଘନ ଅନ୍ୟମନସ୍କ ଭାବରେ ଧୀରେ ଧୀରେ ନଈଧାରକୁ ଓହ୍ଲାଇଲେ । ଆଠବର୍ଷ ପରେ ସେ ଡାକ୍ତର ହୋଇ ପ୍ରଥମ ଥର ଗାଁକୁ ଫେରିଛନ୍ତି । ଆଜି ସକାଳୁ ମନଟା ତାଙ୍କର ହଠାତ୍ ଆନନ୍ଦରେ ଭରିଗଲା । ସେ ଆନନ୍ଦ ଯେପରି ଖାଲି ଖୁସି ନୁହେଁ, ଖୁସିଠୁ ଆହୁରି କିଛି ବେଶି । ଯେଉଁଆଡ଼କୁ ସେ ଚାହିଁଲେ, ସବୁ ତାଙ୍କୁ ସୁନ୍ଦର ମନେହେଲା, ଏପରିକି ବାଡ଼ିପଟରେ ପଡ଼ି ପୋଖରୀଟି ଆଉ ଶୁକୁଟା ମା'ର ଶୁଖିଲା ପତରଗଦାଟି ବି । ପୁଣି ସେ ଆନନ୍ଦ ଭିତରେ ଗୋଟିଏ ଅଜଣା ବେଦନା ମିଶିଯାଇ ତାଙ୍କୁ ଉନ୍ମନା କରିଦେଇଛି; ଅଥଚ କେଉଁଥିପାଇଁ ଏପରି ଲାଗୁଛି, ସେ କିଛି କାରଣ ଖୋଜି ପାଇଲେ ନାହିଁ । ସେ ଆଉ ଘର ଭିତରେ ରହିପାରିଲେ ନାହିଁ । ରାତି ନ ପାହୁଣୁ ବାହାରି ଆସିଲେ କୁଶଭଦ୍ରା ନଦୀକୁ. ଯାହାର ନାନା ରୂପକୁ ସେ ପିଲାଟିବେଳୁ ଦେଖି ଦେଖି ମଧ୍ୟ

କଳନା କରିପାରନାହାନ୍ତି କି ତୃପ୍ତି ମଧ୍ୟ ପାଉନାହାନ୍ତି । କୁଶଭଦ୍ରା ଥିଲା ତାଙ୍କର ବନ୍ଧୁ, ଦାର୍ଶନିକ, ପଥପ୍ରଦର୍ଶକ । ବହୁଦିନ ପରେ ଆଜି କୁଶଭଦ୍ରାକୁ ଦେଖି ତାଙ୍କର ବେଦନା-ଆନନ୍ଦ ଆତୁର ଭାବ, ଅନ୍ତର ବ୍ୟାପ୍ତ ହୋଇଗଲା ।

ପନ୍ଦର ବର୍ଷ ପୂର୍ବେ ଏମିତି ଗୋଟିଏ ଦିନରେ ନଈ ଆରପାଖ ଅଡ଼ା ଉପର ଗାଁ ଅହମଦପୁରର ମୁସଲମାନ ଓ ଏପାଖ ଅଡ଼ାଉପର ଗାଁ କୃଷ୍ଣପୁରର ହିନ୍ଦୁମାନଙ୍କ ଭିତରେ ହୋଲିଖେଳ ନେଇ ଦଙ୍ଗା ଲାଗି ତାଙ୍କ ବାପା ନବଘନ ଓ ରହିମ୍ ଅଜାଙ୍କ ପୁଅ ଅବଦୁଲ୍ ପରସ୍ପରକୁ ମାରି ଏଇ ନଈବାଲିରେ କୁଣ୍ଢାକୁଣ୍ଢି ହୋଇ ଚିରଦିନ ପାଇଁ ଶୋଇଯାଇଥିଲେ । ସେ ଦଙ୍ଗାର କାରଣ ଥିଲେ ପୁଣି ଶ୍ୟାମଘନ ନିଜେ । ତାଙ୍କୁ ସେତେବେଳେ ଆଠବର୍ଷ । ସେ ରହିମ ଅଜାଙ୍କ ଦାଢ଼ିରେ ଅବିର ବୋଳିଦେଇଥିଲେ ବୋଲି ଦୁଇ ଗାଁ ଭିତରେ ହଣାକଟା ଲାଗିଯାଇଥିଲା । ଅଥଚ ପଧାନବଂଶ ଓ ଖଲିଫାବଂଶ ଭିତରେ ଅଭେଦ୍ୟ ପ୍ରୀତି ଯୁଗଯୁଗ ଧରି ଚାଲିଆସିଥିଲା—ଏବେ ବି ଅଛି, ଯଦିଓ ପରସ୍ପର ଗାଁ-ବାଲାଙ୍କ ଦାଉରୁ ତା'ର ବାହ୍ୟପ୍ରକାଶ ଅନେକ କମିଯାଇଛି; କିନ୍ତୁ ତାହା ଯେ ଏକ ନୂତନ ଓ ଅଭିନବ ପରୀକ୍ଷାର ସମ୍ମୁଖୀନ ହେବାବେଳ ଏମିତି ଆସିବ, କିଏ ଜାଣିଥିଲା ?

ଶ୍ୟାମଘନ ପାଣି ଭିତରକୁ ପଶିଲାବେଳେ ଦେଖିଲେ ନଈଧାରର ଆରପାଖରୁ ଗୋଟିଏ ଯୁବତୀ ତରତର ହୋଇ ପାଣି ଭିତରୁ ଉଠିଯାଉଛି । ହଠାତ୍ ଶ୍ୟାମଘନଙ୍କୁ ଦେଖି ସେ ମୁହୂର୍ତ୍ତିକପାଇଁ ଥମକିଗଲା । ଆଉ ସେଇ ମୁହୂର୍ତ୍ତିକ ଭିତରେ ସବୁ ଓଲଟପାଲଟ ହୋଇଗଲା ଦୁଇଜଣଙ୍କ ଅଜାଣତରେ । ସେଇ ମୁହୂର୍ତ୍ତିକ ଭିତରେ, ବଟବୃକ୍ଷର କ୍ଷୁଦ୍ରବୀଜରେ ଏକ ବିରାଟ ବଟବୃକ୍ଷ ରହିଥିବା ଭଳି ରହିଗଲା ଅନେକ ଅନେକ କଥା ।

ଶ୍ୟାମଘନଙ୍କୁ ଦେଖି ଯୁବତୀଟି ମୁହଁରେ କିଏ ଯେପରି ଅବିର ମୁଠାଏ ଗୁଡ଼ିଦେଲା । ଅଳ୍ପ ସମୟପାଇଁ ଯୁବତୀଟି ବିସ୍ମୟ-ବିସ୍ଫାରିତ ନୟନରେ ଶ୍ୟାମଘନଆଡ଼େ ଚାହିଁରହିଲା, ଯେପରି ଦୁଇଟି ନୀଳକଇଁ ଫୁଟିଗଲା । ଦେହର ରଙ୍ଗ ଆଉଟା ସୁନା ଭଳି । ଘନକୃଷ୍ଣ କୁଞ୍ଚିତ କେଶର ଚୂର୍ଣ୍ଣକୁନ୍ତଳଗୁଡ଼ିକ ମୁହଁ ଉପରେ ପଡ଼ି ମନେହେଉଥିଲା କୁଶଭଦ୍ରାର ଗଭୀର ନୀଳ ସ୍ରୋତ ସୁନାରଙ୍ଗର ବାଲି ଉପରେ ବୋହି ଯାଉ ଯାଉ ସ୍ଥାନ ସ୍ଥାନ ଭଉଁରି ସୃଷ୍ଟି କରୁଛି । ସିକ୍ତ ବସନତଳୁ ଗୁରୁନିତମ୍ବ, ଘନବକ୍ଷ ଓ ଜଘନଯୁଗଳର ସୁସ୍ପଷ୍ଟ ବର୍ତ୍ତୁଳତା ଶ୍ୟାମଘନଙ୍କ ପ୍ରତ୍ୟେକ ଶିରାରେ ନିଆଁର ସ୍ରୋତ ଛୁଟାଇଦେଲା । ଯେଉଁ ଆନନ୍ଦରେ ଅଦୂରର ପଳାଶ-ବନ ଜଳୁଛି, ସେଇ ନିଆଁ ଯେପରି ତାଙ୍କର ପ୍ରତ୍ୟେକ ଶିରାରେ ଖେଳିଗଲା । ଶ୍ୟାମଘନ ଏତେ ରୂପ ଆଗରୁ କେବେ ଦେଖି ନ ଥିଲେ; କିମ୍ବା ଦେଖିଥିଲେ ମଧ୍ୟ ବୁଝିପାରିନଥିଲେ । ତାଙ୍କର ମନେହେଲା, ଶ୍ରୀରାଧା ଯମୁନାରେ ଗାଧୋଇ ଶ୍ୟାମଙ୍କୁ ଦେଖିପକାଇବା ଭୟରେ ତରତର ହୋଇ ଘରକୁ ଫେରିଯାଉଛନ୍ତି ।

ଯୁବତୀଟିର ଦେହରେ ମଧ୍ୟ ସେଇ ନିଆଁ ଲାଗିଗଲା ପରି ! ଅପାଙ୍ଗଦୃଷ୍ଟିରେ ଶ୍ୟାମଘନଙ୍କୁ ଥରେ ଚାହିଁଦେଇ ସେ ନ ଯଯୌ ନ ତସ୍ଥୌ ଅବସ୍ଥାରେ କିଛି କ୍ଷଣ ଛିଡ଼ା ହୋଇଗଲା । ଶ୍ୟାମଘନଙ୍କର ସୁନ୍ଦର ଶ୍ୟାମ ବଳିଷ୍ଠ ଦେହ, ଉଦାସ ଚାହାଣି ଦେଖି ତା'ର ମନେହେଲା ସତେ ଯେପରି ଏଙ୍କରପାଇଁ ସେ ନିଜ ଅଜାଣତରେ ଅପେକ୍ଷା କରି ବସିଥିଲା । ତା' ନହୋଇଥିଲେ ଯିଏ ବଡ଼ ହେବା ଦିନରୁ କେବେ ନଈକୁ ଗାଧୋଇ ଆସେନାହିଁ, ଆଜି ସକାଳୁ ଜିଦ୍ କରି ଗୋସିମା'ଙ୍କ ଅନୁମତି ଆଦାୟ କରି କାହିଁକି ଆସିଥାନ୍ତା ! ଏଙ୍କୁ ଦେଖିବା ମାତ୍ରକେ କାହିଁକି ଗୋସିବାପାଙ୍କ ପ୍ରିୟ ଗୀତଟି ବାରମ୍ବାର ମନେପଡ଼ନ୍ତା — 'ବଲମାରେ ତୁନରସ୍ୱା ମୈଙ୍କୁ ଲଲ ରଙ୍ଗୋ ଦେ'; କିନ୍ତୁ ମୁହଁରୁ ତା'ର ଭୟାର୍ତ୍ତ ସ୍ୱରରେ ବାହାରିଗଲା, 'ହାୟ ଅଲ୍ଲା !' ଭୟ ତାଙ୍କର ଶ୍ୟାମଘନଙ୍କୁ ନୁହେଁ, ମୁହୂର୍ତ୍ତିକ ଭିତରେ ତା ଜୀବନରେ ଯେଉଁ ଓଲଟପାଲଟ ହୋଇଗଲା—ସେଇଥିପାଇଁ ! ମନ ତାର ଏକ ଅଜଣା ଆନନ୍ଦରେ ଭରିଗଲା ସତ, କିନ୍ତୁ ଦେହ ତାଙ୍କର ଭୟରେ ଥରିଗଲା । ତାର "ହାୟ ଆଲ୍ଲା"ରେ ଆନନ୍ଦ ଥିଲା ଓ ଭୟ ମଧ୍ୟ ପ୍ରକାଶ ପାଇଲା ।

'ହାୟ ଆଲ୍ଲା' ଶୁଣି ଘନଶ୍ୟାମ ଚମକି ପଡ଼ିଲେ । ତେବେ ଏ ହେଉଚି ଅବଦୁଲ କକେଇଙ୍କ ଝିଅ ହସ୍‌ନୁବାନୁ ! ଯାହାକୁ ପିଲାବେଳେ ଏଇ କୁଶଭଦ୍ରାର ପାଣିରେ ବୁଡ଼ିଯାଉଥିବାବେଳେ ସେ ନିଜର ଜୀବନ ବିପନ୍ନ କରି ରକ୍ଷା କରିଥିଲେ ! ତେବେ କ'ଣ କୁଶଭଦ୍ରା ସତରେ ହସ୍‌ନୁକୁ ଟାଣି ନେଇ ନ ଥିଲା; ଗୋଟାଏ ଚାଲାକି କରୁଥିଲା ! ଶ୍ୟାମଘନ କୁଶଭଦ୍ରା ଆଡ଼େ ଚାହିଁଲେ ଆଖି ତରାଟି । ତାଙ୍କର ମନେହେଲା କୁଶଭଦ୍ରା ଖିଲିଖିଲି କରି ହସିଉଠିଲା । ଶ୍ୟାମଘନ ପାଣିରେ ଗୋଟାଏ ଚାପୁଡ଼ା ମାରି ମନେମନେ କହିଲେ, 'ଦୁଷ୍ଟ, ଏ କ'ଣ କଲୁ !' ଶ୍ୟାମଘନଙ୍କ ମୁହଁରେ ଆନନ୍ଦ, ଭୟ, ବିସ୍ମୟ, ହତାଶା ଏକାସାଙ୍ଗରେ ଖେଳିଗଲା । ତାଙ୍କର ମୁହଁରୁ ବାହାରିଗଲା, 'ହାୟ ରାଧାବଲ୍ଲଭ ! ଇଏ କ'ଣ କଲ ?'

ରାଧାବଲ୍ଲଭଙ୍କ ନାଁ ଶୁଣି ହସ୍‌ନୁ ଚମକିପଡ଼ିଲା । ସେ ଜାଣେ ଯେ ପଧାନବଂଶର ଲୋକେ କଥା-କଥାକେ ସେମାନଙ୍କର କୁଳଦେବତା ରାଧାବଲ୍ଲଭଙ୍କ ନାଁ ନିଅନ୍ତି । ତେବେ କ'ଣ ଏ ଶ୍ୟାମଘନ, ଯିଏ ମୋତେ ପିଲାବେଳେ ଏଇ ନଈରେ ବୁଡ଼ିଯାଉଥିବାରୁ ବଞ୍ଚାଇଥିଲେ ? ଏ କଥା ଭାବିବା ମାତ୍ରକେ ହସ୍‌ନୁର ପ୍ରତି ଅଙ୍ଗରେ ପୁଲକ ଖେଳିଗଲା; କିନ୍ତୁ ଭୟରେ ସେ ପ୍ରାୟ ଅଚେତ ହୋଇପଡ଼ିଲା । କୌଣସିମତେ ନିଜକୁ ସମ୍ଭାଳି ନେଲା; କିନ୍ତୁ ତା'ର ମୁହଁରୁ ମଧ୍ୟ ବାହାରିଗଲା, 'ହାୟ ଅଲ୍ଲା, ମୈ ଅବ୍ କ୍ୟା କରୁଁ ।'

ଦୁହେଁ ହିଁ ବୁଝିପାରିଲେ ପ୍ରେମରେ ପଡ଼ିଛନ୍ତି ଏବଂ ଏହାର ପରିଣାମ ଭାବି ଦୁହେଁ ଶଙ୍କିତ ହେଲେ । ଦୁହେଁ ଏପରି ଦୁଇ ଭିନ୍ନ ଧର୍ମର ଯେ, ଦୁଇ ଧର୍ମର ଲୋକଙ୍କ ଭିତରେ ଶହ ଶହ ବର୍ଷର ଗ୍ଲାନି, ଅବିଶ୍ୱାସ, ଶତ୍ରୁତା ଶେଷରେ ଭାରତକୁ ଖଣ୍ଡ ଖଣ୍ଡ କରିଚି । ତେବେ ବି ସେ ଶତ୍ରୁତା ଯାଇନାହିଁ । ସାମାନ୍ୟ ସାମାନ୍ୟ କାରଣରୁ ଦୁହେଁ ଦୁହିଁଙ୍କୁ ହାଣିପକାଉଛନ୍ତି,

ନାନା ବୀଭତ୍ସ କାଣ୍ଡରେ ମାତିଉଠୁଛନ୍ତି । ମାତ୍ର କିଛିଦିନ ପୂର୍ବେ ମସଜିଦ୍ ସାମନାରେ ବାଜା ବଜାଇବା ନେଇ କେତେ ହତ୍ୟାକାଣ୍ଡ ହୋଇଯାଇଛି, କେତେ ନିର୍ଦ୍ଦୋଷ ଲୋକଙ୍କ ଘର ଜଳି ପାଉଁଶ ହୋଇଯାଇଛି । ପୁଣି ଏ ସବୁ କୃଷ୍ଣପୁରର ଲୋକେ ଦୋଳପୂର୍ଣ୍ଣିମାକୁ ଅହମ୍ମଦପୁରର ମସଜିଦ୍ ସାମନାରେ ବାଜା ବଜାଇ ଗୋବର୍ଦ୍ଧନପୁର ମେଳଣକୁ ଯିବାର ଗୁପ୍ତ ମସୁଧାରେ ମାତିଲେଣି । ଏହାର ସୂଚନା ପାଇ ଅହମଦପୁରର ମୁସଲମାନମାନେ ମଧ୍ୟ ସଜବାଜ ହେଲେଣି । ଗୋବର୍ଦ୍ଧନପୁର ଓ କୃଷ୍ଣପୁର ଭିତରେ ମାଡ଼ପିଟ ଲାଗି ତିନିଶ ବର୍ଷ ହେବ ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉଙ୍କ ଗୋବର୍ଦ୍ଧନପୁର ମେଳଣକୁ ଯିବା ବନ୍ଦ ହୋଇଥିଲା । କେବଳ ସେତିକି ନୁହେଁ, ଦୁଇ ଗାଁ ଭିତରେ କଳିଗୋଳ ଏତେ ଦୂରକୁ ଯାଇଥିଲା ଯେ ଏକ ଗାଁ'ର ଲୋକ ଦୈବାତ୍ ଅନ୍ୟ ଗାଁ'ର କୌଣସି ଲୋକକୁ ନିଜ ଗାଁ ପାଖରେ ଏକୁଟିଆ ପାଇଲେ ନିଶ୍ଚୟ ମାଡ଼ ଦେଉଥିଲେ । ଏ ପର୍ଯ୍ୟନ୍ତ ବି ଦଣ୍ଡହେମଣିଜ ଫୌଜଦାରୀ ମକଦ୍ଦମା ଚାଲିଛି; କିନ୍ତୁ ଏ ସବୁ ଦୁଇ ଗାଁର ଲୋକେ ଏକାଠି ମିଳି ନିଷ୍ପତ୍ତି କରିଛନ୍ତି, ଶ୍ରୀ ଶ୍ରୀ ରାଧାବଲ୍ଲଭଜୀଉ ଗୋବର୍ଦ୍ଧନପୁର ମେଳଣକୁ ଯିବେ ଏବଂ ଅହମଦପୁର ଗାଁଭିତର ଦେଇ ଯିବେ । ବୁଢ଼ାବୁଢ଼ୀମାନେ ମଧ୍ୟ କହିଲେ, ଠାକୁରେ ଆଗରୁ ଯେପରି ଗୋବର୍ଦ୍ଧନପୁର ମେଳଣକୁ ଯାଉଥିଲେ ସେଇପରି ଯିବେ, ନିଜ ନିଜ ଭିତରେ ଭେଦଭାବ ଭୁଲିଯାଇ ଠାକୁରଙ୍କର ଗୋଟିଏ ସେବା ପୁଣି ଫେରାଇ ଆଣିବା ଉଚିତ ।

କୃଷ୍ଣପୁରର ହିନ୍ଦୁମାନଙ୍କର ଏ ବର୍ଷ ଏପରି ଭକ୍ତିଭାବ ଓ ଅଭେଦଭାବ ଫେରିଆସିବାକୁ ଦେଖି ଶ୍ରୀ ଶ୍ରୀ ରାଧାବଲ୍ଲଭଜୀଉ ଶ୍ୟାମଘନ ଓ ହସିନାକୁ ଭିତରେ ଏକ ଲୂଟ ଲଗାଇଦେଲେ ପରା ! ଦୁହେଁ ଦୁହିଁଙ୍କ ପରିଚୟ ପାଇବା ପୂର୍ବରୁ ପ୍ରେମରେ ପଡ଼ିଲେ । ଏ ପ୍ରେମ ଯେ କେବଳ କୃଷ୍ଣପୁର ଓ ଅହମଦପୁର ଭିତରେ ଜଳୁଥିବା ନିଆଁକୁ ଆହୁରି ତେଜି ନ ଦେବ, ସାରା ଭାରତରେ ନିଆଁ ଜାଳି ନ ଦେବ, କିଏ କହିପାରିବ ? ଦୁଇ ଗାଁ ଭିତରେ ଏପରି ଛକାଛକି ହୋଇ ଅଛନ୍ତି ଯେ ଏ ଗାଁରେ ଖୁଡ଼୍‌କିନା ହେଲେ, ସେ ଘରେ ତୁରନ୍ତ ତା'ର ଖବର ପହଞ୍ଚି ଯାଉଛି; ଏଥିରେ ଏ କଥା କିଅଣ ଅଛପା ରହିଯିବ !

ହସିନା ପୁଣି ଥରେ କହିଲା—ହାୟ ଆଲ୍ଲା !

ଶ୍ୟାମଘନ ମଧ୍ୟ ପୁଣି ଥରେ କହିଲେ—ରାଧାବଲ୍ଲଭ, ଏ କଅଣ କଲ !

ହସିନା ଥରି ଥରି ଦୌଡ଼ିବାକୁ ଲାଗିଲା ଘରଆଡ଼କୁ; କିନ୍ତୁ ତା'ର ମନେହେଲା ସେ ଯେପରି ଘରଆଡ଼କୁ ନ ଯାଇ ଶ୍ୟାମଘନଆଡ଼େ ଯାଉଛି । ଅସହାୟଭାବରେ ଘରଆଡ଼କୁ ଚାହିଁ ସେ ପୁଣି ଦୌଡ଼ିବାକୁ ଲାଗିଲା । ଶ୍ୟାମଘନ ପାଣିଭିତରେ ସ୍ଥାଣୁ ଭଳି ଛିଡ଼ାହୋଇ ଚାହିଁରହିଲେ ହସିନାଆଡ଼େ । ଥରେ ମାତ୍ର ସେ ପାଟିକରି ଡାକିଲେ—ହସିନା ! ଆଖିରୁ ତାଙ୍କର ଅଶ୍ରୁ ଝରି କୃଷ୍ଣଭଦ୍ରାର ସ୍ରୋତରେ ଟପ୍ ଟପ୍ ପଡ଼ିବାକୁ ଲାଗିଲା । କୃଷ୍ଣଭଦ୍ରା ଯେପରି ଖିଲିଖିଲି ହସି ସେ ଅଶ୍ରୁକୁ ବୋହିନେଇଗଲା ମହାସମୁଦ୍ରକୁ ।

ହସନୁ ଚାଲିଯିବା ପରେ ଶ୍ୟାମଘନ ଟିକିଏ ପ୍ରକୃତିସ୍ଥ ହୋଇ ଭାବିବସିଲେ ଆଗପଛ କଥା । ସେ ନିଜକୁ ନିଜେ କହିଲେ, ଏ ସବୁ ତୁଚ୍ଛା ରୋମାଣ୍ଟିସିଜମ୍ । କୃଷ୍ଣଭଦ୍ରାକୁ ଜୀବନ୍ତ ଭାବି ତା ସହିତ କଥା କହିବା, ରାଧାବଲ୍ଲଭଙ୍କ ପଥରମୂର୍ତ୍ତିକୁ ଭଗବାନ୍ ଭାବି ତାଙ୍କୁ ହିଁ ଏ ସବୁପାଇଁ ଦାୟୀ କରି ଆନନ୍ଦ ବା ବେଦନା ପାଇବା—ଏ ସବୁ ମିଥ୍ୟା, ତୁଚ୍ଛା ରୋମାଣ୍ଟିସିଜ୍‌ମ୍ ନୁହଁ ତ କଅଣ ? ଆଜିକାଲି ବିଜ୍ଞାନଯୁଗରେ ଏ ସବୁ ହାସ୍ୟାସ୍ପଦ; କାରଣ ତା'ଉପରେ ତ କାହାରି କ୍ରିୟାକଳାପ ନିର୍ଭର କରେନାହିଁ ବା କରିବା ଉଚିତ ନୁହଁ । ମୋର ବୈଜ୍ଞାନିକ ଭଳି ଭାବିବା ଉଚିତ, ଯାହାକୁ ମୁଁ ପ୍ରେମ କହୁଚି ତା' କେବଳ ଲାଳସା, ମାଂସର ଲାଳସା । ହସନ୍‌ର ଦେହ ତ ମୋତେ ଆକୃଷ୍ଟ କରିଚି ? ଏ ଲାଳଧାର ସ୍ରୋତରେ ମୋର କ'ଣ ଭାସିଯିବା ଉଚିତ ? ହସ୍‌ନୁ ମୁସଲମାନ, ମୁଁ ହିନ୍ଦୁ । ମୁଁ ଯଦି ହସ୍‌ନୁକୁ ବାହା ହୁଏ, ତେବେ ସାମାଜିକ ବିଶୃଙ୍ଖଳା କଥା ଛାଡିଦେଲେ ବି ମୋର ବିବାହିତ ଜୀବନ କଅଣ ବିଷମୟ ହୋଇଯିବ ନାହିଁ ? ତା'ର ରୀତିନୀତି, ଖାଦ୍ୟ, ଚାଲିଚଳନ ସବୁ କେବଳ ଭିନ୍ନ ନୁହେଁ, ମୋର ଠିକ୍ ଓଲଟା । ସେଥିରେ ପୁଣି ହିନ୍ଦୁ ମୁସଲମାନ କଳିଗୋଳ କଲେ ଆମ ଭିତରେ କଅଣ ପ୍ରେମ ରହିପାରିବ ? ନା, ଆଗେ ମୁଁ ନିଜକୁ ନିଜେ ବଞ୍ଚେଇବି—ଏ ଉନ୍ମାଦନା ଲାଳସାରୁ ଜାତ ନା ପ୍ରେମରୁ—ତେବେ ଯାଇ ସେଇଁ କଥା । ଜ୍ଞାନୀଲୋକମାନଙ୍କର ମନକୁ ମଧ୍ୟ ଇନ୍ଦ୍ରିୟ ଗୋଳମାଳ କରିଦିଏ । ବିପକ୍ଷରେ ତାଙ୍କର ମନ ଅନେକ ଯୁକ୍ତି ବାଢ଼ିଲା ସତ, କିନ୍ତୁ ତାଙ୍କ ମନ ତାଙ୍କୁ ଗୋଟିଏ ପ୍ରଶ୍ନ ପଚାରି ସବୁ ଯୁକ୍ତିକୁ ନୀରବ କରିଦେଲା—ତୁମେ ଯେ ଏହା ବିରୁଦ୍ଧରେ ଏତେ ଗମ୍ଭୀର ଚିନ୍ତା କରୁଚ ତାହା ହିଁ କଅଣ ସୂଚାଇ ଦେଉ ନାହିଁ କି ଏହା କେବଳ ଯୌନ ଆବେଗ ନୁହଁ, ତା ସହିତ ଆଦିମ ଓ ମୌଳିକ ବେଦନା ଓ ଆନନ୍ଦର ଦୁଆର ମଧ୍ୟ ଖୋଲିଯାଇଚି ।

ସାରା ବିଶ୍ୱରେ କୁଆଡ଼େ ଏଇ ବେଦନା-ଆନନ୍ଦ ନିଅରନ୍ତରରେ ବିସ୍ତାରି ରହିଚି । ସେଇ ଅସୀମ ବେଦନା ଯେତେବେଳେ ନାନାଭାବରେ ସସୀମ ଭିତରେ ପ୍ରକାଶ ପାଏ, ସେତେବେଳେ କୁଆଡ଼େ ନାନାପ୍ରକାରର ଘଟନା ଘଟେ । ଏହା ବୈଜ୍ଞାନିକର ଶେଷ ସିଦ୍ଧାନ୍ତ ବା ତୁଚ୍ଛା ମିଥ୍ୟା ରୋମାଣ୍ଟିସିଜମ୍ କିଏ କହିବ ! ଏ କି ଆକୁଳତା ଭୁବନେ ! ଏ କି ଚଞ୍ଚଳତା ପବନେ ପବନେ ! ଟଲ୍‌ଷ୍ଟୟ କହିବା ଭଳି ଫଳଟି ଗଛରୁ ଝଡ଼ିପଡିବାର କାରଣ ମାଧ୍ୟାକର୍ଷଣ ଶକ୍ତି ହୋଇପାରେ, ବା ଗଛ ତଳେ ଛିଡ଼ାହୋଇଥିବା ପିଲାଟି ଲୋଲୁପ ଦୃଷ୍ଟିରେ ଫଳଟିକୁ ଚାହିଁ ଫଳଟିକୁ ତଳେ ପକାଇଦେବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଥିବାରୁ ହୋଇପାରେ, ବା ଉଭୟ କାରଣରୁ ହୋଇପାରେ । କିଏ ଜାଣେ ଘଟଣାମାନ କେଉଁ କାରଣରୁ ଘଟେ ? ସେ ଯାହାହେଉ, ସେଇ ମୁହୂର୍ତ୍ତରେ ଯେଉଁ ସାମାନ୍ୟ ଘଟଣାଟି ଘଟିଗଲା, ତାହା ଚାହୁଁ ଚାହୁଁ ଏକ ବିରାଟ ପ୍ରବାହରେ ପରିଣତ ହେଲା । ଆଉ ଶ୍ୟାମଘନ ଓ ହସ୍‌ନୁ ଭାସିଗଲେ ସେ ସ୍ରୋତରେ ଏବଂ ତାଙ୍କ ସହିତ କୁଶୁପୁର ଓ ଅହମଦପୁରର ହିନ୍ଦୁ ମୁସଲମାନମାନେ ନାନା ପ୍ରକାରରେ ।

× × × ×

ଝଲଝଲ ଘର ଭିତରକୁ ପଶି ବାରଣ୍ଡାରେ କଚୁଡ଼ି ପଡ଼ିଲା ହସ୍‌ନୁ । ରହିମ୍‌ଙ୍କ ସ୍ତ୍ରୀ ଜେବୁନ୍ନିସା ଅଗଣା ଲିପୁଥିଲେ । ନାତୁଣୀକୁ ଏପରି ପଡ଼ିଯିବାର ଦେଖି ସେ ପାଟିକରି ଡାକ ଛାଡ଼ିଲେ—ଆରେ ଓ ମିଆଁ, ଆରେ ଜଲ୍‌ଦି ଆଓ ନ । ଦେଖୋ ଦେଖୋ ହସ୍‌ନୁ କ୍ୟା, ହୋ ଗିୟା । ହାୟ ମେରି ଆଲ୍ଲା । ମେଁ ମନା କରତି ଥି ନଈକୁ ଯାନେକୁ । ଆରେ କୁଶୁପୁରକା କୋଇ ହିନ୍ଦୁ ତୁମ୍‌କୁ କୁଛ୍ କହିସ୍ କ୍ୟା, କୁଛ୍ ବେଇଜ୍ଜତି କିୟା କ୍ୟା ? ଆରେ ଓ ମିଆଁ ...

ରହିମ୍ ବାଡ଼ି ବୁଜା ପକାଇଦେଇ ଦୌଡ଼ିଆସିଲେ । ହସ୍‌ନୁକୁ ଏପରି ଅବସ୍ଥାରେ ଦେଖି ସେ ଆବାକାବା ହୋଇ ଛିଡ଼ା ହୋଇରହିଲେ । ଜେବୁନ୍ନିସା ତାଙ୍କୁ ଧକ୍କାଏ ମାରି ପାଟି କରି କହିଲେ, "ଆରେ ଉଲ୍ଲୁକା ମାଫିକ୍ କ୍ୟା ଖାଡ଼ା ହୁୟା ହୈ । ଆରେ କୁଛ୍‌ଭି ତୋ କରୋ । ହାୟ ଖୁଦା, ଆରେ ଶ୍ୟାମଘନ୍ ଆୟା ହୈ ଡାକତର୍ ହୋ କେ, ଉସ୍‌କୁ ବୁଲାଓ ଜଲ୍‌ଦି..."

ସ୍ତ୍ରୀଙ୍କ କଥାରେ ରହିମ୍‌ଙ୍କ ହୋସ୍ ଫେରିଆସିଲା । ସେ ହଠାତ୍ ଚଞ୍ଚଳ ହୋଇ ମୁଣ୍ଡରେ ଗାମୁଛାଟା ବାନ୍ଧି ଦେଇ କହିଲେ, "ଅବ୍‌ଭି ଯାତା ହୁଁ, ତୁମ୍ ଉସ୍‌କ ଶିର ମେ ପାନି ଡାଲୋ ।" ରହିମ୍ ଧଇଁସଇଁ ହୋଇ ଦୌଡ଼ିଲେ କୁଶୁପୁର ଶ୍ୟାମଘନଙ୍କୁ ଓ ପଞ୍ଚାତ ଗ୍ରାମ ପଧାନଙ୍କୁ ଡାକି ଆଣିବାକୁ; କିନ୍ତୁ ତାଙ୍କୁ କୁଶୁପୁର ପର୍ଯ୍ୟନ୍ତ ଯିବାକୁ ପଡ଼ିଲା ନାହିଁ । ନଈ ମଝିରେ ଶ୍ୟାମଘନ ସେମିତି ସ୍ଥାଣୁ ଭଳି ଛିଡ଼ାହୋଇଥାନ୍ତି । ରହିମ୍ ତାଙ୍କୁ ଦେଖି ତରତର ହୋଇ ସବୁ କଥା କହି ହାତ ଧରି ଟାଣିବାକୁ ଲାଗିଲେ । ଶ୍ୟାମଘନ ସବୁ ବୁଝିପାରିଲେ ନାହିଁ, ଖାଲି ଏତିକି ବୁଝିଲେ ଯେ ହସ୍‌ନୁ ବେହୋସ୍ ହୋଇ ତଳେ ପଡ଼ିଯାଇଛି । କିଛି କ୍ଷଣ ସେ ବଲ୍‌ବଲ୍ କରି ରହିମ ଅଜା ଆଡ଼େ ଚାହିଁରହିଲେ । ମନେ ମନେ କେବଳ କହୁଥାନ୍ତି— ରାଧାବଲ୍ଲଭ, ଏ କ'ଣ କଲ ! ମୁଁ ଯେ କିଛି ବୁଝିପାରୁ ନାହିଁ, ଘଟଣାମାନଙ୍କର ଏ ଧଇଁସଇଁ ଗତିରେ ମୁଁ ଯେ କିଛି ବିଚାର କରିବାର ବେଳ ପାଉନାହିଁ !

ରହିମ୍ ଅଧୀରଭାବରେ କହିଲେ, "ଆରେ ନାତି ! ଐସା ବଲ୍‌ବଲ୍ କର୍‌କେ ତକାତା ହୈ କ୍ୟା ମ ? ଆରେ ଜଲ୍‌ଦି ଆଓ..."

ଶ୍ୟାମଘନ ବିହ୍ୱଳଭାବରେ କହିଲେ, "ଅଜା...ମୁଁ...ହସ୍‌ନୁ...ନା...ନା..."

ରହିମ୍ ଚିତ୍କାର କରି କହିଲେ, "ଆରେ ଏ କ'ଣ ସରମ ବେଳ, ହସ୍‌ନୁ ତ ତୋର ବହିନ୍ ଅଛି..."

ଶ୍ୟାମଘନ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, " ଆଚ୍ଛା ଅଜା, ତୁମେ ଯାଅ, ମୋର ଔଷଧ ବାକ୍ସ ଓ ଷ୍ଟେଥୋଟା ନେଇ ଆସିବ । ମୁଁ ଏମିତି ଓଦା ଲୁଗାରେ ଯାଉଛି..."

ରହିମ୍ ଦୌଡ଼ିଲେ ପୁଣି କୁଶୁପୁର । ଶ୍ୟାମଘନ ମଧ୍ୟ ଦୌଡ଼ି ଦୌଡ଼ି ରହିମ୍ ଘରକୁ ଯାଇ ବାହାରପଟୁ ଡାକିଲେ ।

ଜେବୁନ୍ନିସା ଘରଭିତରୁ କାନ୍ଦ କାନ୍ଦ ଡାକିଲେ, ଆରେ ଶ୍ୟାମ୍ ଆଇସ୍···ଆଓ ବେଟା, ମୁଗ୍ ମୁଗ୍ କସ୍ୱେ ବେଟା ! ଅନ୍ଦର ଆଓ···

ଶ୍ୟାମଘନ ଘର ଭିତରକୁ ଯାଇ ଦେଖିଲେ ଏକ ଅପୂର୍ବ ଦୃଶ୍ୟ । ହସ୍ନୁ ଖଣ୍ଡେ ସୁନ୍ଦର ଧଳା ଶାଢ଼ୀ ପିନ୍ଧି ମୁଣ୍ଡରେ କାଳିଆ ଜରୀର ଓଢ଼ଣି ବାନ୍ଧି ପଶ୍ଚିମକୁ ମୁହଁ କରି ଦୁଇ ହାତ ପାପୁଲି ଉପରକୁ ଟେକି ଫତିହା ପଢ଼ୁଛି—

'ଆଉ ଜୋ ବିଲ୍ଲହେ ମିନଶ୍ ଶୈତାନୀର ରଜୀମ୍

ବସ୍‌ମିଲ୍ଲାହିର୍ ରହମାନିର ରହୀମ୍···।'

ଆଖିରୁ ତା'ର ଦରଦର ଲୁହ ଝରିପଡ଼ୁଛି । ହସ୍ନୁ ସିନା କହୁଥାଏ, ମୋତେ ଶୈତାନଠାରୁ ବଞ୍ଚାଅ ଆଲ୍ଲା, ତୋରି ନା'ରେ ମୁଁ ସବୁ କାର୍ଯ୍ୟ ଆରମ୍ଭ କରୁଛି; କିନ୍ତୁ ଫତିହା ସାଙ୍ଗରେ ଗୋଟିଏ ଗୀତ ଗୋଳେଇ ମିଶି ଯାଉଥାଏ, ଅଜାଙ୍କ ପ୍ରିୟ ଗୀତ, 'ମେରେ ଅଙ୍ଗ୍‌ନା ମେ ଆସ୍ୱେ ଘନଶ୍ୟାମ, ମୈ ହୋଗଯୁଁ ବାବରି'···ମୋ ଅଗଣାକୁ ଘନଶ୍ୟାମ ଆଚମ୍ବିତେ ଆସିଲେ, ମୁଁ ପାଗଳ ହୋଇଯିବି କି ! ଶ୍ୟାମଘନଙ୍କ ଭାରି ଇଚ୍ଛା ହେଲା ଯେ ସେ ବି ସେମିତି ବସି ନମାଜ ପଢ଼ନ୍ତେ !

ରହିମ୍ ଓ ଗ୍ରାମ ପଧାନ ସେତେବେଳକୁ ପହଞ୍ଚିଯାଇଥିଲେ । ଗ୍ରାମ ଅଜାଙ୍କ ପାଟି ଶୁଣି ହସ୍‌ନୁ ଚମକିପଡ଼ି ଚାହିଁ ଦେଖିଲା ତା'ର ଅତି ନିକଟରେ ଛିଡ଼ା ହୋଇଛନ୍ତି ତା'ର ପ୍ରିୟ । ସମସ୍ତ ଦେହ ତା'ର ଥରିଉଠିଲା । ସେ ଆଉ ସମ୍ଭାଳି ନ ପାରି ଗଡ଼ିପଡ଼ିଲା ଯେଉଁଠି । ଶ୍ୟାମଘନ ଏଥର ଆଉ ଲୁହ ସମ୍ଭାଳି ପାରିଲେ ନାହିଁ ।

ଜେବୁନ୍ନିସା ପୁଣି କାନ୍ଦିଉଠିଲେ । ଗ୍ରାମ ପଧାନ ମ୍ଳାନଭାବରେ ହସି କହିଲେ, "ଭାଉଜ, ହସ୍‌ନୁର କିଛି ହୋଇନାହିଁ···"

ଜେବୁନ୍ନିସା କହିଲେ, "ନେହିଁ ଜି, ଯେ କହୁଥିଲା ଗାଧୋଇଲାବେଳେ ସେ ତା'ର ଅବ୍‌ବାକୁ ଦେଖିଲା, ଅବ୍‌ଦୁଲ୍ କୁଆଡ଼େ ତାକୁ ଡାକିଲା···"

ରହିମ୍ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ଗ୍ରାମ ପଧାନ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ସେ ସବୁ କିଛି ନୁହଁ, ଆମେ ବାହାରକୁ ଯାଉଛୁ, ତୁମେ ତାକୁ ଗରମ ଦୁଧ ପିଇବାକୁ ଦିଅ ।"

ଶ୍ୟାମଘନଙ୍କୁ ଘରକୁ ଯିବାକୁ କହି ଗ୍ରାମ ପଧାନ ରହିମ୍‌ର ହାତ ଧରି ବାହାରକୁ ଆଣି କହିଲେ, "ବୁଝିଲି କିଛି ସଙ୍ଗାତ ? ବଡ଼ ଆଶ୍ଚର୍ଯ୍ୟ···"

ରହିମ୍ ଆକୁଳଭାବରେ ପଚାରିଲେ, "ସଙ୍ଗାତ କ'ଣ ହୋଇଛି କହ, ଲୁଚାଅ ନାହିଁ । ହସ୍‌ନୁ ବଞ୍ଚିବ ତ ?"

ଗ୍ରାମ ପଧାନ ସେତେବେଳକୁ ନିଜେ ଅଧୀର ହୋଇପଡ଼ିଲେଣି ନାନା କଥା ଭାବି । ରହିମ୍‌କୁ ଗୋଟିଏ ନିଭୃତ ସ୍ଥାନକୁ ନେଇଯାଇ କହିଲେ, "ବୁଝିଲି ସଙ୍ଗାତ, ହସ୍‌ନୁ ଓ

ଶ୍ୟାମ ପ୍ରେମରେ ପଡ଼ିଛନ୍ତି । ବୁଝିଲଣି ମୁଁ ତା'ର ସବୁ ଲକ୍ଷଣ ଦେଖିବାକୁ ପାଇଲି—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ମୂର୍ଚ୍ଛା ।"

ରହିମ୍ ଆଖି ବଡ଼ ବଡ଼ କରି ଗାଲରେ ହାତଦେଇ କହିଲେ, "ତୋବା ତୋବା ! ଶାଲେ, ବଡ଼ ନଟ୍‌ଖଟ୍ କି ବାତ କହ୍ୟା ! ଅବ୍‌ଭି ଉପାୟ କଅଣ ସଙ୍ଗାତ ? ଏଙ୍କ ବାପାମାନେ ହଣାହଣି ହୋଇ ମରିଚନ୍ତି ! ଆଉ ଯେ ଦୁ ଜଣ··· ସିର୍‌ଫ୍ ଲିଙ୍ଗନ୍ ଅଳ୍ ଅନ୍‌ସେ ଅଲୈହିମ···ଖୁଦା, ତୁହି ତ ଶେଷ ବିଗ୍ରହ କରିବୁ, ତୁହି ବାଟ ଦେଖା ।"

ଗ୍ରାମ ପଧାନ ରହିମ୍‌ଙ୍କ କାନ୍ଧରେ ହାତ ରଖି କହିଲେ, "ହଁ ସଙ୍ଗାତ, ତାଙ୍କ ଛଡ଼ା ଆଉ କିଏ ଅଛି ? ତାଙ୍କର କି ଉଦ୍ଦେଶ୍ୟ ଅଛି ଏଥିରେ କିଏ ଜାଣେ···ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା···ସବୁ ତାଙ୍କର ଲୀଳା ।"

ଦୁହେଁ ନୀରବରେ ତଳକୁ ମୁଣ୍ଡ ପୋତି ଧୀରେ ଧୀରେ ଚାଲିଗଲେ । କେଉଁଠିସି ପାଣି ଆଣି ହସ୍‌ନୁର ମୁହଁରେ ଛିଟିବାକୁ ଲାଗିଲେ । ହସ୍‌ନୁ ଧୀରେ ଧୀରେ ଆଖି ଖୋଲି କାହାକୁ ଯେପରି ଅସହାୟଭାବରେ ଖୋଜିଲା । ତା' ପରେ ହଠାତ୍ ତା'ର ଗୋସିମା'କୁ ଜାବୁଡ଼ି ଧରି କହିଁ କହିଁ ହୋଇ କାନ୍ଦି କହିଲା, "ଅମ୍ମିଜାନ୍, ମୈ ମର ଗୟି ।" ତା'ପରେ ହଠାତ୍ ଗମ୍ଭୀର ହୋଇ କହିଲା, "ନେହିଁ ମା, ମେରା କୁଛ୍ ହୁଆ ନେହିଁ । ଆଲ୍ଲା ସବ୍ ଠିକ୍ କର୍ ଦେଙ୍ଗେ ।" ପ୍ରକୃତିସ୍ଥ ହୋଇ ପୁଣି ସେ ଫତିହା ପଢ଼ିବାକୁ ଲାଗିଲା—

ଆଲ ହମ୍‌ଦୁ ଲିଲ୍ଲାହେ ରବ୍‌ବିଲ୍ ଆଲମୀନ୍···

ଆର୍ ରହ୍‌ମାନିର୍ ରହିମ୍‌ମାଲ୍‌କେ ୟୌମିଦ ଦୀନ୍···

ହେ ଆଲ୍ଲା, ତୁ ଦୟାର ସାଗର, ମୁଁ ତୋର ଆରାଧନା କରୁଚି, ତୋର ସାହାଯ୍ୟ ମାଗୁଚି···

ଶ୍ୟାମଘନ ଗାଁକୁ ଫେରି ଘରକୁ ନ ଯାଇ ସେମିତି ଓଦା ଲୁଗାରେ ସିଧା ରାଧାବଲ୍ଲଭଙ୍କ ମନ୍ଦିରକୁ ଗଲେ । ସେତେବେଳେ ରାଧାବଲ୍ଲଭ ହୋରି ଖେଳିବାକୁ ବିଜେ କଲେଣି । ହୋଲିଆମାନେ ଗାଉଥାନ୍ତି—

ନବ ବୃନ୍ଦାବନେ ନବ ନାଗର ତ୍ରିଭଙ୍ଗ
ହୋଲନ୍ତି ସଖିଙ୍କ ଅଙ୍ଗେ ପୀରତିର ରଙ୍ଗ ।

ଶ୍ୟାମଘନ ନାସ୍ତିକ; କିନ୍ତୁ ଆଜି ସେ ସିଧାସଳଖ ରାଧାବଲ୍ଲଭଙ୍କ ମୁହଁକୁ ଚାହିଁ ପଚାରିଲେ···ଏ ସବୁ କଅଣ ହଉଚି ଶୁଣେ ? କି କୈଫିୟତ୍ ଅଛି ତୁମର ? ମୁଁ କଅଣ ତେବେ ମୁସଲମାନ ହେବି ? ତାଙ୍କର ମନେହେଲା ରାଧାବଲ୍ଲଭ ଟିକିଏ ହସିଦେଲେ; ଆଉ କି ସୁନ୍ଦର ସେ ହସ—ସବୁ ଧର୍ମ, ଜାତି, ନୀତି, ମାନ, ଅଭିମାନ, ଅହଂକାର ଯେପରି ତୁଚ୍ଛ ମନେହେଲା ସେ ହସ ଟିକକ ନିକଟରେ !

× × × ×

ସେଇ ଘନ ଅନ୍ଧକାରରେ କୁଶଭଦ୍ରାର ଏ ପାଖ ଅଡ଼ା ଉପରେ ଗ୍ରାମ ପଧାନଙ୍କ ଘର ପାଖରେ ଗୋଟିଏ ଦୀପ ଜଳିଲା । କିଛି କ୍ଷଣ ପରେ ସେ ଅଡ଼ା ଉପରେ ରହିମ୍‌ର ଘର ପାଖରେ ଆଉ ଗୋଟିଏ ଦୀପ ଜଳିଲା । ଶ୍ୟାମଘନଙ୍କ ସମସ୍ତ ଦେହ ରୋମାଞ୍ଚିତ ହୋଇ-ଉଠିଲା । ସେ ବିଶ୍ୱାସ କରିପାରିଲେ ନାହିଁ ଏ ପ୍ରହେଳିକା ନା ସତ୍ୟ । ସେ ବାଲୁକାଶଯ୍ୟାରେ ଦୀପ ଜାଳିଥିଲେ ଏଇ କ୍ଷୀଣ ଆଶାରେ ଯେ ହୁଏତ ଯଦି ତା'ର ଘର ବାହାରକୁ ଆସିଥାଏ, ବା ଝରକା ପାଖରେ ନଈ ଏ ପଟକୁ ଚାହିଁ ଶୋଇଥାଏ, ତେବେ ଦୀପକୁ ଦେଖି ହୁଏତ ଭାବିବ ସେ ସଙ୍କେତ ଦେଉଛନ୍ତି । କିନ୍ତୁ ଏ ଯେ ଅଭାବନୀୟ ଘଟିଗଲା । ଶ୍ୟାମଘନ ଆରତି କରିବା ଭଳି ଦୀପଟିକୁ ହଲାଇଲେ । ସେ ପାଖରେ ଦୀପଟି ମଧ୍ୟ ସେମିତି ହଲିଲା ।

ଶ୍ୟାମଘନଙ୍କର ଶ୍ୱାସରୁଦ୍ଧ ହୋଇଗଲା । ସେ ଦୀପ ଫୋପାଡ଼ିଦେଇ ଦୌଡ଼ିଲେ ଆର ପଟକୁ । ଦୌଡ଼ୁ ଦୌଡ଼ୁ ସେ ଭାବୁଥାନ୍ତି, କି ଆଶ୍ଚର୍ଯ୍ୟ ! ପୃଥିବୀ ତା'ର ସମୁଦ୍ର, ଘରବାଡ଼ି, ନଈନାଳ, ଗଛବୃଛ ନେଇ ମହାଶୂନ୍ୟରେ ବୁଲୁଚାଲିଚି । ସେ ଏକ ଘଟନା ଏବଂ ସେ ଆଉ ଏକ ଘଟନାର ସାମାନ୍ୟ ଅଂଶ ମାତ୍ର । ପୁଣି ସେ ଘଟନା ଭିତରେ ଘଟିଯାଉଚି ସମସ୍ତ ମାନବସମାଜ କ୍ଷେତ୍ରରେ କେତେ ଘଟନା । ତା'ଭିତରେ ଘଟୁଚି ବିଭିନ୍ନ ସାମାଜିକ ଘଟନା, ଆଉ ତା'ଭିତରେ ପୁଣି ଅସଂଖ୍ୟ ବ୍ୟକ୍ତିଗତ ଘଟନା । ସମସ୍ତ ବିଶ୍ୱରେ ଯେଉଁ ଘଟନାମାନ ଘଟିଚି ବା ଘଟୁଚି ତା ସହିତ ମୋର ଏଇ ଘଟନାର କୌଣସି ସମ୍ବନ୍ଧ ନାହିଁ ? ହୁଏତ ଏଇ ମୁହୂର୍ତ୍ତିରେ କେଉଁଠି ଯୁଦ୍ଧ ଲାଗିଚି କିମ୍ବା କେଉଁଠି ହିନ୍ଦୁ ମୁସଲମାନ ଦଙ୍ଗା ଲାଗିଚି, ତା' ସହିତ କଅଣ ଏହାର କୌଣସି ସମ୍ପର୍କ ନାହିଁ ?

କୁଶଭଦ୍ରାର କ୍ଷୀଣ ସ୍ରୋତ ପାର ହୋଇ କିନ୍ତୁ ଶ୍ୟାମଘନ ଫେରିଯିବାକୁ ଭାବିଲେ । ତାଙ୍କର ମନେହେଲା ସେ ଅତି ଦୁର୍ବଳ, ଘଟନାସ୍ରୋତରେ ଭାସିଯାଉଛନ୍ତି ଅସହାୟଭାବରେ ନିଜର ସମାଜ, ଧର୍ମ ପ୍ରତି ନ ଚାହିଁ !

···ଯାଓ ବେଟା ଯାଓ ଇସ୍‌କୁ ଦିଲ୍‌କା କମ୍‌ଜୋର ମତ୍ ସମ୍‌ଝୋ; ଉଧର ଶ୍ରୀରାଧା ତଡ଼ପ୍ ରହିହୈ···

ଶ୍ୟାମଘନ ଚମକି ପଡ଼ିଲେ । ଅତି ନିକଟରେ ଗୋଟିଏ ବୁଢ଼ା ଫକୀର ଶୋଇଥିବାର ସେ ଦେଖି ପାରି ନଥିଲେ । ଫକୀରଟି ଉଠି ବସି ଗାଇବାକୁ ଲାଗିଲା···

'କ୍ୟା କରୁ ସଜନି ନ ଆୟେ ଶ୍ୟାମ,

ତଡ଼ପିତ ବିତେ ମୋରି ଦିନ୍‌ରୈନ୍ ରାଧାସ୍ୱା···'

ଯାଓ ଯାଓ···ମୈ ସବ୍ ଦେଖା, ସବ୍ ସମଝ୍ ଲିୟା···ବେଟା, ସମାଜ୍ ଧରମ୍ ସବ୍ ଝୁଟା ···

ଶ୍ୟାମଘନ ସ୍ତମ୍ଭିତ ହୋଇ ରହିଲେ । କୁଆଡ଼ୁ କୁଆଡ଼ୁ ଘଟନାମାନ' କ୍ଷିପ୍ରଗତିରେ ଆସି ମିଳିଯାଉଛନ୍ତି କୁହୁକ ପରି ! ସେ କିଛି କୂଳକିନାରା ପାଇଲେ ନାହିଁ । କିଛି ନ କହି

ସେ ପୁଣି ବୋଉଡ଼ିଲେ । କୁଶଭଦ୍ରାର ସେ ପଟରେ ପହଞ୍ଚିବା ବେଳକୁ ହସ୍‌ନୁ ଅତଡ଼ ତଳକୁ ଓହ୍ଲାଉଥାଏ । ଶ୍ୟାମଘନ ଆଶ୍ଚର୍ଯ୍ୟ ହୋଇ ହସ୍‌ନୁର ହାତ ଧରି ପକାଇ କହିଲେ—ହସନୁ, ମୋତେ ପ୍ରଥମେ କହ ତୁମେ କେମିତି ଜାଣିଲ ମୁଁ ଘାପ ଜାଳିବ ବୋଲି ···

ହସ୍‌ନୁ ମୁଣ୍ଡ ପୋତି କହିଲା—ମୋର କାହିଁକି କେଜାଣି ମନେହେଲା ତୁମେ ନିଶ୍ଚୟ ଆଜି ଘାଟରେ ଆସିବ । କିଏ ଯେମିତି କହିଦେଲା ଏ କଥା । ମୁଁ ଆମ ଝରକାବାଟେ ଅନାଇଥିଲି ତୁମ ଘର ଆଡ଼େ ଏଥିପାଇଁ···ଦେଖିଲି···ବୁଝିପାରିଲି···

—ଆଶ୍ଚର୍ଯ୍ୟ ! ମୁଁ କିଛି ବୁଝିପାରୁନାହିଁ ହସ୍‌ନୁ ! କ'ଣ ସବୁ କାହିଁକି ଘଟୁଚି···

—ତୁମ ଅଜା ଦିନେ ମୋ ଅଜାକୁ ଆମ ଘରେ କହୁଥିଲେ, ସାଧାରଣ ମଣିଷ ତା'ର ଇନ୍ଦ୍ରିୟ ଉପରେ ନିର୍ଭର କରି ବରଷ ପରେ ବରଷ, ଜୀବନ ପରେ ଜୀବନ ନାନା ଅବସ୍ଥାରେ ପଡ଼ି ଅନେକ ମାଡ଼ ଖାଇ ଯେଉଁ ଜ୍ଞାନ ପାଏ, ପ୍ରେମ ହେଲେ ମଣିଷ ମୁହୂର୍ତ୍ତିକେ ସେ ଜ୍ଞାନ ପାଇଯାଏ, ତାକୁ ଆଉ ଏତେ ଘଟଣା-ଜାଲରେ ଛନ୍ଦି ହେବାର ଦରକାର ପଡ଼େ ନାହିଁ; ଶହ ଶହ ଘଟଣା ଗୋଟିଏ ସାମାନ୍ୟ ଘଟଣାରେ ଘଟିଯାଏ । ମୁଁ ସେ କଥା ଖାଲି ଶୁଣିଥିଲି ସିନା, ତୁମ ପ୍ରେମରେ ପଡ଼ି ସବୁ ବୁଝିପାରୁଛି ଏଇକ୍ଷଣି । ଆମେ ଦୁହେଁ ଯଦି ଦୁହିଁଙ୍କ ଦେହକୁ ଖାଲି ଚାହୁଁଥାନ୍ତେ ତେବେ କେତେ ଚକ୍ରାନ୍ତ କରିବାକୁ ପଡ଼ିଥାନ୍ତା ମିଳିବା ପାଇଁ···କିନ୍ତୁ ଦେଖ, କେହି କାହା ସହିତ କଥା ନକହି ବି କେମିତି ଜାଣିପାରିଲୁଁ···

—କିନ୍ତୁ ଏ କଅଣ ହେଲା ହସ୍‌ନୁ ? ଏ ପ୍ରେମ ଯେ ଦୁହିଁଙ୍କୁ ଜାଳି ପୋଡ଼ି ଦେବ··· ଖାଲି ଆମକୁ ନୁହେଁ, ଏ ଦୁଇ ଗାଁକୁ ବି ! ସାରା ଭାରତରେ ଯେ ଏ ନିଆଁ ଜାଳି ନ ଦେବ ବର୍ତ୍ତମାନ ଅବସ୍ଥାରେ କିଏ କହିବ ···

—ତୁମେ ଯଦି ମୋର ଦେହକୁ ଭଲପାଉଥାଅ ତେବେ ଏ କଥା ଏଠିକରେ ଥାଉ···

—ଦେହର ଲାଳସା ଯେ ମୋର ନାହିଁ, ସେ କଥା ତ ମୁଁ କହିପାରୁନାହିଁ ।

—ଥିଲେ ବା କ୍ଷତି କଅଣ ! ଗଙ୍ଗା ନଈରେ ତ କେତେ ମଇଳା ପାଣି ପଡ଼େ, ସେ ସବୁ ତ ପବିତ୍ର ହୋଇଯାଏ । ଦେହ ତ ଖାଲି ଏକମାତ୍ର ସତ ନୁହେଁ । ଆହୁରି ତା ତଳକୁ ତଳକୁ ଅନେକ ସତ ଅଛି । ତା' ନ ହେଲେ ପିଲାବେଳେ କାହିଁକି ତୁମେ ମୋତେ ବଞ୍ଚାଇଥାନ୍ତ···କାହିଁକି ତୁମକୁ ଦେଖିବା ମାତ୍ରେ···

—କେଜାଣି । ଯେଉଁ କଥା ଜାଣିହେବ ନାହିଁ, ତାହା ବିଷୟରେ ଯାହା କହିଲେ ବି ସତ୍ୟ ହେବ, ଆଉ ପ୍ରମାଣ ବି ଯୁଟିଯିବ···

—ଏ ସବୁ ବୁଦ୍ଧିର କଥା । ବୁଦ୍ଧିରେ କ'ଣ ସବୁ ବୁଝି ହୁଏ ? ଅନ୍ୟକୁ ବୁଝିବାପାଇଁ ମନ ଭିତରେ ଯଦି ଉହ୍ଲାଳିବାକଳା ନ ହେବ ତେବେ ଖାଲି ବୁଦ୍ଧିରେ ସବୁ ବୁଝି ହେବନାହିଁ ବୋଧ ହୁଏ ।

—କିନ୍ତୁ ହସନୁ, ଏହା ପରେ ଆମର ବାହା ହେବା ଉଚିତ । ଆଉ ବାହା ପରେ ଯଦି ପଦେ ପଦେ ଅମେଳ ହୁଏ ?

—କାହିଁକି ?

—ପାକିସ୍ତାନ ହେବା ପରେ ହିନ୍ଦୁ ମୁସଲମାନ ଭିତରେ ଅବିଶ୍ୱାସ ବଢ଼ିଯାଇଛି । ସାମାନ୍ୟ ସାମାନ୍ୟ କଥାରେ ହଣାହଣି ହେଉଛନ୍ତି । ଏ ଅବସ୍ଥାରେ ଆମେ କଅଣ ସମ୍ପୂର୍ଣ୍ଣ ଭଲପାଇପାରିବା ? ତୁମ ମନ ତ ନିଶ୍ଚୟ ମୁସଲମାନ ଆଡ଼େ ଟାଣିବ, ଆଉ ମୋ ମନ ହିନ୍ଦୁ ଆଡ଼େ । ତା ଛଡ଼ା···

ହସ୍‌ନୁ ଅଧୀରଭାବରେ ବାଧା ଦେଇ କହିଲା, "କାହିଁକି ? ଆମର ଦୁହିଁଙ୍କ ମନ କାହିଁକି ନ୍ୟାୟ ଆଡ଼େ ନ ଯିବ ? ମସଜିଦ୍ ସାମନାରେ ବାଜା ନ ବଜାଇବା କୋରାନ୍ ସରିଫ୍‌ରେ ନାହିଁ । କେଉଁଥି ପାଇଁ ଆମ ଏ ଦେଶରେ ଏ କଥା ଅଛି ସମସ୍ତେ ଜାଣନ୍ତି । ତେଣୁ ଅଇନ ଯଦି କହିଲା, ଆଉ ମନ ଯଦି କହିଲା ରାସ୍ତାରେ ବାଜା ବଜାଇ ଯିବାରେ ସମସ୍ତଙ୍କର ଅଧିକାର ଅଛି, ତେବେ ମୁଁ ମୁସଲମାନ ବୋଲି ତାକୁ ନ ମାନିବି କାହିଁକି ? ଆଉ ହିନ୍ଦୁମାନେ ଯଦି ମୁସଲମାନମାନଙ୍କୁ ଅପମାନ ଦେବାପାଇଁ ମସ୍‌ଜିଦ୍ ସାମନାରେ ବେଶି କରି ବାଜା ବଜାନ୍ତି ତେବେ ତୁମେ ହିନ୍ଦୁ ବୋଲି ତାଙ୍କୁ ମନା ନ କରିବ କାହିଁକି ?"

ଶ୍ୟାମଘନ ଅବାକ୍ ଭାବରେ ଚାହିଁରହିଲେ ହସ୍‌ନୁ ଆଡ଼େ । ହସ୍‌ନୁ କହିଲା—ତୁମେ ଭାବୁଚ ନିଶ୍ଚେ ମୁଁ ମୂର୍ଖ, ଏତେ କଥା ଜାଣିଲି କିପରି ।

—ହିଁ, ପୁଣି ତୁମେ ମୋ ମନ କଥା କହି ଆହୁରି ଆଶ୍ଚର୍ଯ୍ୟ କରିଦେଲ ।

—ଏ ସବୁ ତ ମୁଁ ଅବାମାନଙ୍କ ପାଖରୁ ଶୁଣିଚି । ସେମାନେ ଯେତେବେଳେ ଆମ ଘରେ ଶାସ୍ତ୍ର ଚର୍ଚ୍ଚା କରନ୍ତି, ମୁଁ ମନଦେଇ ସବୁ ଶୁଣେ । ସେଥିରୁ କିଛି ବୁଝିଁ ଥିଲି, ଅନେକ ବୁଝି ପାରି ନ ଥିଲି । ଆଜି କିନ୍ତୁ ବୁଝିପାରୁଚି ସବୁ । ବୁଝିପାରୁଚି ସବୁ ଧର୍ମ ଏକ, ମଣିଷ ମଣିଷ ମଧ୍ୟରେ ଭେଦ ଆମର ଭୟରୁ ବାହାରିଚି; ତେବେ ବି ପ୍ରେମର ସବୁବେଳେ ଜୟ ହୋଇଚି । ଆଜି ତ ମୁଁ ଶ୍ରୀକୃଷ୍ଣଙ୍କ ଅନ୍ତର ଭିତରେ ବୁଝିପାରୁଚି—କି ପ୍ରେମିକ ସେ ! ତାଙ୍କୁ ତ ମୁଁ ଆଜିପର୍ଯ୍ୟନ୍ତ ବୁଝି ପାରି ନ ଥିଲି···

—ହିଁ ହସ୍‌ନୁ, ଆଜି ମୁଁ ବି ବୁଝିପାରୁଚି ଆଲ୍ଲା ବି ମୋର ! ସତେ ହସ୍‌ନୁ, ଏ ପୃଥିବୀର ଇତିହାସ ଘୃଣା ଓ ଭୟରୁ ଜାତ ହତ୍ୟାର ଇତିହାସ ନୁହେଁ, ପ୍ରେମରୁ ଜାତ ଐକ୍ୟର ଇତିହାସ । ମୁକ୍ତଖୋରମାନେ ମଣିଷକୁ ଗଢ଼ିନାହାନ୍ତି; ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, କୋଗଅକ୍ଷି ଭଳି ପ୍ରେମିକମାନେ ଗଢ଼ିଚନ୍ତି । ଏକଥା ବର୍ତ୍ତମାନ ଅବସ୍ଥାରେ ମୋତେ ବେଶ୍ ପରିଷ୍କାର ଜଣାପଡ଼ୁଚି ଖାଲି ନୁହିଁ, ବୁଝିପାରି ମନରେ ଆବେଗ ଦେଉଚି; କିନ୍ତୁ ମନର ଏ ଅବସ୍ଥା ତ ରହିବ ନାହିଁ, ନାନା ବିଭେଦକାରୀ ଯୁକ୍ତି ସେ ଅବସ୍ଥାରୁ ମନକୁ ତଳକୁ ଖସାଇଦେବ—ଅହଂକାର, ହିଂସା ଇତ୍ୟାଦି । ମନେକରିଯିବ ମୁସଲ୍‌ମାନମାନେ

ଆମର ଜଗନ୍ନାଥଙ୍କୁ ଚମଦଉଡ଼ରେ ବାନ୍ଧ ବଡ଼ ଦାଣ୍ଡରେ ଘୋଷାଡ଼ି ଥିଲେ ଉଦେ… ସେତେବେଳେ ?

—ଜଗନ୍ନାଥଙ୍କୁ ଖାଲି ତୁମର ବୋଲି କାହିଁକି କହୁଚ କି ? ସେସବୁ ଯିଏ କରେ ସେ ଅସଭ୍ୟ, ସେ ହିନ୍ଦୁ ହେଉ ବା ମୁସଲମାନ ହେଉ । ହିନ୍ଦୁମାନଙ୍କ ଭିତରେ ସାହି ସାହି କଳି ଲାଗି ସେତେବେଳେ ଦୁର୍ଗାଙ୍କ ମୁଣ୍ଡ ଭାଙ୍ଗି ତଳେ ପକାଇ ଦିଅନ୍ତି, ସେ ବି ସେଇ ଅସଭ୍ୟତା । ଯେଉଁମାନେ ଏପରି କରନ୍ତି ବା କରିଥିଲେ ସେମାନେ ଯା'ନ୍ତି, ଗଲେଣି; କିନ୍ତୁ ଜଗନ୍ନାଥଙ୍କ ପ୍ରତି ଭକ୍ତି ଯେମିତି ରହିଚି—ମଣିଷ ସେଥିରୁ ଟଳିନାହିଁ ।

—ପ୍ରେମ ସବୁଠୁ ମହାନ୍ । ମୋର ଏଇକ୍ଷଣି ମନେହେଉଚି ଦୁନିଆରେ ସମସ୍ତେ ଭଲ । ସମସ୍ତଙ୍କ ପାଦତଳେ ପଡ଼ିଯିବାକୁ ଇଚ୍ଛା ହେଉଚି । ଆମର ଯଦି ଭୟ ବା ହିଂସା ନଥାନ୍ତା, ତେବେ ଏ ନାନାପ୍ରକାର ବଭିନ୍ନତା ମଣିଷ ଭିତରେ ଦେଖି ଖୁସି ଲାଗନ୍ତା !!

—ସମସ୍ତେ ଭଲ ତ ! ସବା ମୂଳ କଥାଟି ଯଦି ଭଲ ନ ଥାନ୍ତା, ତେବେ ତ ମଣିଷ କେବେଠୁଁ ନାଶ ପାଇସାରନ୍ତାଣି ।

—କିନ୍ତୁ ତୁମେ ଜାଣିଛ ହସନୁ, ପଅରଦିନ ଫଗୁଣ ପୂର୍ଣ୍ଣିମାରେ ଆମ ଦୁଇ ଗାଁର ହିନ୍ଦୁ ମୁସଲମାନ ଭିତରେ ଗୋଳମାଳ ଲଗାଇବାର ସବୁ ବନ୍ଦୋବସ୍ତ ହେଉଚି…

—ହଉ, ତାକୁ ବନ୍ଦ କରିବାକୁ ଆମେ ଜୀବନ ଦେବା । ଆମେ ଦୁହେଁ ହାତ ଧରାଧରି ହୋଇ ତାଙ୍କ ମଝିରେ ଛିଡ଼ାହେବା…

—ମୁଁ ପାରିବ ନିଶ୍ଚୟ ।

—ନିଶ୍ଚେ ପାରିବ । ତୁମେ ଯଦି ନ ପାର, ମୁଁ ତୁମକୁ ସାହସ ଦେବି । ଆଉ ମୁଁ ନପାରିଲେ ତୁମେ ।

—ହସନୁ, ତୁମେ ଏତେ ଜ୍ଞାନକଥା ଜାଣିଲ କିପରି ?

—କହିଲି ପରା …

ହଠାତ୍ ବେଣାବୁଦା ପଛପଟୁ ଶୁଭିଲା—ପ୍ରେମରେ, ବାବା ପ୍ରେମରେ…

ଶ୍ୟାମଘନ ଓ ହସନୁ ଚମକି ପଡ଼ି ଦୌଡ଼ି ପଳାଇ ଯାଉଥିଲେ । ବେଣାବୁଦା ପଛପଟୁ ଗ୍ରାମ ପଧାନ ଓ ରହିମ୍ ସେମାନଙ୍କ ହାତ ଧରି ଅଟକାଇ ହସି ହସି କହିଲେ, ଭାବିଥିଲ ଆମେ କିଛି ଜାଣୁନା…

ଗ୍ରାମ ପଧାନ ଶ୍ୟାମଘନ ଆଡ଼େ ଚାହିଁ କହିଲେ, ହସନୁ ଏତେ ସବୁ ଜାଣିଲା ତୋ ପ୍ରେମରେ ପଡ଼ି । ଘୋର ଜଙ୍ଗଲରେ ଗୋଟିଏ ଗଜ ଥିଲା । ସେ ମୁନିମାନଙ୍କ ଘରଦ୍ୱାର ଭାଙ୍ଗି ପକାଇ ସେମାନଙ୍କୁ ଖାଲି ହଇରାଣ କରୁଥିଲା; କିନ୍ତୁ ମୁନିମାନେ ଭଗବାନଙ୍କ ବିଷୟରେ ଯାହା ସବୁ ଚର୍ଚ୍ଚା କରୁଥିଲେ, ସେସବୁ ତା କାନରେ ପଡ଼ୁଥିଲା । ଦିନେ ଗୋଟିଏ କୁମ୍ଭୀର

ଚଲାଖି କରି ଗଜକୁ·ପାଣିଭିତରକୁ ଟାଣି ନେଇଗଲା ଖାଇବ ବୋଲି । ·ଆତଙ୍କରେ ପଡ଼ି ତା'ର—

ଶରୀରେ ଜ୍ଞାନ ଉପୁଜିଲା,
ପୂର୍ବର ହେତୁ ସୁମରିଲା ।
ଗଜ ଯେ ବିସ୍ମରଇ ମନେ,
ଯେ କାଳେ ଥିଲି ଘୋର ବନେ ।
ମୁହିଁ ମାରଇ ବୋଲି କରି,
ରୁଣ୍ଡ ହୁଅନ୍ତି ତପସ୍ବୀ ।
ମୁନି ହୁଅନ୍ତି କୁହାକୁହି,
ଆତଙ୍କକାଳେ ଭବଗ୍ରାହୀ ।

ଆତଙ୍କରେ ପଡ଼ିବାରୁ ତା'ର ଶୁଣା କଥାସବୁ ଜ୍ଞାନ ପାଲଟିଗଲା । ଆତଙ୍କରେ ଓ ପ୍ରେମରେ ପଡ଼ିଲେ କୁଳକୁଣ୍ଡଳିନୀ ଜାଗେ । ମଣିପୁର ବୁଦ୍ଧି ଖୋଲିଯାଏ ।

ରହିମ୍ କହିଲା—ସଙ୍ଗାତ ଆମେ ଯେଉଁସବୁ କଥା କହୁଁ ଏମାନେ ତାକୁ କାମରେ କରିସ୍ । ଏ ଶାଳେ ଲୋକ୍‌କୁ ଫଗୁଣ ପୁନେଇକୁ ସାଢ଼ି କରିଦେବେ, ରାଜା ?

ଗ୍ରାମ ପଧାନ ରହିମ୍‌ର ହାତଧରି କହିଲେ—ରାଜା । ତ'ପରେ କୁରୁକ୍ଷେତ୍ରପାଇଁ ଆମେ ପ୍ରସ୍ତୁତ ହୋଇଯିବା । ଆଲ୍ଲା ଓ ରାଧାବଲ୍ଲଭ ଏଙ୍କର ମଙ୍ଗଳ କରନ୍ତୁ ।

ଶ୍ୟାମଘନ ଓ ହରିନୁ କାନ୍ଧପକାଇଲେ ।

□ □□

## ସ୍ମୃତି ରତ୍ନାକର

ମାଘ ମାସ ଶୀତଦିନ ସକାଳ । ଆଜି ରବିବାର । ଛଅଟି ଦିନ ଅଫିସ୍‌ରେ ହାଡ଼ଭଙ୍ଗା ଖଟଣୀ ପରେ ଆଜି ଟିକିଏ ବିଶ୍ରାମ । ଉତ୍ତରୀ ପବନ ଆଜି ସକାଳୁ ଯେପରି ହିମାଳୟ ବରଫ ପରିବେଷଣ କରୁଛି ।

ବାମନ ବାବୁଙ୍କ ବୈଠକଖାନା ଘର କାନ୍ଥ ପବନକୁ ହାର ମନାଇଛି । ବାମନ ବାବୁ ନିତ୍ୟକର୍ମ ସାରି ଅଳସଭାବରେ ଗଦି ଚୌକିରେ ବସି କଫି ପାନକରିବାକୁ ଲାଗିଲେ । ପିଆଲାରୁ ଚୁମୁକେ କଫି ପିଇ ସେ ଦାମିକା ଚୁରୁଟ୍‌ରେ ଅଗ୍ନି ସଂଯୋଗ କଲେ । କଲେ ଧୂଆଁ

ଟାଣି ମୁହଁ ଗୋଲକିଆ କରି କେତେଗୁଡ଼ିଏ ଧୂଆଁର କୁଣ୍ଡଳୀ ଉପରକୁ ଛାଡ଼ିଦେଇ ସେମାନଙ୍କୁ ଚାହିଁରହିଲେ । ଘରର ଦ୍ୱାର କବାଟ ସବୁ ବନ୍ଦ ଥିଲେ ହେଁ ବଲ୍ବ ଆଲୁଅରେ କୁଣ୍ଡଳୀ-ଗୁଡ଼ିକର ଗତି ସ୍ପଷ୍ଟ ଦିଶୁଛି । କୁଣ୍ଡଳୀଗୁଡ଼ିକ ତାଙ୍କ ପାଟିରୁ ଗୋଟିଏ ସ୍ରୋତରେ ବାହାରିଗଲେ ଏବଂ ହଠାତ୍ କଛି ଉପରକୁ ଉଠି ମନ ଆନନ୍ଦରେ ଯେପରି ପିଲାଙ୍କ ଭଳି ଖେଳିବାକୁ ଲଗିଲେ । କେତେବେଳେ ଓଲଟି, କେତେବେଳେ ଉପରକୁ ଉଠି, କେତେବେଳେ ବା ଖସି କୁଣ୍ଡଳୀଗୁଡ଼ିକ ଯେପରି ନବଜନ୍ମ ଉପଭୋଗ କରିବାକୁ ଲଗିଲେ । ହଠାତ୍ କୁଣ୍ଡଳୀଜଗତରେ ଗୋଟାଏ ବିଶୃଙ୍ଖଳା ସୃଷ୍ଟି ହେଲା । କୁଣ୍ଡଳୀଗୁଡ଼ିକ ଯେପରି ଭୟରେ ଏଣେତେଣେ ଧାଇଁବାକୁ ଲଗିଲେ । ତା'ପରେ ହଠାତ୍ ସେଗୁଡ଼ିକ ଫାଟିଗଲେ ଏବଂ ଘର ପାତଳା ଧୂଆଁରେ ପୂର୍ଣ୍ଣ ହୋଇଗଲା ।

ବାମନ ବାବୁଙ୍କର ହଠାତ୍ ଖିଆଲ ହେଲା, ତାଙ୍କର ଯୌବନ ଯାଇ ପ୍ରୌଢ଼ତ୍ୱ ଆସିଲଣି । ଇସ୍...ଦେଖୁ ଦେଖୁ ଜୀବନର ପଇଁଚାଳିଶ ବର୍ଷ ଚାଲିଗଲଣି । ଆଉ ବେଶି ଜୋର୍ ପନ୍ଦର କି କୋଡ଼ିଏ ବର୍ଷ । ମୋଟେ ଆଉ ପନ୍ଦର ବର୍ଷ । ବାମନବାବୁ ଆତଙ୍କିତ ହୋଇ ଭାବିବାକୁ ଲଗିଲେ...ମୋ ପରେ ଏଇ ସୁନ୍ଦର ଦୁନିଆରେ କେତେ ନୂଆ ନୂଆ ଘଟଣା ଘଟିବ, କେତେ ଆମୋଦ-ପ୍ରମୋଦ ଚାଲିବ । ମୁଁ ତ ସେ ସବୁ ଦେଖିପାରିବି ନାହିଁ, ସେ ସବୁ ଉପଭୋଗ କରିପାରିବେ ନାହିଁ । ବାମନ ବାବୁ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ପ୍ରକାଣ୍ଡ ଦର୍ପଣ ସାମନାରେ ଛିଡ଼ାହେଲେ ଏବଂ ଘରର ସବୁ ଆଲୁଅ ଜାଳିଦେଇ ଦର୍ପଣ ଆଡ଼କୁ ନଇଁ କାନ ପାଖର ବାଳ ଟିକେ ନିରିଖିବାକୁ ଲଗିଲେ । ଗୋଟିଏ ଧଳାବାଳ ଦେଖି ସେ ଆଉ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇଲେ ଏବଂ ମନେ ମନେ ଆବୃତ୍ତି କରି କହିଲେ, ନା, ନା, ମରିବେ ଚାହିଁନା ଆମି ସୁନ୍ଦର ଭୁବନେ—ମୁଁ କିଛି ଉପଭୋଗ କରିନାହିଁ...ବାଲ୍ୟ ଓ ଯୌବନ ଗଲା ଦାରିଦ୍ର୍ୟ, ପଢ଼ା ଏବଂ ଚାକିରିରେ ଉନ୍ନତି ପାଇଁ କଠିନ ପରିଶ୍ରମରେ; ମାତ୍ର ଚାରି ପାଞ୍ଚ ବର୍ଷ ହେବ ମୁଁ ସୁଖ, ପ୍ରତିପତ୍ତି ପାଇବାକୁ ଆରମ୍ଭ କରିଚି । ବାମନ ବାବୁ ଗୋଟି ଗୋଟି କରି ଧଳାବାଳ ସବୁ ଓପାଡ଼ି ପୁଣି ଆସି ଚୌକିରେ ବସି ଧୂଆଁ ଆଡ଼େ ଚାହିଁରହିଲେ । ଧୂଆଁର ଆଉ କୌଣସି ଆକାର ନାହିଁ । ପାତଳା ଧୂଆଁ ଯେପରି ମୁକ୍ତି ପାଇଁ ବ୍ୟାକୁଳ ହୋଇ ଘରର ପ୍ରତ୍ୟେକ ଦୁଆର ଓ ଝରକାରେ ଆଘାତ କରୁଛନ୍ତି । ବାମନବାବୁ ଉଠି ଗୋଟିଏ ଝରକା ଖୋଲିଦେଲେ । ସମସ୍ତ ଧୂଆଁ ଯେପରି ମୁକ୍ତିର ଆନନ୍ଦରେ ସେହି ବାଟେ ବାହାରିଗଲେ ।

ବାମନବାବୁ ଚୌକିରେ ବସି ପୁଣି କଫି ପାନ କରିବାକୁ ଲଗିଲେ—ନା, ଜୀବନଟାକୁ ଏଥର ନବଉଦ୍ଭବରେ ଉପଭୋଗ କରିବାକୁ ହେବ । ସେ ପୁଣି ଉଠି ପକେଟରୁ ଚାବି ବାହାର କରି ଆଲମାରିରୁ ମୂଲ୍ୟବାନ ବିଲାତି ମଦ ବାହାର କରି ଟିକିଏ ବେଶି ମାତ୍ରାରେ କଫି ପିଆଲାରେ ଢାଳି ପାନ କରି ଡାକିଲେ, ଶୁଣୁଚ !

ଘରର ଦୁଆର ଠେଲିପ୍ରବେଶ କଲେ ତାଙ୍କର ସ୍ତ୍ରୀ ଚପଳା । ବାମନବାବୁ ଚପଳାଙ୍କୁ ଯେତେବେଳେ ବିବାହ କରିଥିଲେ, ସେତେବେଳେ ସେ ଥିଲେ ଜଣେ ସାମାନ୍ୟ କିଶୋରୀ । ଚପଳାଙ୍କର ବୟସ ସେତେବେଳେ ପନ୍ଦର । ସେ ଥିଲେ ନିହାତି ଦରିଦ୍ର କନ୍ୟା । ସୌନ୍ଦର୍ଯ୍ୟ ଭିତରେ ଧଳା ଚମଡ଼ା ଛଡ଼ା ଆଉ କିଛି ନ ଥିଲା । ନିହାତି ପାତଳି ସେ ଥିଲେ ସେତେବେଳେ । ତାଙ୍କର ଚାଲିଚଳନ ମଧ୍ୟ ଥିଲା ନିପଟ ମଫସଲି ଭଳି । କଟକକୁ ଆଣି ବନ୍ଧୁ ମହଲରେ ବାମନବାବୁ କେତେଥର ଅପଦସ୍ଥ ହୋଇଛନ୍ତି ତାଙ୍କ ପାଇଁ । ଯେତେ ଅନୁରୋଧ ଅପମାନ କଲେ ବି ଚପଳା ସେ ଢଙ୍ଗ ଛାଡ଼ି ପାରି ନ ଥିଲେ । ବାମନବାବୁ ତାଙ୍କୁ ଚଷମା ପିନ୍ଧାଇଛନ୍ତି, କୁଞ୍ଚ କରି ଶାଢ଼ୀ ପିନ୍ଧିବାକୁ ଶିଖାଇଛନ୍ତି, ନିଜେ ପରିଶ୍ରମ କରି ଇଂରାଜୀ ପଢ଼ାଇଛନ୍ତି, ସନ୍ଧ୍ୟାବେଳେ ସାଙ୍ଗରେ କାଠଯୋଡ଼ି କୂଳକୁ ବୁଲି ବାହାରିଛନ୍ତି; କିନ୍ତୁ ସବୁ ବିଫଳ ହୋଇଥିଲା । ଯେତେ କହିଲେ ବି ଚପଳା ତାଙ୍କ ପଛେ ପଛେ ନିହାତି ମଫସଲି ଭଳି ଓଢ଼ଣାକୁ ହାତରେ ଚିବୁକ ତଳେ ଚାପି ରଖି ଅଦ୍ଭୁତ ଭଙ୍ଗୀରେ ଚାଲନ୍ତି । କେବେହେଁ ତାଙ୍କ ପାଖେ ପାଖେ ଚାଲନ୍ତି ନାହିଁ । କିନ୍ତୁ ପରେ ବାମନ ବାବୁଙ୍କ ଉନ୍ନତି ଓ ଧନବୃଦ୍ଧି ସହିତ ଚପଳାଙ୍କର ମଧ୍ୟ ଚାଲିଚଳଣ ବଦଳିଛି । ଦିଲ୍ଲୀରେ ତିନି ବର୍ଷ ଚାକିରି ପରେ ବାମନବାବୁ ଯେତେବେଳେ ପୁଣି କଟକ ବଦଳି ହେଲେ, ସେତେବେଳେ ତାଙ୍କର ବନ୍ଧୁମାନେ ତାଙ୍କର ସ୍ତ୍ରୀଙ୍କୁ ଦେଖି ଚମକି ପଡ଼ିଲେ । ଏ ଉନ୍ନତ ବକ୍ଷ, ସୁଗୋଲ ବାହୁ, ଚପଳ ଚାହାଣି, ପତଳା ଓଠ, କଥାକଥାକେ ଇଂରାଜୀ—ଏ ସବୁ ଥିଲା କେଉଁଠି ? ବନ୍ଧୁମାନଙ୍କ ଆଶ୍ଚର୍ଯ୍ୟ ଭାବ ଦେଖି ବାମନ ବାବୁ ମନେ ମନେ ସେ ଦିନ ଗର୍ବ ଅନୁଭବ କରିଥିଲେ । ଚପଳା ବର୍ତ୍ତମାନ ନିଜେ ମୋଟର ଚଳାନ୍ତି ଏବଂ ସିନେମା, ଭ୍ରମଣ ବା ପାର୍ଟିକୁ ଗଲେ ତାଙ୍କ ମୁଣ୍ଡରେ ଲୁଗା ନ ଥାଏ । ସେ ଚାଲନ୍ତି ଆଗେ ଆଗେ ଓ ବାମନ ବାବୁ ଚାଲନ୍ତି ପଛେ ପଛେ ଆନନ୍ଦରେ ।

ବାମନବାବୁ ତାଙ୍କୁ ଚାହିଁ ଆଜି ଅଧିକ ସୁଖ ପାଇଲେ । ଜୀବନରେ ସୁଖ ଉପଭୋଗ କରିବାର ଆକାଂକ୍ଷା ତାଙ୍କର ସଫଳ ହୋଇଚି ସବୁଆଡ଼ୁ । ଏ ସୁଖକୁ ନିବିଡ଼ତର ଭାବରେ ଉପଭୋଗ କରିବାକୁ ହେବ ।

ଚପଳା ଆସି ତାଙ୍କ ଦେହକୁ ଲାଗି ବସିଲେ । ବାମନବାବୁ ତାଙ୍କୁ ଗାଢ଼ ଆଲିଙ୍ଗନ କରି ଚୁମ୍ବନ ଦେଇ କହିଲେ, ଚପଳା—ଆଜି ସନ୍ଧ୍ୟାରେ ଗୋଟିଏ ପାର୍ଟିର ଆୟୋଜନ କର । ମୁଁ ମୋର ସବୁ ବନ୍ଧୁଙ୍କୁ ଆଜି ନିମନ୍ତ୍ରଣ କରିବି ।

ଚପଳା ହସି କହିଲେ, ମୁଁ ମଧ୍ୟ ସେଇକଥା ଭାବୁଥିଲି । ବାଃ, ଭାରି ମଜାରେ ଯିବ ଆଜି ସନ୍ଧ୍ୟା । ତୁମର ସବୁ ବନ୍ଧୁ ତ ଆଜି ବଡ଼ଲୋକ ହୋଇଛନ୍ତି ।

ବାମନ ବାବୁ ଗର୍ବର ସହିତ ହସି ହସି କହିଲେ, ହଁ ସମସ୍ତେ ପ୍ରତିଷ୍ଠା ପାଇଛନ୍ତି । ସେମାନେ ସମସ୍ତେ ମୋର ଅନ୍ତରଙ୍ଗ ବନ୍ଧୁ ।

ଫୋନ ଉଠାଇ ବାମନବାବୁ ଡାକିଲେ, ଡବଲ୍ ଫାଇଭ ଟୁ—ଇୟେସ୍ ପ୍ଲିଜ୍—ହ୍ୟାଲୋ—କିଏ ? —ହ୍ୟାଲୋ—ଓ—ଓ—ଓ, ମିସେସ୍ ସାନ୍ୟାଲ—ନମସ୍କାର—ସୁଜୟ ଅଛି ?—ନାହିଁ ?—ଆଚ୍ଛା, ମିସେସ୍ ମହାନ୍ତି ଆପଣଙ୍କ ସହିତ କଥା କହିବାକୁ ଚାହାନ୍ତି ।

ବାମନବାବୁ ଫୋନଟି ଚପଳା ହାତକୁ ବଢ଼ାଇ ଦେଲେ । ଚପଳା ଫୋନ ଧରି କହିଲେ, ମୀନା, ବାଃ, ତୋର ତ ଆଉ ଦେଖାନାହିଁ । ଶୁଣୁ, ଆଜି ସନ୍ଧ୍ୟାବେଳକୁ ତୋତେ ଓ ମିଃ ସାନ୍ୟାଲଙ୍କୁ ନିମନ୍ତ୍ରଣ ରହିଲା, ଆସିବୁ, ବୁଝିଲୁ···ଧେତ୍···ଆଚ୍ଛା, ଆଚ୍ଛା କହୁଚି ତାଙ୍କୁ ···

ଫୋନ୍‌ରେ ସବୁ ବନ୍ଧୁଙ୍କୁ ନିମନ୍ତ୍ରଣ କରିସାରି ଦୁହେଁ ମିଳି ସାନ୍ଧ୍ୟମିଳନ ପାଇଁ ଖାଦ୍ୟ ତାଲିକା ପ୍ରସ୍ତୁତ କରିବା ପରେ ଚପଳା ଉଠିଗଲେ ଆୟୋଜନ କରିବାପାଇଁ । ବାମନ ବାବୁ ପୁଣି ଚୁରୁଟ ଲଗାଇଲେ ଏବଂ ପୁଣି ମୁହଁ ଗୋଳିଆ କରି ଧୂଆଁର କୁଣ୍ଡଳୀ ଉପରକୁ ଛାଡ଼ିବାକୁ ଯାଉଥିଲେ ; କିନ୍ତୁ ହଠାତ୍ ଅଟକି ଯାଇ ତଳକୁ ମୁହଁ କରି ଧୂଆଁର ସ୍ରୋତ ତଳକୁ ଛାଡ଼ି-ଦେଲେ ।

—ବେହେରା, ବେହେରା, ବାବୁ ଅଛନ୍ତି ?—ବାହାରୁ ଶୁଭିଲା ।
ବାମନ ବାବୁ ବିରକ୍ତ ହୋଇ କହିଲେ,—କିଏ ?
—ଆଜ୍ଞା, ମୁଁ ।
—ମୁଁ କିଏ ? ଯାଅ, ଏକ୍ଷଣି ସମୟ ନାହିଁ ।
—ଆଜ୍ଞା, ଟିକିଏ ଶୁଣନ୍ତୁ ।
—କିଏ, ତୁମେ ?
—ମୁଁ ବିନୟ ।
—କିଏ ବିନୟ ? କାଲି ଆସିବେ, ଯାଆନ୍ତୁ ।
—ଆଜ୍ଞା, ମୁଁ ବାମନବାବୁଙ୍କ ବାଲ୍ୟବନ୍ଧୁ ବିନୟ ।

ବାମନ ବାବୁଙ୍କର ଆଦୌ ମନେପଡ଼ିଲାନାହିଁ ବିନୟ କିଏ । ସେ ଅପ୍ରସନ୍ନ ଭାବରେ ଦୁଆର ଖୋଲି ଦେଖିଲେ ଛିଡ଼ା ହୋଇଚି ଜଣେ ପ୍ରୌଢ଼ । ପିନ୍ଧିଚି ଖଣ୍ଡେ ଅଧମଇଳା ଲୁଗା, ଓ ଲେଖ୍ତକୋଟ୍ ସଫା ଜାମା । କାନରେ କୋଳ ଓ କାନ୍ଧରେ ଗାମୁଛା । ବାମନବାବୁ ଅପ୍ରସନ୍ନ ଓ ଆଶ୍ଚର୍ଯ୍ୟ ଦୃଷ୍ଟିରେ ତାଙ୍କୁ ଚାହିଁରହିଲେ ।

ଲୋକଟି ଆନନ୍ଦରେ ହସି କହିଲା, ଚିହ୍ନି ପାରୁନା ? ପିଲାବେଳ କଥା, ଗାଁ ସ୍କୁଲ କଥା ମନେ ନାହିଁ ଭାଇ ! ସନ୍ଧ୍ୟାବେଳେ ନଈବାଲିକୁ ଯାଇ କେତେ ଠାକୁରପୂଜା କରୁଥିଲୁ, ତୋତେ କେତେ ଶ୍ଳୋକ ଶିଖାଇଥିଲି ମୁଁ । ସେ ସବୁ ମନେପଡ଼ିଲେ ମୋ ମନ କଅଣ ହୋଇଯାଏରେ । ଠାକୁରପୂଜା ପାଇଁ ତୁ କଅଣ କମ୍ ପାଗଳ ଥିଲୁ ! ଆଜି କାଲି ନା ସେସବୁ ?

ବାମନ ବାବୁ ଆନନ୍ଦରେ ଅଭିନୟ କରି କହିଲେ, ଆରେ ବିନ ! କଅଣ କରୁଚୁ ଆଜିକାଲି ?

—କଅଣ କରିବି ଭାଇ ଆଉ—ଗାଁରେ ପୈତୃକ ଯଜମାନ ଅଛି । କିଛି ଜମି ଅଛି । ଜମି ଚାଷ କରି, ଠାକୁରପୂଜା କରି କୌଣସିମତେ ଗୁଜରାଣ ମେଣ୍ଟିଯାଏ । ତୁମେ ସବୁ ବଡ଼ଲୋକ ହେଲ ଦେଖି ମନଟା ଭାରି ଆନନ୍ଦ ହୁଏ । କଟକରେ ଟିକିଏ କାମ ଥିଲା, ଭାବିଲି ସବୁ ପିଲାବେଳ ସାଙ୍ଗମାନଙ୍କୁ ଥରେ ଦେଖିଯାଏ । ବୟସ ହେଲାଣି ଆସି, କେବେ ପାଚିଲା ବେଲ ପରି କିଏ ଖସି ପଡ଼ିବ କିଏ ଜାଣେ ? ମରିବାଟା ତ ଆଶ୍ଚର୍ଯ୍ୟ ନୁହେଁ, ବଞ୍ଚିବାଟା ହିଁ ଆଶ୍ଚର୍ଯ୍ୟ କଥା ।

ବାମନବାବୁଙ୍କ ଆଖି କ୍ରୋଧରେ ଦପ୍ କରି ଜଳିଉଠିଲା । ସେ ନିଜକୁ ସମ୍ଭାଳି ନେଇ କହିଲେ, ହଁ, ହଁ ତା ଠିକ୍ । ମରଣକୁ ମୋତେ ଭାରି ଡର ମାଡୁଲାଣି ।

ବିନୟ ହସି କହିଲା, ନାଇଁରେ ଡର କାହିଁକି ! ମରଣ ତ ସବୁ ଯୁଗରେ ସମସ୍ତଙ୍କ ପାଇଁ ସମାନ । ଯାହା ସମସ୍ତଙ୍କ ପାଇଁ ସମାନ, ତା ପାଇଁ ଡର କଅଣ ? ସବୁ ତାଙ୍କୁ ଅର୍ପଣ କଲେ, ଆଉ ଡର ନ ଥାଏ ରେ, ଆଉ ଡର ନଥାଏ । ତାଙ୍କଠାରୁ ଅଲଗା ହୋଇ ଜୀବନ କଟାଇଲେ ଡର ମାଡ଼ିବ ସେ ମରିବାକୁ ।

ବାମନବାବୁଙ୍କର ହଠାତ୍ ମନେହେଲା ବିନୟ ଯେପରି ବନ୍ଧୁ ନୁହେଁ, ତାର ମୃତ୍ୟୁ-ଦୂତ ରୂପେ ଆସିଚି । ସେ ଦୁଆର ଆଉଜାଇ ଦେଇ କହିଲେ, ଯା, ଭାଇ ଯା, ମୋର ଅଫିସ ବେଳ ହୋଇଗଲାଣି ।

ବିନୟ ଆଶ୍ଚର୍ଯ୍ୟ ହୋଇ କହିଲା, ଆଜି ପରା ରବିବାର ···

—ଅଫିସର୍ର ରବିବାର ନାହିଁ, ସବୁଦିନ କାମ ଯା । ଭାଇ, ଯା ।

ବାମନବାବୁ ଦୁଆର ଲଗାଇଦେଇ ଫେରି ଦେଖିଲେ ତାଙ୍କ ପଛରେ ଚପଳା ଛିଡ଼ାହୋଇଛନ୍ତି । ସେ ପୁଣି ଉନ୍ମାଦ ଭାବରେ ତାଙ୍କୁ ଆଲିଙ୍ଗନ କରି ତାଙ୍କୁ ଟେକି ନେଇ ଚୌକି ଉପରେ ବସିଲେ ।

ଚପଳା ପଚାରିଲା, ସେ ତୁମର ବାଲ୍ୟବନ୍ଧୁ ?

ବାମନବାବୁ ଅବଜ୍ଞା ଭରି କହିଲେ, ହିଁ କହୁଚି ତ ସିଏ, ମୋର ତ ମନେ ପଡୁନାହିଁ । ଗୁଡ଼—ସବୁ ପ୍ରସ୍ତୁତ ତ ?

ହଁ ।

—ବାଃ, ତୁମେ ନ ଥିଲେ ମୋର ···,ବାମନ ବାବୁ ଆନନ୍ଦରେ ଚପଳାକୁ ଚୁମ୍ବି ରହିଲେ ।

× ×

ସନ୍ଧ୍ୟାବେଳେ ସବୁ ବନ୍ଧୁ ସସ୍ତ୍ରୀକ ଆସିଲେ । ଗୃହ୍ନା ଟେବୁଲ୍ ହାସ କୌତୁକ ଓ ଖାଦ୍ୟରେ ଭରିଉଠିଲା । କଥାକଥାକେ ଅନନ୍ତବାବୁ କହିଲେ,ଆରେ ବାମନ, ସକାଳେ ବିନୟ ତୋ ଘରକୁ ଆସିଥିଲା ? ତୋର ଖୁବ ପ୍ରଶଂସା କରୁଥିଲା ସିଏ । ସେ କହିଲା, ତୁ ତାକୁ ଡାକି ଜଳଖିଆ ଖାଇବାକୁ ଦେଲୁ । ମିସେସ୍ ମହାନ୍ତିଙ୍କ ସହିତ ପରିଚୟ କରାଇ-ଦେଲୁ । ମୁଁ ତ ଭାଇ ପ୍ରଥମେ ଆଦୌ ଚିହ୍ନି ପାରିଲିନାହିଁ । ଟିକିଏ ବିରକ୍ତ ବି ହେଲି । କିନ୍ତୁ ଯେତେହେଲେ ବାଲ୍ୟବନ୍ଧୁ ତ, ସକାଳେ ଜଳଖିଆ ଖାଇବାକୁ ଡାକିଲି । ମନା କଲା । କହିଲା, ଅଧ୍ୟାପକ କରଙ୍କ ଘରେ ଖାଇ ଆସିଚି ।

ଅଧ୍ୟାପକ କର କହିଲେ, ମୋ ଘରକୁ ସକାଳେ ଯାଇଥିଲା ସେ । ମୁଁ ତ ତାକୁ ଖରାବେଳେ ଖାଇବାକୁ କହିଲି । ସେ କହିଲା, ବାମନ ଖରାବେଳେ ଖାଇବାକୁ ଡାକିଚି ।

ବାମନବାବୁ କହିଲେ, ହଁ, ମୋ ଘରକୁ ଆସିଥିଲା । ହଁ ଭାଇ, ବାଲ୍ୟବନ୍ଧୁମାନଙ୍କୁ କେଉଁଣ ସହଜେ ଭୁଲିହୁଏ । ମୁଁ ତାକୁ ଏଇ ସନ୍ଧ୍ୟାମିଳନକୁ ଡାକିଲି ଯେ, କହିଲା, ଅନନ୍ତ କୁଆଡ଼େ ଖୁବ ଜିଦ୍ କରି ଡାକିଚି ସନ୍ଧ୍ୟାବେଳକୁ ଜଳଖିଆ ଖାଇବାକୁ ।

ଅନନ୍ତବାବୁ କହିଲେ, ସନ୍ଧ୍ୟାରେ ସେ ମୋ ଘରକୁ ଯାଇଥିଲା ସତ । ମୁଁ ତ ତାକୁ …ହଁ…ନାଁ…ହି ଡାକିଥିଲି । ପିଲାବେଳର ସାଙ୍ଗଟା ।

□ □ □

# ଭୌତିକ

ହଠାତ୍ ଦିନେ କୋରାପୁଟ ବଦଳିର ଆଦେଶ ପାଇଲି । ଚାକିରିରେ ପଦୋନ୍ନତି ହୋଇ ବଦଳି ହେଲି; ଅତଏବ ଆପତ୍ତି ଅଭିଯୋଗ କରିବାକୁ ସାହସ ହେଲା ନାହିଁ । ପିଲାପିଲିଙ୍କୁ ସାଙ୍ଗରେ ନେବାର ସୁବିଧା ହେଲା ନାହିଁ । ସମସ୍ତେ ଇସ୍କୁଲର ଛାତ୍ର-ଛାତ୍ରୀ । ଶେଷ ପରୀକ୍ଷା ଆଉ ତିନିମାସ । ସେଇ ଅବସ୍ଥାରେ ଗୋଟିଏ ଇସ୍କୁଲ ଛଡ଼ାଇ ଆଉ ଗୋଟିଏ ନୂଆ ଇସ୍କୁଲରେ ଭର୍ତ୍ତିକରାଇବାମାନେ ବର୍ଷଟିଏ ନଷ୍ଟ । କୋରାପୁଟରେ ମଧ୍ୟ ଭୀଷଣ ଶୀତ ଏ ସମୟରେ । ଅତଏବ ପିଲାଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ ମଧ୍ୟ ଗୃହିଣୀ ଯିବାକୁ ଅମଙ୍ଗ ହେଲେ ।

ଅଗତ୍ୟା ନିଜେ ଚଳିବା ଭଳି ସାମାନ୍ୟ କିଛି ଜିନିଷ ନେଇ ଲମ୍ବା ସଫରକୁ ଉପକ୍ଷେଶ୍ୟ କରିବା ପାଇଁ ଦିନେ ବୃଦ୍ଧନୀ ରାତି ଦେଖି ବାହାରିପଡ଼ିଲି ଏକା ନୂଆ କିଣା ହୋଇଥିବା ମଟରରେ । କୋରାପୁଟ ଆଉ ଯେତେବେଳେ ଦୁଇଶହ ମାଇଲ ଅଛି ସେତେ-ବେଳେ ରାତି ଆଠଟା । ଆକାଶରେ ଜ୍ୟୋତ୍ସ୍ନାର ପ୍ଳାବନ । ଚାରିଆଡ଼େ ବନ୍ୟଶ୍ରୀ ବନାନୀ, ନିସ୍ତବ୍ଧ ପଥର । ନିସ୍ତବ୍ଧତା ଭଙ୍ଗକରି ଅବିରାମ ଗୁଞ୍ଜୁଥାଏ ମୋର ନୂଆ ମଟରର ଅପୂର୍ବ

ଗୁଞ୍ଜନ । ପ୍ରତ୍ୟେକ ମଣିଷ ବୋଧହୁଏ ପାଗଳ, ବିଶିଷ୍ଟ ପରିସ୍ଥିତିରେ ତାର ବିଶିଷ୍ଟ ପ୍ରକାର ପାଗଳାମି ପ୍ରକାଶ ପାଏ । ଏ ପରିସ୍ଥିତିରେ ମୋର ବି ଗୋଟାଏ ପ୍ରକାର ପାଗଳାମି ବାହାରିଲା । ମଟରର ଗ୍ରୁତ୍‌ଦେଇ ଘଣ୍ଟାକୁ ଷାଠିଏରୁ ସତୁରି ମାଇଲ ଗତିରେ । ଖାଲି ସେତିକି ନୁହଁ, ମଟରଟାକୁ ଅଙ୍କେଇ-ବଙ୍କେଇ ରାସ୍ତାରେ ଚଲାଇଲି । ମଝିରେ ମଝିରେ ଷ୍ଟିୟାରିଂ ଛାଡ଼ିଦେଇ ବି ଚଳେଇଲି । ଅନେକ ଥର ରାସ୍ତାକଡ଼ର ମଟର ଗ୍ଲକ୍‌ସାଇ ଓଲଟି ଯିବାରୁ ଅଳପକେ ରକ୍ଷା ପାଇଚି । ଓଲଟିଲେ ମଟରଟି ଅନ୍ତତଃ ଗ୍ଳଶିଟି ଥର ଓଲଟପାଲଟ ହୋଇ ଅଟକିବ ଯାଇ କୌଣସି ପଥର ବା ଗଛଟରେ ପିଟି ହୋଇ । ପାଗଳାମି ଏମିତି ମାଡ଼ିବସିଥାଏ ଯେ ଏ ବିପଦହିଁ ବେଶି ମାଦକତା ସୃଷ୍ଟି କରୁଥାଏ । ଗୀତ ଗ୍ରୁଡ଼ିଦେଇଥାଏ ତାଣ୍ଡବ ସୁର୍‌ରେ, ଯାହାର ଶବ୍ଦ ଦଲ୍ଲୀରୁ ବର୍ମା ପର୍ଯ୍ୟନ୍ତ ନିଶ୍ଚୟ ଶୁଭୁଥିବ । କଲେଜରେ ପଢ଼ିବାବେଳେ ସୁରମା ପ୍ରେମରେ ପଡ଼ି ତାକୁ ଆକର୍ଷଣ କରିବା ପାଇଁ ଥରେ ଥରେ ଗୀତ ଗାଇଥିଲି, କାରଣ ମୋର ପ୍ରତିଦ୍ୱନ୍ଦ୍ୱୀ ଦାମୋଦରର ଅନେକ ଭଲଗୁଣ ଭିତରେ ଭଲ ଗୀତ ଗାଇବା ଗୁଣଟି ଥିଲା । ଫଳରେ ଖାଲି ଯେ ସୁରମାକୁ ହରାଇଲି ତାହା ନୁହେଁ, ଅନେକ ବିଦ୍ରୂପ ମଧ୍ୟ ସହ୍ୟ କରିବାକୁ ପଡ଼ିଥିଲା । ତାହାପରେ ଆଉ କେବେ ଗୀତ ଗାଇନାହିଁ । ଗୀତ ଗାଇବାର କୋହ ଉଠିଲେ ତାକୁ ଠେଲିଦେଇଚି ।

ଆଜ କିନ୍ତୁ ବାସ୍ତା ଗ୍ରଜା ମୋତେ ବାଧ୍ୟ କରି ଦେଇଚି । ପାଗଳାମି ଏମିତି ସ୍ତରକୁ ଗ୍ଲଲଗଲି ଯେ ଆଉ କିଛିକ୍ଷଣ ଯାଇଥିଲେ ବାସ୍ତା ରଜା ତାଲି ମାରି ମଜା ଦେଖିଥାନ୍ତେ ହୁଏତ । ଫ୍ରେୟଡ଼ବାଲାଏ କହିପାରନ୍ତି, ସମାଜର କୃତ୍ରିମ ସଭ୍ୟତାରୁ ବନ୍ଧନରୁ ମୁକ୍ତ ପାଇ ମୋର ମନର ନିଗୂଢ଼ ସ୍ତରରେ ଲୁକ୍‌କାୟିତ ଥିବା ଆଦିମ ବର୍ବରତା ପ୍ରକାଶ ପାଇଚି । ହୋଇଥିବ ! ହୋଇଥିବ !

ହଠାତ୍ ଆତଙ୍କିତ ହୋଇ ଶୁଣିଲି ମଟରର ସୁମଧୁର ଗୁଞ୍ଜନ ବନ୍ଦ ହୋଇ ବାହାରୁଚି ଗୋଟାଏ ବିକଟ ଭଡ଼ଭଡ଼ ଧଡ଼ଧଡ଼ ଆବାଜ । ନିମିଷକେ ସବୁ ପାଗଳାମି ଗ୍ଲଲଗଲା । ସଭୟେ ଜାଣିଲି — ମଟର ପାଞ୍ଚ ମିନିଟର ନୋଟିସ ଦେଲା, ଆଉ ଗ୍ଲଲିବ ନାହିଁ; ଫଳତଃ ସେଇଆ ହେଲା ମଧ୍ୟ । ଆଉ ଅଳପ ବାଟ ଗଲା ପରେ ଦିନୋଟି ଥର ବିକଟ ଶବ୍ଦ କରି ମଟର ବନ୍ଦ ହୋଇଗଲା । ସମସ୍ତ କାମନା-ବାସନାତ୍ୟାଗୀ ନିର୍ବାଣପ୍ରାପ୍ତ ସନ୍ନ୍ୟାସୀ ଭଳି ଅଟଳ ଭାବରେ ରାସ୍ତା ମଝିରେ ଛିଡ଼ାହୋଇ ରହିଲା । ଠେଲିବାକୁ ଚେଷ୍ଟା କଲି— ସୂତାଏ ବି ଘୁଞ୍ଚାଇ ପାରିଲି ନାହିଁ । ଯନ୍ତ୍ରବିଦ୍ୟାର 'ଯ' ଅକ୍ଷର ନ ଜାଣିଲେ ମଧ୍ୟ ମଟରର ବନେଟ ଟେକି କେଉଁଠି କଅଣ ବିଗିଡ଼ିଚି ବୁଝିବାକୁ ଚେଷ୍ଟା କଲି । ଉଦ୍ଦେଶ୍ୟ ଆଉ କିଛି ନୁହଁ, ମଟରକୁ ଜଣାଇଦେବାକୁ ଗ୍ରହେଁ ଯେ, ମୋ ପାଖରେ ଗ୍ଲଲାକି ଚଳିବ ନାହିଁ, ମୁଁ ସବୁ ଜାଣେ । ଏଥିରେ ସେଥିରେ ହାତ ମାରିଲି, କିଛି ଫଳ ହେଲାନାହିଁ । ତା' ପରେ ହାତ ଯୋଡ଼ି ଛିଡ଼ା ହୋଇ କହିଲି, ବନ୍ଧୁ, ତୋ'ର ମନରେ କଅଣ ଏଇଆ ଥିଲା, ଶେଷରେ ଜଙ୍ଗଲ ମଝିରେ ମୋତେ ବାଘମୁହଁକୁ ଠେଲିଦବୁ । ଅପମାନ ଦେଇ ଉତ୍ତେଜିତ କରିବା ପାଇଁ

ଯାବତ୍ ଇଚ୍ଛା ଚାଳଦେଲ ତାର ସ୍ରଷ୍ଟାଙ୍କୁ । କୌଣସିଥିରେ କଚ୍ଛ ହେଲନାହିଁ । ଭାବନ୍ତୁ ନାହିଁ ଯେ ହାସ୍ୟରସ ସୃଷ୍ଟି କରିବାକୁ ବଢ଼େଇ କହୁଛୁ । ମୋର ଅସହାୟତା ହୁଏତ କୌତୁକ ହିଁ ସୃଷ୍ଟି କରୁଛୁ କେବଳ; କିନ୍ତୁ ମହାକବି କାଳିଦାସ କହିଛନ୍ତି, ବିଶେଷ ମାନସିକ ଅବସ୍ଥାରେ ମନୁଷ୍ୟର ଜୀବ ଓ ନିର୍ଜୀବ ମଧ୍ୟରେ ପାର୍ଥକ୍ୟ ଜ୍ଞାନ ରହେନାହିଁ । ତାହା ନହେଲେ ବିରହୀ ଯକ୍ଷ କଅଣ ମେଘକୁ ପ୍ରିୟା ପାଖକୁ ସନ୍ଦେଶ ନେଇ ଯିବାକୁ ଅନୁନୟ-ବିନୟ କରିଥାଆନ୍ତା ! ଆଉ ଜ୍ଞାନୀ ବିଜ୍ଞାନୀମାନେ ତ କହିଛନ୍ତି, କୌଣସି ବସ୍ତୁର ବସ୍ତୁତ୍ୱ ବାସ୍ତବ ନୁହଁ, ମନର ଭ୍ରମ ମାତ୍ର । କିଏ କହିପାରେ ମଟରର କୌଣସି ଗୁପ୍ତ ଉଦ୍ଦେଶ୍ୟ ନାହିଁ ?

ହତାଶଭାବରେ ଯେତେବେଳେ ଚାରିଆଡ଼େ ଚାହିଁ ହୃଦୟଙ୍ଗମ କରିବାକୁ ଚେଷ୍ଟା କଲି ମୁଁ କେଉଁ ପରିସ୍ଥିତିରେ । ଦେଖିଲି ଚାରିଆଡ଼େ ନିବିଡ଼ ଜଙ୍ଗଲ । ନିକଟରେ ବା ଦୂରରେ ମନୁଷ୍ୟ ବସବାସର କୌଣସି ଲକ୍ଷଣ ନାହିଁ । ହାତଘଡ଼ିକୁ ଚାହିଁ ଦେଖିଲି, ରାତି ମାତ୍ର ନ'ଟା । ପରିସ୍ଥିତିର ଭୟଙ୍କରତା ଯେତେବେଳେ ସମ୍ୟକ୍‌ଭାବରେ ଉପଲବ୍‌ଧି ହେଲା । ଭୟରେ ଚ୍ରୁଣରୁ ଅନ୍ତଡ଼ା ଖସିପଡ଼ିଲା । ରାତିକ ସେଇଠି ମଟର ଭିତରେ ରହିବା ଛଡ଼ା ଆଉ ଉପାୟ ନାହିଁ ।

ବନ୍ଧୁକରେ ଗୁଳି ଭରତି କରି ସେଇଠି ରହିବାର ଯୋଗାଡ଼ କରୁଚି, ଏଇ ସମୟରେ ଦେଖିଲି ଦୂରରୁ ଗୋଟିଏ ମିଞ୍ଜି ମିଞ୍ଜି ଆଲୁଅ ରାସ୍ତାଦେଇ ଅତି କ୍ଷିପ୍ରଗତିରେ ମୋ ଆଡ଼କୁ ଆସୁଚି । ନିଶ୍ଚୟ ମଟର ନୁହେଁ; କାରଣ ତା ହୋଇଥିଲେ ଦୁଇଟି ଆଲୁଅ ଦିଶନ୍ତା କିମ୍ବା ଗୋଟିଏ ହେଲେ ବି ଏତେ ନିଷ୍ପ୍ରଭ ଦିଶନ୍ତା ନାହିଁ । କେହି ମଣିଷ ଯଦି ଆସୁଥାନ୍ତା, ତେବେ ଏତେ କ୍ଷିପ୍ରଗତିରେ ଅସୁଚି କିପରି ସେ ! ଭୟରେ କପାଳରୁ ଝାଳ ବାହାରିପଡ଼ିଲା । ଦେଖୁ ଦେଖୁ ଆଲୁଅ ମୋ ନିକଟରେ ! ଦେଖିଲି ଜଣେ ଲୋକ ଆଲୁଅ ଧରି ଚାଲିଚି । ମନରେ ଟିକିଏ ସାହସ ପାଇ ପଚାରିଲି, ବାବୁ, ଏଠି କେଉଁଠି ମୁଣ୍ଡ ଗୁଞ୍ଜିବା ଜାଗା ଟିକିଏ ମିଳିବ ? ଲୋକଟି ଡାହାଣ ପଟକୁ ହାତ ଦେଖାଇ ଚାଲିଗଲା । ଚାହୁଁ ଚାହୁଁ ଆଲୁଅ ଅଦୃଶ୍ୟ ହୋଇଗଲା । କି ଆଶ୍ଚର୍ଯ୍ୟ ! ଏ ଭୂତ ନା ମଣିଷ ନା ଦେବଦୂତ ! ଅଜଣା ଭୟ ମାଡ଼ିବସିଲା ମୋତେ । ଡାହାଣ ଆଡ଼କୁ ଅନେଇ ଦେଖିଲି ଗୋଟାଏ ଅଣଓସାରିଆ ରାସ୍ତା ସିଧା ଚାଲି ଯାଇଛି । କି ଆଶ୍ଚର୍ଯ୍ୟ ! ଟର୍ଚ୍ଚ ଆଲୁଅରେ ଚାରିଆଡ଼ ଏତେ ଖୋଜିଚି; କିନ୍ତୁ ଏତେବେଳ ପର୍ଯ୍ୟନ୍ତ ଏ ରାସ୍ତା ମୋ ନଜରରେ ପଡ଼ିନାହିଁ !!

ମଟରର ସବୁ କାଚ ବନ୍ଦକରିଦେଇ, ଚାବି ଦେଇ, ବନ୍ଧୁକ, କିଛି ବିସ୍କୁଟ, ପାଣି ବୋତଲ, ଟର୍ଚ୍ଚ ଓ ଅନ୍ୟାନ୍ୟ ଜିନିଷ ଧରି ରାସ୍ତାରେ ଚାଲିଲି । କିଛି ବାଟ ଗଲାପରେ ଦେଖିଲି କାଠପଟାରେ ଲେଖାହୋଇଚି 'ଡାକବଙ୍ଗଳା' । ମନର ସବୁ ସାହସ ଫେରିଆସିଲା । ଚାଲିଣ୍ଟେ ଚାଲିଣ୍ଟେ ପାଦ ପକାଇ ଆଗେଇଗଲି । ଥୋଡ଼ାବାଟ ଗଲା ପରେ ଦେଖିଲି ଡାକ ବଙ୍ଗଳା । ଚାରିଆଡ଼େ ନିର୍ଜନ, ଚୌକିଦାରର ଚିହ୍ନବର୍ତ୍ତୀ ନାହିଁ ।

ଚୌକିଦାର, ହୋ ଚୌକିଦାର—ଯେତେ ପାଟିକରି ଡାକିଲି, କାହାରି ସ୍ୱର ଶବ୍ଦ ନାହିଁ ।

ସବୁ ରାଗ ଯାଇ ପଡ଼ିଲା ଚୌକିଦାର ଉପରେ । ମନେ ମନେ ଚୌକିଦାରର ଚାକିରି ନେବା ସଙ୍କଳ୍ପକରି ପିଣ୍ଡାକୁ ଉଠି ଦେଖିଲି ଗୋଟିଏ ବାଁଶଚଟା ମେଲା ଅଛି । ଦୁଆର ଠେଲି ଭିତରକୁ ଗଲି । ଜିନିଷପତ୍ର ରଖିଦେଇ ଶୋଇବା ଯୋଗାଡ଼ କରିବାକୁ ଯାଇ ଦେଖିଲି, ଘୋଡ଼ିହେବା ପାଇଁ କିଛି ଆଣିନାହିଁ । ଅଗତ୍ୟା ଡରମାଡ଼ୁଥିଲେ ବି ବାହାରିଲି ପୁଣି ମଟର ଆଡ଼େ; କିନ୍ତୁ ଘରୁ ବାହାରିବା ମାତ୍ରେ ଶୁଣିଲି କୌଣସି ଜନ୍ତୁର କରୁଣ ଆର୍ତ୍ତନାଦ ଅତି ନିକଟରେ । କବାଟ କିଳିଦେଇ ଅଗତ୍ୟା ଘରେ ରହିଲି । କିଛିକ୍ଷଣ ଧରି ଚାଲିଲା ଦୁଇ ଜନ୍ତୁ ମଧ୍ୟରେ ଭୀଷଣ ଯୁଦ୍ଧର ଶବ୍ଦ । ତା ପରେ ସବୁ ଶୁନ୍‌ଶାନ । କିଏ ଗୋଟାଏ କ'ଣ ଘୋଷାରି ଘୋଷାରି ଯେମିତି ଦୂରକୁ ଚାଲିଗଲା ।

ବିସ୍କୁଟ ଟିଣ ଖୋଲି ସେଥିରୁ ଅଧେ ବିସ୍କୁଟ ଖାଇ ପେଟେ ପାଣି ପିଇ ଖଟ ଉପରେ ଗଡ଼ିପଡ଼ିଲି । ଝରକା ପାଖରେ ଶୁଭୁଥାଏ ମଝିରେ ମଝିରେ କାହାର ଧୀର ପଦକ୍ଷେପ ଏବଂ ଦୀର୍ଘନିଃଶ୍ୱାସ । ଭୟରେ ଶ୍ୱାସ ରୋଧହୋଇ ଆସିଲା, ନିଦ ମାଡ଼ିଲା ନାହିଁ ।

ବିସ୍କୁଟ ଟିଣରେ ଗୁଡ଼ାହୋଇଥିବା ଖବର କାଗଜଟା ନେଇ ଶୋଇ ଶୋଇ ପଢ଼ିବାକୁ ଚେଷ୍ଟାକଲି ମନରୁ ଭୟ ଦୂର କରିବାକୁ । ଖବରକାଗଜ ଖୋଲିବା ମାତ୍ରକେ ଗୋଟାଏ ଅଦ୍ଭୁତ ଫୋଟୋ ମୋର ଦୃଷ୍ଟି ଆକର୍ଷଣ କଲା । ବିରାଟ ସମୁଦ୍ର, ଆଉ ସେ ସମୁଦ୍ର ଭିତରୁ ବାହାରିଛି ଗୋଟାଏ ବିରାଟ ନାଡ଼ ଓ ତା ଉପରେ ଫୁଟିଛି ଗୋଟାଏ ବିରାଟ ପଦ୍ମଫୁଲ—ଠିକ୍ ଯେମିତି ମହାଶୂନ୍ୟରେ ବିଷ୍ଣୁ ଯୋଗନିଦ୍ରାଭିଭୂତ, ତାଙ୍କର ନାଭିଦେଶରୁ ବାହାରିଛି ଗୋଟାଏ ନାଡ଼ ଏବଂ ନାଡ଼ ଉପରେ ଫୁଟିଛି ଗୋଟିଏ ପଦ୍ମ । ସେ ପଦ୍ମ ଉପରେ ଚତୁରାନନ ବସି ଚାରିମୁଖରେ ଗମ୍ଭୀର ନାଦରେ ଉଚ୍ଚାରଣ କରୁଛନ୍ତି ଓଁ ଓଁ ଓଁ । ସେ ଶବ୍ଦ ତରଙ୍ଗରେ ବିସ୍ମିତ ଲାଭକରିବା ସଙ୍ଗେ ସଙ୍ଗେ ବୁଦ୍‌ବୁଦ ପରି ଭାସିଉଠୁଛି କେତେ ସୂର୍ଯ୍ୟ, କେତେ ଗ୍ରହ, କେତେ ତାରା ! ଖବରକାଗଜର ଛବି ତଳେ ଲେଖା ହୋଇଛି ଦେଖିଲି—ଉଦ୍‌ଜାନ ବୋମା ପରୀକ୍ଷା । ମନରେ ଗୋଟାଏ ଖାଲି ବିତୃଷ୍ଣା ଜାତହେଲା । କାହିଁକି ଧ୍ୱଂସର ଏ ତାଣ୍ଡବଲୀଳା କରି ମଣିଷ ଗର୍ବ ଅନୁଭବ କରୁଛି କି ? କିମ୍ବା ଏପରି ହୋଇପାରେ ସୃଷ୍ଟିର ନିୟମ ସହିତ ଏହାର ଘନିଷ୍ଠ ସମ୍ବନ୍ଧ ଅଛି ! ଧୀରେ ଧୀରେ ମିଶେ କାଳ ଅନନ୍ତ କାଳରେ । କାଳର ମହାସମୁଦ୍ରରେ କେତେ ତରଙ୍ଗ ଉଠି ପୁଣି ସେଇଥିରେ ଲୀନ ହେଉଛି । କିଏ ଖୋଜି ପାଇବ ତାହାର କାରଣ କ'ଣ !

ଆଖି ସାମନାରେ ଭାସିଉଠିଲା ମହାଶୂନ୍ୟରେ ଗୋଟାଏ ବିରାଟ ଚକ । ପିଲାଦିନରେ ଆମ ଗାଁର ଇଷ୍ଟଦେବ ରାଧାକାନ୍ତଙ୍କ ମନ୍ଦିରରେ ରାସପୂର୍ଣ୍ଣିମା ଦିନ ରାସକ୍ରୀଡ଼ାର ଯେମିତି ଚକ ଦେଖିଥିଲି ସେମିତି ଗୋଟିଏ ଚକ । ସେ ଚକର ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ଖୋପ ହୋଇଛି । ଚକଟି ମହାଶୂନ୍ୟରେ ବୁଲିବାକୁ ଲାଗିଲା । ବୁଲୁ ବୁଲୁ ଗୋଟିଏ ଖୋପ

ମୋ ଆଖି ସାମନାକୁ ଆସିଲା । ସେ ଖୋପରେ ପଦ୍ମାସନରେ ବସିଛନ୍ତି ଗୋଟିଏ ସୌମ୍ୟ ଯୁବକ । ଆଖି ଧ୍ୟାନମଗ୍ନ, ଅଧରର ଏକ ପ୍ରାନ୍ତରେ ଟିକଏ ହସ ଲାଗିରହିଛି । ପିନ୍ଧିଛନ୍ତି ଗୋଟିଏ ହଳଦିଆ ଲୁଗା ଏବଂ ଦେହରେ ସେଇ ରଙ୍ଗର ଗୋଟିଏ ଚଦର । ମୁଣ୍ଡର କୁଞ୍ଚକୁଞ୍ଚିଆ ବାଳଗୁଡ଼ିକ ଟେକା ହୋଇ ଠିକ୍ ତାଙ୍କ ଉପରେ ଜୁଡ଼ା ବନ୍ଧାହୋଇଛି । ବାଁ ହାତଟି ବାଁ ଆଣ୍ଠୁ ଉପରେ ନ୍ୟସ୍ତ । ଡାହାଣ ହାତର ପାପୁଲିଟି ଉଠାଇ ସେ କଅଣ କହିବାକୁ ଲାଗିଲେ ମୁଁ ବୁଝିପାରିଲି ନାହିଁ । ବୁଝିବାକୁ ଚେଷ୍ଟା କରୁ କରୁ ଚକଟି ବୁଲିଗଲା । ଏଥର ମୋ ଆଖି ସାମନାକୁ ଯେଉଁ ଖୋପ ରହିଲା, ସେଥିରେ ଛିଡ଼ା ହୋଇଛନ୍ତି ଏକ ଗୌରକାନ୍ତ ପୁରୁଷ । ମୁହଁରେ ଦାଢି ନିଶ । ମୁଣ୍ଡର ଲମ୍ବା ଲମ୍ବା ବାଳଗୁଡ଼ିକ କାନ୍ଧ ଉପରେ ପଡ଼ିଛି । ପିନ୍ଧିଛନ୍ତି ରକ୍ତବର୍ଣ୍ଣର ଗୋଟିଏ ଆଲ୍‌ଖାଲ୍ଲା । କାନ୍ଧରେ ଧରିଛନ୍ତି ସେ ଗୋଟିଏ ବଡ଼ ଛକ କାଠ । ଦୃଷ୍ଟି ତାଙ୍କର ଉପରକୁ । ସେ ମଧ୍ୟ ହାତ ଟେକି କଅଣ କହିବାକୁ ଲାଗିଲେ । ଚକ ପୁଣି ଘୂରିଗଲା । ଏଥର ଆଖି ସାମନାରେ ଯେଉଁ ଖୋପ ରହିଲା ସେଥିରେ ଛିଡ଼ା ହୋଇଛନ୍ତି ଆଉ ଏକ ପୁରୁଷ । ଉଜ୍ଜ୍ୱଳ ତାମ୍ରବର୍ଣ୍ଣ ଦେହର କାନ୍ତି । ପିନ୍ଧିଛନ୍ତି ଦୁଗ୍ଧଧବଳ ଏକ ଆଲ୍‌ଖାଲ୍ଲା । ମୁଣ୍ଡର ବାଳଗୁଡ଼ିକ ବାବୁରିକଟା ଓ ତା' ଉପରେ ଏକ ଲମ୍ବା ଟୋପି । ମୁହଁରେ ତାଙ୍କର ଏକ ଅପୂର୍ବ ଦୃଢ଼ତା ଫୁଟିଉଠିଛି । ସେ ମଧ୍ୟ କଅଣ କହିବାକୁ ଲାଗିଲେ । ଚକ ପୁଣି ଘୂରିଗଲା, କେତେ ଯେ ଖୋପ ! ଆଉ କେତେ ଯେ ମଣିଷ ! ଚକ ଘୂରୁଛି ତ ଘୂରୁଛି । ଏକ ଅପୂର୍ବ ବଂଶୀଧ୍ୱନି ଭାସିଆସିଲା ଏବଂ ତା ସହିତ ନୂପୁର-ନିକ୍ୱଣ, ଝୁମ୍ ଝୁମ୍, ଝୁମ୍ ଝୁମ୍ । ସେ ବଂଶୀଧ୍ୱନିରେ ଦୁର୍ବାର ଆହ୍ୱାନ; ସେ ନୂପୁର-ନିକ୍ୱଣରେ ଅବଗମ ଅଭିସାର ।

ନୂପୁରର ଶବ୍ଦରେ ନିଦ ହଠାତ୍ ଭାଙ୍ଗିଗଲା । ଧଡ଼ପଡ଼ ହୋଇ ବିଛଣାରେ ଉଠି ବସିଲି; କିନ୍ତୁ କି ଆଶ୍ଚର୍ଯ୍ୟ ! ଏ ତ ସ୍ୱପ୍ନର ଶବ୍ଦ ନୁହଁ ! ନୂପୁରର ଶବ୍ଦ ଏପର୍ଯ୍ୟନ୍ତ ଶୁଭୁଛି । ଆଖି ମଳି କାନଡ଼େରି ଶୁଣିଲି । ନା, ଏ ତ ସ୍ୱପ୍ନ ନୁହଁ । ଝରକା ତଳେ ସ୍ପଷ୍ଟ ସେ ଶବ୍ଦ ଶୁଣିବାକୁ ପାଇଲି । କେତେବେଳେ ଦ୍ରୁତ, କେତେବେଳେ ଧୀର । ତା ସହିତ କାହାର ଦୃଢ଼ ପଦକ୍ଷେପ ମଧ୍ୟ ଶୁଭିଲା । ଭୟରେ ରୁମ ଟାଙ୍କୁରି ଉଠିଲା । ବନ୍ଧୁକ ଧରି ଖଟ ଉପରେ ବସିଲି ।

ହଠାତ୍ ଧଡ଼ କରି ଘରର କବାଟ ଖୋଲିଗଲା । ଚମକିପଡ଼ି ଚାହିଁଲି ସେଆଡେ । ଘରେ ପ୍ରବେଶ କଲା ଏକ କଦାକାର ପୁରୁଷ ମୂର୍ତ୍ତି । ଆଖି ଓ ମୁହଁରେ ତାର ଯୌନ ଲାଳସାର ଭାବ ସୁସ୍ପଷ୍ଟ । ତା' ପଛରେ ପ୍ରବେଶ କଲା ଗୋଟିଏ ସୁନ୍ଦରୀ ଯୁବତୀ । ସେ କଦାକାର ପୁରୁଷଟା ଯୁବତୀକୁ ଠେଲି ତଳେ ପକାଇଦେଲା; କିନ୍ତୁ ଯୁବତୀଟି ତଳେ ପଡ଼ିଯାଇ ନୀରବରେ ହସିବାକୁ ଲାଗିଲା ।

ଭୟରେ ଚିତ୍କାର କରିଉଠିଲି···କିଏ ସେ ?

କଦାକାର ପୁରୁଷଟା ମୋ ଆଡେ଼ ଚାହିଁ ବିକଟ ଚିତ୍କାର କରି ହସି ଉଠି କହିଲା, ଚୁପ୍ ରହୋ ଶାଲେ ।

ତା’ପରେ ଶୁଭିଲା ବୁଢ଼ିଙ୍କର କାରୁଣ୍ୟପୂର୍ଣ୍ଣ ଯୌନଙ୍ଗୀତା ।

ଆରେ ଏ ଯେ ସୁରମା !! ସୁରମା ? ତୁମେ !

ପୁରୁଷଟା ମୋ ଆଡ଼େ ଚାହିଁ ମୁରୁକ ମୁରୁକ ହସି ଚାଲିଗଲା । ମୁଣ୍ଡଟା ଗରମ ହୋଇଗଲା । ଆଖି ମଳି ଚାହିଁ ଦେଖିଲି କେହି ନାହାନ୍ତି । ଏ କ’ଣ ସ୍ୱପ୍ନ ନା ଭୌତିକ କାଣ୍ଡ ନା ବାସ୍ତବ ଘଟଣା ! ଅନାଇ ଦେଖିଲି କବାଟ ପୂର୍ବପରି ବନ୍ଦ ।

ହଠାତ୍ ପୁଣି ଥରେ କବାଟ ଖୋଲିବାର ଶବ୍ଦରେ ଚମକିପଡ଼ିଲି । ଏଥର କବାଟଟା ବିକଟ ଶବ୍ଦରେ ଖୋଲିଗଲା । ପ୍ରବେଶ କଲା ସେହିପରି ଗୋଟାଏ କଦାକାର ପୁରୁଷ । ତା’ର ଦନ୍ତୋଷ୍ଠ ଠେଲି ପଦାକୁ ବାହାରିଛି ଦୁଇଟା ମୂଳଆ ଦାନ୍ତ । ପୂର୍ବର ପୁରୁଷଟା ସହିତ ଏହାର ଅନେକ ସାମଞ୍ଜସ୍ୟ ଅଛି । କଦାକାର ପୁରୁଷଟା ଆଉ ଗୋଟିଏ ସୁନ୍ଦର ଯୁବକକୁ ଠେଲି ତଳେ ପକାଇଦେଇ ଚାବୁକରେ ତାକୁ ନିର୍ମମଭାବରେ ପ୍ରହାର କରିବାକୁ ଲାଗିଲା ।

ଆରେ, ଏ ଯେ ଦାମୋଦର !

ଦାମୋଦର ! ବ୍ୟାପାର କ’ଣ ? କାହିଁକି ଏ କଦାକାର ପୁରୁଷଟା ତୁମକୁ ମାରୁଛି ? ସଭୟେ ପଚାରିଲି ।

କେଜାଣି, ତୁମେ ଜାଣିଥିବ—ଦାମୋଦର କହିଲା ।

ବାଃ ! ମୁଁ ଜାଣିବି କେମିତି ? ସୁରମା ତୁମକୁ ଭଲପାଇ ବାହା ହେଲା, ସେଥିରେ ମୋର କଅଣ କ୍ଷତି ହେଲା ? ଭଗବାନ ମୋତେ ସୁରମା କବଳରୁ ବଞ୍ଚାଇଛନ୍ତି । ସୁରମାର ଚରିତ୍ର ବିଷୟରେ ଯଥେଷ୍ଟ ପ୍ରମାଣ ପାଇସାରିଚି । ଆଉ ତୁମେ ମୋ’ଠୁ ବେଶି ଉନ୍ନତି କଲ; ସେଥିରେ ମୋର ତ କିଛି କ୍ଷତି ନାହିଁ, ମୁଁ କାହିଁକି ହିଂସା କରିବି ?

କେଜାଣି କହି ଦାମୋଦର —ଶୂନ୍ୟରେ ମିଳେଇଗଲା । ସେ ପୁରୁଷଟା ମଧ୍ୟ କୁଆଡ଼େ ମିଳେଇଗଲା । ଅନେଇ ଦେଖିଲି ମୋର ଖଟ ଉପରେ ପଡ଼ିଛି ସେ ଚାବୁକଟା । ଦୁଆର ଆଡ଼କୁ ଚାହିଁ ଦେଖିଲି ଦୁଆର ପୂର୍ବ ପରି ବନ୍ଦ । ପ୍ରଚଣ୍ଡ ଶୀତରେ ମଧ୍ୟ ଦେହରୁ ଝାଳ ବାହାରି ମୋର ଜାମା ଭିଜିଗଲା ।

ପୁଣି ଦୁଆର ଖୋଲିବାର ଶବ୍ଦ । ଗୋଟାଏ ପ୍ରକାଣ୍ଡ ମଟର ଦୁଆର ସାମନାରେ ଏଥର ଛିଡ଼ାହେଲା । ସେଥିରୁ ବାହାରିଲେ ଏକ ଯୁବକ । ପିନ୍ଧିଛନ୍ତି ସିଲ୍‌କ ପେଣ୍ଟ ଜାମା । ହେଲେ ଆଖିରେ ପ୍ରକାଶ ପାଉଚି କାଙ୍ଗାଲଙ୍କ ପରି ଲୋଭ—କେଉଁଠି ଯେପରି ପୂର୍ବର କଦାକାର ପୁରୁଷମାନଙ୍କ ସହିତ ସାଦୃଶ୍ୟ ଅଛି । ଯୁବକ ପଛରେ ପ୍ରବେଶ କଲେ ଅନେକ ଲୋକ, କାହାରି ହାତରେ ଥାଳଭର୍ତ୍ତି ନାନା ସୁଖାଦ୍ୟ । ଖାଦ୍ୟର ସୁଗନ୍ଧରେ ଘରଟି ମହକି ଉଠିଲା । ଆଉ କେତେକ ବୋହିଆଣିଲେ କେତେ ପ୍ରକାରର ବିଳାସ ସାମଗ୍ରୀ । ଯୁବକଟି ପ୍ରତ୍ୟେକ ପଦାର୍ଥ ତୃପ୍ତିର ସହିତ ଦେଖୁ ଦେଖୁ କହିବାକୁ ଲାଗିଲା, ଆହୁରି ଆଣ, ଆହୁରି ଦିଅ, ଦେଶସେବା-ଫେବା ବାଜେ କଥା, ଚାକିରି ଆଉ ଥାଉ ସବୁ କରିଯିବି । ମୁଁ ବିଛଣା ଛାଡ଼ି ଉଠିଲି ଦେଖିବାକୁ । ପାଖରେ ପହଞ୍ଚୁ ନ ପହଞ୍ଚୁଣୁ ସବୁ ମିଳେଇଗଲା । ଆଶ୍ଚର୍ଯ୍ୟ ହୋଇ

ଘୁଞ୍ଚି ରହିଲି କବାଟ ଆଡ଼େ । କବାଟ ପୂର୍ବ ପରି ବନ୍ଦ ରହିଛି । ମୁଁ ପାଗଳ ହୋଇଯାଇ ନାହିଁ ତ ! ଏ ଘରଟା କଅଣ ଭୂତଙ୍କ ଆଡ଼୍‌ଡା !

ପୁଣି କବାଟ ଖୋଲିବାର ଶବ୍ଦ । ଏଥର ପ୍ରବେଶ କଲେ ଆଉ ଏକ ଯୁବକ । ଉଲଗ୍ନ ଯୁବକ । ଏ ଯୁବକ ମଧ୍ୟ ଦେଖିବାକୁ ପୂର୍ବର ପୁରୁଷମାନଙ୍କ ପରି, ଯଦିଓ କଦାକାର ନୁହେଁ । ପ୍ରବେଶ କରିବା ମାତ୍ରକେ ଯୁବକ ତର୍ଜମା ଦେଲାଇ କାହାକୁ କହିବାକୁ ଲାଗିଲା, ଜାଣ ମୁଁ କିଏ ? ମୁଁ ସର୍ବଜୟୀ । ମୁଁ ମହାନ୍ ଗଣନେତା । ମୁଁ ବାହୁବଳରେ ପୃଥିବୀ ଗ୍ରାସ କରିଦେଇପାରେ, ଅର୍ଥବଳରେ ସମସ୍ତଙ୍କୁ ବଶୀଭୂତ କରିପାରେ, ଜ୍ଞାନବଳରେ ମୁଁ ସମସ୍ତଙ୍କର ସମ୍ମାନର ପାତ୍ର । ମୋ ଭଦ୍ରତାବଳରେ ସମସ୍ତଙ୍କ ଶ୍ରଦ୍ଧା ଆକର୍ଷଣ କରିପାରେ । ମୋପାଇଁ ଦେଶ ଆଜି ପୃଥିବୀରେ ପରିଚିତ । ଦେଶ ବୋଇଲେ ମୁଁ ।

ମୁଁ ? ସଭୟରେ ପଚାରିଲି ।

ହଁ । ଦର୍ପିତ ପଦରେ ଯୁବକ ଯେଉଁ ବାଟରେ ଆସିଥିଲା ସେହି ବାଟରେ ଚାଲିଗଲା ।

ଆଶ୍ଚର୍ଯ୍ୟ ! କଅଣ କରିବାକୁ ଚାହାଁନ୍ତି ଏମାନେ ? ଏମାନେ କଅଣ ଭୂତ ନା ଜୀବନ୍ତ ? କିଏ ଏମାନେ ?

ଗୋଟାଏ ପେଚା ଗଛଡ଼ାଳରୁ ପାଟିକରି ଉଠିଲା, ତୁମ୍ ତୁମ୍ ତୁମ୍ ।

ତା'ପରେ କଅଣ ହୋଇଚି ଜାଣେନା । ମୂର୍ଚ୍ଛିତ ହୋଇ ବିଛଣା ଉପରେ ପଡ଼ି ଯାଇଥିଲି ଏତିକି ମାତ୍ର ଖିଆଲ ଅଛି ।

□□□

## ମାଦଳାପାଞ୍ଜି

ଠିକ୍ ଯେତେବେଳେ ରାତି ବାରଟା ବାଜେ ସେତେବେଳେ ସିନେମାର ଦ୍ୱିତୀୟ ଶୋ ସରିଯାଏ ଏବଂ ରାତିର ନିସ୍ତବ୍ଧତା ଭେଦକରି ସିନେମା ହଲ୍ ଆଡ଼ୁ ଭାସିଆସେ ରେକର୍ଡ଼ ସଙ୍ଗୀତ, ହରେ ମୁରାରେ ମଧୁକୈଟଭାରେ ଗୋପାଳ ଗୋବିନ୍ଦ ମୁକୁନ୍ଦ ସୌରେ, ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୋ ନିରାଶ୍ରୟ ମାଂ ଜଗଦୀଶରକ୍ଷ । ସିନେମା ଶେଷରେ ଏଇ ରେକର୍ଡ଼ଟି ନିଇତି ବାଜେ । ଭାରି ସୁନ୍ଦର ଉଦାସିଆ ସୁରଟିଏ । ଠିକ୍ ସେତିକିବେଳେ କଇଦଖାନାର ଘଣ୍ଟା କର୍କଶ ସ୍ୱରରେ ବାଜିଉଠେ ଟଂ ଟଂ ଟଂ…

ବିଜନ ବାବୁଙ୍କର ଏତିକିବେଳେ ଠିକ୍ ନିଦ ଭାଙ୍ଗିଯାଏ । ଆଜି ମଧ୍ୟ ଭାଙ୍ଗିଗଲା । ସେ ଉଠି ମୁହଁ ହାତ ଧୋଇ ଲେଖିବସିଲେ ଡାଏରି, ଡାଏରି ତ ନୁହଁ, ମାଦଳାପାଞ୍ଜି । ସେ ଦିନକ ଭିତରେ ଯାହା ଘଟିଥାଏ ସବୁ ସେଥିରେ ସ୍ଥାନ ପାଏ । ଧୀରେ ପଦଚାରଣା କରୁ କରୁ

ସେ ଭାବିବାକୁ ଲାଗିଲେ ଆକାଶକୁ ଚାହିଁ, ଦିନଟି ଯାକର ଘଟଣାଗୁଡ଼ିକ । ଆକାଶରେ ସପ୍ତତାରକା-ସମନ୍ୱିତ ବିରାଟ ପ୍ରଶ୍ନବାଚକ ଚିହ୍ନଟି ଝୁଲୁଚି ଓ ତାଙ୍କ ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଚି । ଅଧର ପ୍ରାନ୍ତରେ ଟିକିଏ ହସ ଖେଳିଗଲା ତାଙ୍କର । ସମସ୍ତ ଘଟଣାଗୁଡ଼ିକ ମନେ ମନେ ରୋମନ୍ଥନ କରୁ କରୁ ସେ ଅନୁଚ୍ଚକଣ୍ଠରେ କହିଲେ, ମନୁଷ୍ୟ ପ୍ରତ୍ୟେକ ଘଟଣାର ଗୋଟାଏ କାରଣ ଖୋଜିବାକୁ ଚେଷ୍ଟାକରେ । କିଛି ଗୋଟାଏ କାରଣ ସ୍ୱରୂପ ପାଇଗଲେ ସେ ଖାଲି ଆତ୍ମପ୍ରସାଦ ପାଏନାହିଁ, ନିଜକୁ ନିର୍ବିପଦ ମଣେ; କିନ୍ତୁ ଜୀବନରେ ଘଟଣା ପରେ ଘଟଣା ଘଟିଯାଏ । କୌଣସିଟି ସହିତ ଅନ୍ୟ କୌଣସିଟିର କାର୍ଯ୍ୟ କାରଣ ସମ୍ବନ୍ଧ ଖୋଜିବା ବୋଧହୁଏ ମୂର୍ଖତା । ଜୀବନ କେବଳ କେତେଗୁଡ଼ିଏ ଘଟଣାକୁ ବାଛି ଗୋଟିଏ ସୂତାରେ ଗୁନ୍ଥି ଭିନ୍ନ ଭିନ୍ନ ମାଳାକରି ରଖେ ।

କଥାଟି ତାଙ୍କ ମନକୁ ପାଇଲା । ତା ପରେ ଦିନର ଘଟଣାଗୁଡ଼ିକ ଲେଖିବା ପୂର୍ବରୁ ଟିପେଇକ ଲେଖି ରଖି ସେ ଆରମ୍ଭ କଲେ···

···ସାଢେ ଦଶଟା ବାଜିଗଲାଣି । ଟ୍ରେନଟା ଗଡ଼ିଚାଲିଚି । ଆଜି ଦଶଟି ଫୌଜଦାରୀ ମକଦ୍ଦମାର ଶୁଣାଣି ଅଛି । ଅନ୍ତତଃ ପନ୍ଦରଟି ସାକ୍ଷୀର ଜେରା ଓ ଜବାନବନ୍ଦୀ ନିଆହେବ । ବାଟରେ ଦେଖିଲି ଦୁଇଟି ମୁଦାଲାକୁ ବାନ୍ଧି ଦୁଇଟି ପୁଲିସ୍ କନେଷ୍ଟବଲ ଚାଲିଛନ୍ତି ତରତର ହୋଇ । କନେଷ୍ଟବଲ ଦୁଇଜଣଙ୍କ ମଧ୍ୟରେ ରଗାରଗିରେ କଥାବାର୍ତ୍ତା ଚାଲିଚି । ଜଣେ କହୁଚି, ଯା ଯାଃରେ, ତୋର ମାଇପ ପରା ମୋ ଘରକୁ ସେଦିନ ଆସିଥିଲା ଯେ ମୋର ପୁଅର ପେଣ୍ଟୁଟି ଲୁଚେଇ ନେଇଗଲା, ତୁ କଅଣ ବେଶୀ ହଉଚୁ···ତୋ କଥା କହିବ ତ ସରିବ ନାହିଁ ।

ଏ କଥାରେ ଅନ୍ୟ ଜଣକ ଭୀଷଣ ରାଗିଯାଇ ହାତ ହଲେଇ ଅନର୍ଗଳ ବକିଚାଲିଲା ତା'ର ସାଧୁତାର ନାନା ଉଦାହରଣ, ଆଉ ମଝିରେ ମଝିରେ ଅନ୍ୟ ପ୍ରତି ଗାଳି ମଧ୍ୟ ବର୍ଷୁଥାଏ ।

ମୁଦାଲା ଦୁଇଜଣଙ୍କ ହାତରେ ହାତକଡ଼ି, ଅଣ୍ଟାରେ ଦଉଡ଼ି । ଦଉଡ଼ିର ଅଗ୍ରଟି ପଛରେ ଯାଉଥିବା କନେଷ୍ଟବଲଟି ଧରିଚି । ରାଗରେ ସେ ଦଉଡ଼ିଟି ଏ ହାତରୁ ସେ ହାତ ପର୍ଯ୍ୟନ୍ତ ଥର କରୁଚି । ଆଗରେ ଯାଉଥିବା କନେଷ୍ଟବଲ ଜଣକ ବାରମ୍ବାର ବୁଲିପଡ଼ି ପଛ-ବାଲାକୁ ଗାଳି କରିବାରେ ଲାଗିଚି । ବାଟଯାକ ଠାଏ ଠାଏ ଠିଆହୋଇ ଚାଲିଚନ୍ତି ସମସ୍ତେ ।

ଏମିତି କଲେ ଉଛୁର ହୋଇଯିବ ଯେ ! ବେଳ ହୋଇଗଲାଣି । ହାକିମ ରାଗିବ ଯେ । ଘର କଲେ ସେମିତି ହୋଇଥାଏ । ସେଥିରେ ଏତେ ରାଗିଲେ ଚଳିବ ? କେତେଦିନ ଏ ଦୁନିଆରେ ରହିବା ଯେ ଏତେ କଳି···ଜଣେ ମୁଦାଲା ଆଗ କନେଷ୍ଟବଲଟିକୁ ବୁଝାଇ କହିଲା ।

କନେଷ୍ଟବଳ ରାଗିଯାଇ କହିଲା, କଅଣ କହୁଚ ହୋ ! ତୁମେ ତ ଚାରିଥର ଚୋରି କେସ୍‌ରେ ଧରାହେଲଣି । କହିଲ ଭଲ, ଏମିତି କେହି ଚୋରି କରନ୍ତି ! ଏଟା ତୁମକୁ ସମ୍ଭବ ଲାଗୁଚି ତ— ଖାଲି କହିଦେଲେ ହେଲା କି ?

ମୁଦାଲି ଜଣକ ଟିକିଏ ହସି କହିଲା, ନା-ନା, ସେମିତି ଚୋରିକୁ ଭାରି ହାତସଫେଇ ଦରକାର···

ଏଟମ୍ ବୋମା ଉଦ୍ଭାବନ ଗୋଟିଏ ଅଦ୍ଭୁତ ଘଟଣା ସତ, କିନ୍ତୁ ଏ ଘଟଣାଟି ମଧ୍ୟ କମ୍ ଅଦ୍ଭୁତ ନୁହଁ ତ !

ଗମ୍ଭୀରଭାବରେ ସେମାନଙ୍କୁ ଆଗେଇଗଲି । ମନରେ କିନ୍ତୁ ଭାରି ହସ ମାଡୁଥାଏ । ମୋତେ ଦେଖି ସେମାନଙ୍କର କଳହ ହଠାତ୍ ବନ୍ଦ ହୋଇଗଲା । ଦୁଇଜଣ କନେଷ୍ଟବଳ ଜାଭ କାମୁଡ଼ି ଛିଡ଼ା ହୋଇପଡ଼ି ସେଲ୍ୟୁଟ୍ କଲେ । ଗମ୍ଭୀରଭାବରେ ମୁଣ୍ଡ ଟୁଙ୍ଗାରି ଚାଲିଗଲି ।

କୋର୍ଟରେ ଚୌକିରେ ବସିବା ମାତ୍ରକେ ପେସ୍କାର ତାଡ଼ାଏ ମକଦ୍ଦମା ନଥି ସାମନାରେ ରଖିଦେଲେ ।

ଡାକନ୍ତୁ ପକ୍ଷମାନଙ୍କୁ, ପ୍ରଥମରୁ ଗୋଟାଏ ନଥି ଧରି ଆଦେଶ ଦେଲି ।

× × × ×

ଜମାନବନ୍ଦି ସରିଲଣି । ଜେରା ଚାଲିଚି ତ ଚାଲିଚି । ଲେଖି ଲେଖି ହାତ ବଥେଇଲଣି; କିନ୍ତୁ ଓକିଲର କ୍ଳାନ୍ତି ନାହିଁ କି ସାକ୍ଷୀର ମଧ୍ୟ କ୍ଳାନ୍ତି ନାହିଁ । ଚଷମାକୁ ଥରେ କାଢ଼ି ମୁଣ୍ଡ ନୁଆଁଇ କପାଳରେ ଦୁଇ ତିନିଥର ଟିପ ମାରି ପୁଣି ମୁଣ୍ଡ ଟେକି ସାକ୍ଷୀଆଡ଼କୁ ଗୋଟାଏ କ୍ରୂର ଦୃଷ୍ଟି ନିକ୍ଷେପ କରି ଓକିଲ ଗୋଟିଏ ପ୍ରଶ୍ନବାଣ ଛାଡ଼ୁଛନ୍ତି । ଓକିଲ ଡାଳେ ଡାଳେ ଗଲେ ସାକ୍ଷୀ ଯାଉଚି ପତ୍ରେ ପତ୍ରେ । ନିର୍ବିକାର ଭାବରେ ସାକ୍ଷୀ ଏମିତି ଗୋଟାଏ ଉତ୍ତର ଦେଉଚି ଯେ ଓକିଲର ଅକଲ ଗୁଡ଼ୁମ୍ । ଏମିତି ଏକଘଣ୍ଟା ସମୟ ଗଲଣି ଓ ଚୌଦପତର ଜେରା ଲେଖିସାରିଲଣି । ମଝିରେ ମଝିରେ ଦୁଇ ଓକିଲଙ୍କ ମଧ୍ୟରେ କଳି ଏବଂ ପରସ୍ପର ପ୍ରତି କଟୁ ମନ୍ତବ୍ୟ ନିକ୍ଷେପ ଦ୍ୱାରା ସମୟ ଯେ କେବଳ ନଷ୍ଟ ହେଉଚି ତା ନୁହଁ, ମୋ ପକ୍ଷରେ କ୍ରମେ ଧୈର୍ଯ୍ୟ ରଖିବା ଅସମ୍ଭବ ହୋଇପଡ଼ୁଚି । ଆଜି ଦିନରେ ଦଶଟି ମକଦ୍ଦମାର ଶୁଣାଣିରେ ପନ୍ଦରଟି ସାକ୍ଷୀର ଜମାନବନ୍ଦି ଓ ଜେରା ହେବାକୁ ଧାର୍ଯ୍ୟ ଅଛି । ମାତ୍ର ସାତଟି ସରିଚି । ବେଳ ଆସି ହେଲଣି ଦୁଇଟା । ମଝିରେ ମଝିରେ ଅଛି ଅନ୍ୟାନ୍ୟ ବିଭାଗମାନଙ୍କର ଜରୁରି କାମ, ଜିଲ୍ଲା ସାହେବଙ୍କ ଜରୁରି ଡାକରା । ମନ ଦେଇ ଜେରା ଶୁଣି ଲେଖୁ ଲେଖୁ ହଠାତ ଜଣେ କିରାଣି ଆସି କହିଲା, ଗୋଟାଏ ଜରୁରି ତାର ଆସିଚି, କଅଣ କରିବାକୁ ହେବ ଆଦେଶ ଦିଅନ୍ତୁ । ଫାଇଲ ଦେଖି ସେ ବିଷୟ ଚିନ୍ତାକରି ଗୋଟାଏ ନିର୍ଦ୍ଦେଶ ଦେଇ ପୁଣି ମନଦେଇ ଜେରା ଲେଖିଚି କି ନା କିଛିକ୍ଷଣ, ଜିଲ୍ଲା ସାହେବଙ୍କ ଚପରାଶି ଆସି କହିଲା, ସାହେବ ସଲାମ୍ ଦେଇଛନ୍ତି । ଲେଖା ବନ୍ଦକରି ଉଠିଗଲି । ସେଠିକା କାମ ସାରି ଆସି ପୁଣି ବସିଲି ଜେରା ଲେଖିବାକୁ । ମନଟା ଯେମିତି ଗୋଟାଏ ଖୁଣ୍ଟିରେ ବନ୍ଧାହୋଇଥିବା ରବରର

ଫିଙ୍ଗା ଖଣ୍ଡେ । ତାକୁ ଯା'ର ଇଚ୍ଛା ସେତେଦୂର ଜୋରକରି ଟାଣିନେଇ ତାଙ୍କର କାମରେ ନିଯୁକ୍ତ କରି କାମ ସାରି ପୁଣି ଛଟ୍‌କରି ଛାଡ଼ିଦେଉଛନ୍ତି ଏବଂ ସେ ପଟାଂ କରି ଆସି ବାଜୁଛି ସେଇ ଖୁଣ୍ଟିରେ ।

କେତୋଟି ଡାନମାନ କାଳେ, ସେପ୍‌କାର କହିଲେ ବକଲେ, ସ୍ୱୀକାରୋକ୍ତିପାଇଁ ଗୋଟିଏ ଆସାମୀ ପଠାଇଛନ୍ତି ଆଜ୍ଞା !

ମୁଣ୍ଡ ଟେକି ଅନାଇ ଦେଖିଲି ସାମନାରେ ଛିଡ଼ାହୋଇଛି ଏକ ଅଦ୍ଭୁତ ଜୀବ । ମୁଣ୍ଡର ବାଳଗୁଡ଼ିକ ନୁଖୁରା, ଫୁରୁଫୁରୁ ହୋଇ ବଜୁଳି ପଙ୍ଖାରେ ଉଡ଼ୁଛି । ଆଖି ଯୋଡ଼ିକ କୋଟରଗତ । ଗାଲ ପଶିଯାଇ ହନୁହାଡ଼ ଯୋଡ଼ିକ ପର୍ବତ ଚୂଡ଼ା ଭଳି ବାହାରିଛି । ପିନ୍ଧିଛି ଖଣ୍ଡେ ଛିଣ୍ଡା ମଇଳା କନା; ପିଠିରୁ ଫାଳେ ଦିଶୁଛି । ପଞ୍ଜରା-ହାଡ଼ଗୁଡ଼ିକ ଏତେ ପରିଷ୍କାର ଭାବରେ ଦିଶୁଛି ଯେ ଡାକ୍ତରି ଛାତ୍ରମାନଙ୍କ ପଢ଼ିବାପାଇଁ କଙ୍କାଳ ନ ନେଇ ଏକୁ ନେଲେ ଚଳିଯାଆନ୍ତା । ଏପରି ଗୋଟିଏ ଜୀବ କାଖରେ ଗୋଟିଏ ଛୁଆ । ଅଣ୍ଟାରେ ତାର ଦଉଡ଼ି । ସେ ଦଉଡ଼ିକୁ ଧରିଛି ଗୋଟିଏ ପୁଲିସ୍ । ଗୋଟିଏ ହାତରେ ହାତକଡ଼ି, ତାକୁ ଧରିଛି ଅନ୍ୟ ଜଣେ । ମୋର ଇଙ୍ଗିତରେ ସେମାନେ ଦଉଡ଼ି ଓ ହାତକଡ଼ି ଖୋଲି ଚାଲିଗଲେ ।

ଆସାମୀକୁ ଚାହିଁ ରହିଲି କିଛିକ୍ଷଣ ।

ତୋ ନାଁ କଅଣରେ ହେ—ଏ ? ରାଗିଯାଇ ପଚାରିଲି ।

ମନେ ମନେ କହିଲି, ଆସିଲା ଗୋଟାଏ ଫାଲ୍‌ତୁ କାମ ଘଣ୍ଟାଏ ସମୟ ନଷ୍ଟ ହେବ ଏଇକ୍ଷଣି ।

ମୋ ନାଁ ଅଇଣ୍ଠୁ ମଳିକ ।

(ସାକ୍ଷ୍ୟ ପ୍ରମାଣ ଆଇନ ଅନୁସାରେ ପୁଲିସ୍‌ମାନେ ବିଶ୍ୱାସଯୋଗ୍ୟ ନୁହନ୍ତି । ତେଣୁ ପୁଲିସ୍ ଅନୁସନ୍ଧାନ କରୁଥିବାବେଳେ କୌଣସି ଆସାମୀ ଯଦି ଦୋଷ ସ୍ୱୀକାର କରେ, ତେବେ ତାକୁ ଜଣେ ମ୍ୟାଜିଷ୍ଟ୍ରେଟ ପାଖକୁ ପଠାଇ ଦିଆଯାଏ । କାରଣ ପୁଲିସ୍ ଯଦି କୁହେ ଯେ ଆସାମୀ ଦୋଷ ସ୍ୱୀକାର କରୁଛି, ତେବେ ତାହା ବିଶ୍ୱାସଯୋଗ୍ୟ ନୁହେଁ ଏବଂ ତେଣୁ ଗ୍ରହଣୀୟ ନୁହଁ । ଜଣେ ମାଜିଷ୍ଟ୍ରେଟ ପାଖରେ କହିଲେ ତାହା ଗ୍ରହଣୀୟ । ମ୍ୟାଜିଷ୍ଟ୍ରେଟ ତାହା ଲେଖି ରଖନ୍ତି ଏବଂ ବିଚାର ଆରମ୍ଭହେଲେ ସେ ସ୍ୱୀକାରୋକ୍ତି ଗ୍ରହଣୀୟ ହୁଏ । କିନ୍ତୁ ସ୍ୱୀକାରୋକ୍ତି ଲେଖିବା ପୂର୍ବରୁ ଆଇନ ଅନୁସାରେ ନାନା ପ୍ରଶ୍ନ ପଚାରିବାକୁ ହୁଏ, ନାନା କଥା ବୁଝାଇବାକୁ ହୁଏ ପୁଲିସ୍ ଭୟରେ ସ୍ୱୀକାରୋକ୍ତି ଦେଉଛି କି ନା ଜାଣିବାକୁ । ପରେ ଆସାମୀ ବିଚାର ବେଳେ ସେ ସ୍ୱୀକାରୋକ୍ତିରୁ ଓହରିଗଲେ ସ୍ୱୀକାରୋକ୍ତି ଲେଖିଥିବା ମ୍ୟାଜିଷ୍ଟ୍ରେଟଙ୍କୁ ସାକ୍ଷ୍ୟ ଦେବାକୁ ପଡ଼େ ଏବଂ ଜେରା ମଧ୍ୟ ହୁଏ । ତେଣୁ ସ୍ୱୀକାରୋକ୍ତି ଲେଖିବା ଭାରି କଷ୍ଟକର କଥା । ଆସାମୀ ପୁଲିସ୍ ଅନୁସନ୍ଧାନବେଳେ ଦୋଷ ସ୍ୱୀକାର ନ କଲେ ତେଣୁ ମ୍ୟାଜିଷ୍ଟ୍ରେଟମାନଙ୍କୁ ସୁବିଧା ।)

ମନରେ ବରକ୍ତ ଲୁଗୁଇ ନରମ ଭାବରେ ପଗୁରଲ, କରେ ଦୋଷ କରଚୁ ?

ଆଖିରୁ ତାର ଲୁହ ଝରିପଡ଼ଲ। କନ୍ତୁ ଦାନ୍ତ ନକୁଟି ହସି ସେ ମୁଣ୍ଡ ଟୁଙ୍ଗାର କହଲ, ହଁ। କହସାର ସେ ତାର କୋଳର ପିଲାଟିକୁ ଆହୁର ଜାକଧରଲ।

—କଅଣ କରଥିଲୁ ?

—ଚୋର ଆଜ୍ଞା ।

—କଅଣ ଚୋର କରଥିଲୁ ?

—ଭାତ ।

—ଭାତ ? ଭାତ !

—କାହା ଘରୁ ରେ ?

—ପଧାନଙ୍କ ଘରୁ ।

—କାହିଁକ ରେ ?

ଉତ୍ତରରେ କେବଳ ତଳକୁ ମୁହଁ ପୋତ ସେ ଗୁହିଁରହଲ । ଦୁଇବୁନ୍ଦା ଲୁହ କେବଳ ଗଡ଼ିଆସି ଚଉକରେ ବସିଥିବା ଓକଲଙ୍କ କଳାକୋଟ୍ ଉପରେ ପଡ଼ ଗଡ଼ଗଲ।

କନ୍ତୁ ମୋର ବେଳ କାହିଁ ଅପେକ୍ଷା କରବାକୁ। ପଡ଼ରହଚ ଆହୁର ଅନେକ କାମ। ବାହାରେ ଅପେକ୍ଷା କରୁଛନ୍ତି ଆହୁର କେତେ ସାକ୍ଷୀ; ଭିତରେ ବସିଚନ୍ତି ତାଙ୍କ ଓକଲମାନେ ।

ଆଇନ ଅନୁସାରେ ତାକୁ ବୁଝାଇବାକୁ ଲଗିଲ ; ତୋର ଦୋଷ ସ୍ୱୀକାର କରବା ଦରକାର ନାହିଁ। ଦୋଷ ସ୍ୱୀକାର କରବାକୁ କେହ ତୋତେ ବାଧ କରପାରବେ ନାହିଁ। ମୁଁ ଜଣେ ମାଜିଷ୍ଟ୍ରେଟ ଏବଂ ତେଣୁ ମୋ ପାଖରେ ଦୋଷ ମାନଲେ ତାହା ତୋ ବପକ୍ଷରେ ଯିବ ; ତୁ କାହାରକ ଭୟ କରନା ଇତ୍ୟାଦ ଇତ୍ୟାଦ। ·

କନ୍ତୁ ଲୋକଟିର ଗୋଟିଏ ମାତ୍ର କଥା—ଆଜ୍ଞା ମୁଁ ଚୋର କରଚ । ଉତ୍ତର ଶୁଣି ମନେ ମନେ କହଲ, ହ୍ୟାପ୍, ଆସିଲ ଗୋଟିଏ ମୂର୍ଖଙ୍କର ମୋତେ ହଇରାଣରେ ପକାଇବାକୁ। ଏଇଛୁଣିକା ଘଣ୍ଟାଏ ଧର ନାନା ପ୍ରଶ୍ନ ଲେଖ ଏବଂ ତାର ଉତ୍ତର।

ରାଗ ଯାଇ ପଡ଼ଲ ପେସ୍କାର ଉପରେ—ଛାଡ଼ା ହୋଇଚନ୍ତି କଅଣ ? ଆଣନ୍ତୁ ନା ସ୍ୱୀକାରୋକ୍ତି ଫାରମ ।

ପେସ୍କାର ତରବର ହୋଇ ଫାରମ ଦେଲେ। ଘଣ୍ଟାଏ ଧର ଲେଖିଲ ନାନା ପ୍ରଶ୍ନ ଏବଂ ତାର ଉତ୍ତର ।

ଲେଖିସାର କାଗଜ ଫୋପାଡ଼ ଦେଇ ଡାକଲ ପୁଲିସବାଲାମାନଙ୍କୁ। କହଲ, ନେଇଯାଅ, କାଲ ଫେର୍ ଆଣିବ। ଆଜ ତାକୁ ବୁଝାଇଲ ସବୁ। ସେ ଚନ୍ତାକର କାଲ କହବ ।

—'ଆଜ୍ଞା, ଆଉ ଖବର କଅଣ । ଶ୍ଵେକରେ କଣପକେଇଚ । ଏଇସ୍ଥାର ମା' ଶ୍ଵେକ ସମ୍ଭାଳି ନ ପାର ବେକରେ ଦଉଡ଼ି ଦେଇ ମଲା । ଏଇସ୍ଥାର ପାଇଁ···ତଳକୁ ମୁହଁ ପୋଛି ସେ ଛୁଡ଼ାହେଲା ।

ହଉ ଯା, ଯା, କାଲି ଆସିବୁ,—କହି କେସ୍‌ରେ ମନଦେଲା ।

ପୁଲିସବାଲାମାନେ ତାକୁ ବାନ୍ଧି ଟାଣି ନେଇଗଲେ । ଅଥଚ କାକୁଥ-ମିନଥରେ ସେ କହିଲା, ବାବୁ, ଯାହା ଦଣ୍ଡ ଦେବାର ଦେଇଦଅନ୍ତୁ । ମୁଁ ଆଉ ଘୋଷରୁ ହୋଇ ପାରବ ନାହିଁ ।

ଆରେ, ବରକ୍ତ ହୋଇ କହିଲା, ତୁ ଆଇନ୍ ବୁଝୁନାହୁ କରେ । ମୁଁ ଦଣ୍ଡ ଦେବା ଲୋକ ନୁହିଁ । ତୋ ମକଦ୍ଦମା ମୁଁ ବିଗ୍ଭର କର ବସି ନାହିଁ । ତୋ ମକଦ୍ଦମା ବିଗ୍ଭର କରବେ ଅନ୍ୟ ମ୍ୟାଜିଷ୍ଟ୍ରେଟ । ମୁଁ ଖାଲି ତୁ ଯାହା କହିବୁ ଲେଖିଦେବ । ଯା, ଯାଃ, ମୋର ସମସ୍ତ ନଷ୍ଟ କରନା । କଏ କହୁଚୁ ତୋତେ ଦୋଷ ମାନିବାକୁ ଶୁଣେ ?

ଆଖି ପୋଛୁ ପୋଛୁ ସେ ଚାଲିଗଲା । ମନଟା ଟିକଏ ଉଦାସ ଲାଗିଲା । ଅନ୍ୟମନସ୍କ ଭାବରେ କଲମ ଉଠାଇ ବସିରହିଲା ।

ହଁ, ସେ ତଳେ ପଡ଼ିବାପରେ ବେହୋସ୍ ହୋଇଗଲା, ନା ବେହୋସ୍ ହୋଇ ତଳେ ପଡ଼ିଗଲା ? ଓକିଲ ପୂର୍ବ ସାକ୍ଷୀକୁ ଜେରା କରିବାକୁ ଲାଗିଲେ । ଚମକି ପଡ଼ି ସାକ୍ଷୀର ଉତ୍ତର ଲେଖିଲା, ମାଡ଼ ଖାଇ ତଳେ ପଡ଼ିବା ଭିତରେ ସେ ବେହୋସ୍ ହୋଇଗଲେ ।

ପୂର୍ବ ଆସାମୀ କଥା ମନରୁ ପୋଛି ଲେଖିଚାଲିଲା । ସେ ମକଦ୍ଦମାଟି ଛାଡ଼ି ଅନ୍ୟ ଗୋଟିଏ ମକଦ୍ଦମା ଧରିଲା ।

ଧୁରନ୍ଧର ସାହୁ ହାଜର ହେ, ଧୁରନ୍ଧର ସାହୁ ହାଜର ହେ,···ଧୁରନ୍ଧର ସାହୁ ହାଜର ହେ, ଗମ୍ଭୀର ନିନାଦରେ ଚପରାସୀ ଡାକ ଛାଡ଼ିଲା ।

ହଁ ହଁ ହେ, କହି ଭିତରକୁ ପଶିଆସିଲା ଜଣେ । ନା ସନ୍ଦେହ ଖାପ ଖାଇବା ଚେହେରାଟିଏ । କାଗଜପତ୍ର ପଢ଼ି ଷ୍ଟେଶ ଦଫାରେ ଅଭିଯୁକ୍ତ କର ପଗ୍ଭରିଲା, ଗତ··· ତାରିଖରେ ଅକମ୍ମାତ୍ ପୂରରେ ପ୍ରାୟ ଅନ୍ଦାଜ ବାରଟା ସମୟରେ ତୁମ୍ଭେ ସଦନ ସାହୁର ଜମିରୁ ଅନ୍ଦାଜ ପାଞ୍ଚଶତ ଟଙ୍କାର ଧାନ ଷ୍ଟେଶ କରିଥିବାରୁ ୩୬୯ ଦଫାରେ ଅଭିଯୁକ୍ତ । ତୁମ୍ଭେ ଦୋଷୀ ନା ନିର୍ଦ୍ଦୋଷ ?

ନିର୍ଦ୍ଦୋଷ ।

ଚମକି ପଡ଼ି ଗ୍ଭହିଁଲା ତା ଆଡ଼େ । କାଗଜପତ୍ର ପଢ଼ି ଦେଖିଲା ଯେ ପ୍ରମାଣର ଅଭାବ ନାହିଁ ; ହାତେ ହାତେ ଧରାହୋଇଚ । ଘରୁ ଧାନ ବାହାରିଚ । ଜମି ସଦନ ସାହୁର ବୋଲି ମଧ୍ୟ ଯଥେଷ୍ଟ ପ୍ରମାଣ ଅଛୁ । ତଥାପି ଲୋକଟା କେଉଁ ସାହସରେ କହେ ସେ ନିର୍ଦ୍ଦୋଷ ! ବରକ୍ତ ଲାଗିଲା । ମନଟା ଏକଦମ୍ ଖଫା ହୋଇଗଲା । ଦୋଷଟା ମାନି-ଯାଇଥିଲେ ଗୋଟାଏ ମକଦ୍ଦମା ମୋ ପାଖରୁ କମିଯାଇଥାଆନ୍ତା ; ଅଥଚ ବର୍ତ୍ତମାନ

ମିଛରେ ମୋତେ ଗୁଡ଼ାଏ ସାକ୍ଷୀର ଜମାନବନ୍ଦି ଜେରା ଲେଖି ହାତ ବଥେଇବାକୁ ପଡ଼ିବ । ଯେତେ ସବୁ ଧୂର୍ତ୍ତ, ପାଜି, ବଦ୍‌ମାସ ।

—ଆଜ୍ଞା, ମୋ ବାପ ଚଉଦପୁରୁଷର ଜମି ସେ; ତା ଜମି ନୁହଁ ।

—ବନ୍ଦକର ତୁମର କଥା । ମକଦ୍ଦମା ବଗୃର ଶୁଣିବ, ତା ପରେ ମୁଁ ବୁଝିବି କାହାର ଜମି । ତୁମକୁ ସେ କଥା କହିବାକୁ ପଡ଼ିବ ନାହିଁ ।

—ଆଜ୍ଞା, ମୁଁ ସେ ଜମି କିଣିଛି ତାର ବାପ ପାଖରୁ ନଗଦ ହଜାରେ ଠନ୍ ଠନ୍ ଗଣି ଦେଇ, ହେଇ ଦେଖନ୍ତୁ କବଲା । ମୁଦେଇ ଆଗେଇ ଆସି ଟେବୁଲ ଉପରେ କବଲାପତ୍ର ଥୋଇଦେଲା ।

—ଉଠାଅ ଏସବୁ, ଉଠାଅ । ରାଗିଯାଇ ଗର୍ଜିଉଠିଲି । ବର୍ତ୍ତମାନ ସେସବୁ ଦେଖି ବାର ସମୟ ନୁହଁ । ସାକ୍ଷୀମାନେ ଆସିଲେ ସେ ସବୁ କାଗଜ ପ୍ରମାଣ କରାଇବ ।

ମକଦ୍ଦମା ଶେଷକରି ଫେରିବାକୁ ଉଚ୍ଛୁର ହୋଇଗଲା । କ୍ଳାନ୍ତ ଦେହକୁ ଆରାମ-ଚୌକିରେ ଥୋଇଦେଇ ଖବରକାଗଜ ପଢ଼ି ବସିଲି । ଟେବୁଲ ଉପରେ ଥୁଆହୋଇଥିବା ମୋର ଦାମିକା କଲମଟି ଉପରେ ନଜର ପଡ଼ିଯିବାରୁ ଦେଖିଲି ସେ ଭଙ୍ଗା ହୋଇ ଥୁଆ ହୋଇ ରହିଛି ।

ଚୂଡ଼ାନ୍ତ କ୍ରୋଧୋଦ୍ଦୀପକ ବ୍ୟାପାର । ଗର୍ଜି ପଚାରିଲି—ଶୁଣୁଛ, ମୋର କଲମ ଭାଙ୍ଗିଲା କିଏ ?

ଗୃହିଣୀ ଦଉଡ଼ି ଆସି ଭୟରେ ହାଁ କରି ଚାହିଁରହିଲେ ।

—କିଏ କଲା ଏମିତି, ମୁଁ ଜାଣିବାକୁ ଚାହେଁ ଏହିକ୍ଷଣି, ବର୍ତ୍ତମାନ, ଅଭି, ଜଷ୍ଟ ନାଓ ।

ଭୟରେ ଗୃହିଣୀ କହିଲେ, ବାପୁନ ତ ଆସିଥିଲା ଏ ଘରକୁ । ବାପୁନ, ବାପୁନ, ଆସିଲୁ ଇଆଡ଼େ ! ବଦ୍‌ମାସ ଟୋକା ! ଗୃହିଣୀ ସଗର୍ଜନେ ଡାକଲେ ।

ମୋର ପାଞ୍ଚବର୍ଷର ପୁଅ ବାପୁନ ଡେଇଁ ଡେଇଁ ଦୌଡ଼ିଆସିଲା ହସ ହସ ମୁହଁରେ । ମୋ ହାତରେ କଲମ ଦେଖି ସେ ଭୟରେ ବୋଉକୁ ତାହାର ଜାବୁଡ଼ିଧରିଲା ।

—ତୁ ଭାଙ୍ଗିଚୁ ଏ କଲମ ? ଗର୍ଜିଲି ।

ହଁ, ମୁଣ୍ଡ ଟୁଙ୍ଗାରି ପୁଅ ଉତ୍ତର ଦେଲା, ଆଈ ପାଖକୁ ଚିଠି ଲେଖୁଥିଲି ସେଥିରେ, ହାତରୁ ଖସିପଡ଼ି ଭାଙ୍ଗିଗଲା ।

ହାତ ଟେକି ମାରିବାକୁ ଯାଉଥିଲି । କିନ୍ତୁ ମନେପଡ଼ିଗଲା ଜର୍ଜ ଓ୍ୱାଶିଂଟନଙ୍କ କଥା । ସେ ମଧ୍ୟ ପିଲବେଳେ ଏମିତି ସତ କହିଥିବାରୁ ତାଙ୍କର ପିତା କହିଥିଲେ, ସେ ଦିନେ ବିଖ୍ୟାତ ଲୋକ ହେବ । ମୋର ପୁଅ ସତ କହିଛି । ସେ ମଧ୍ୟ ଦିନେ ବିଖ୍ୟାତ ହେବ, କୁଳ ଉଜ୍ଜ୍ୱଳ କରିବ, ଜନ୍ମସ୍ଥ କରିବ । ଆଶାରେ ମୋର ଆଖି ଉଜ୍ଜ୍ୱଳ ହୋଇଉଠିଲା । ଆଦରରେ

ତାକୁ କୋଳକୁ ଟାଣି ନେଇ କହିଲି, ବାପା, କେବେହେଁ ମିଛ କହିବୁ ନାହିଁଟି । ଦୋଷକଲେ ମାନିବାକୁ ଡରିବୁ ନାହିଁ ।

ବ.ପୁନର ସତ୍ୟ କହିବାରେ ମୁଁ ଆଜ ଗର୍ବିତ; କିନ୍ତୁ ଆଖି ଆଗରେ ଭାସିଗଲା ଅଇଣ୍ଟୁ ମଲିକର ଚେହେରା । ତା ପାଇଁ ମୁଁ ବା ଦେଶ କଅଣ ଗର୍ବ ଅନୁଭବ କରୁଚ ସେ ଦୋଷ ମାନିଚ ବୋଲି ?

ମୋର ତିନି ବର୍ଷର ଝିଅ ଦୌଡ଼ି ଆସି କହିଲା, ବୋଉ ମୁଁ ସର ଖାଇନି ।

ତା'ର ନାଲି ପାତଳା ଓଠର ଦୁଇ କଣରେ ଲାଗିରହିଚ ସର । ଆମେ ଏ ଘରେ ଥିବାବେଳେ କେତେବେଳେ ସେ ଲୁଚି ରୋଷେଇଶାଳକୁ ପଶି ଦୁଧହାଣ୍ଡିରୁ ସର ଲୁଗ୍ରାଇ ଖାଇଆସିଲାଣି । ପ୍ରମାଣ ତାର ଅଙ୍ଗରେ ଲାଗିରହିଚ, ତଥାପି ସେ କହୁଚ ମୁଁ ସର ଖାଇନି ବୋଉ !

ବୋଉ ତାର ରାଗିଯାଇ କହିଲେ, ଇଲେ, ମୁଁ କଅଣ କରିବ ଲେ ! ପୋଡ଼ାମୁହିଁ, ହାଣ୍ଡି ଖାଇ ସବୁ ସରତକ ଖାଇଗଲୁ !

ମୁଁ ସର ଖାଇନି ମ, କହି ବୋଉର ଅଭିଯୋଗ ପ୍ରତି ଭ୍ରୂକ୍ଷେପ ନ କରି ମୋ ଆଡ଼େ ଆଗେଇ ଅ.ସିଲା, ହାତ ଟେକି ।

କୋଳକୁ ଉଠାଇ ନେଇ ଚୁମ୍ବନ ପରେ ଚୁମ୍ବନ ଦେଇ କହିଲି, ନା, କିଏ କହିଲା ତୁ ଖାଇଚୁ ? ମିଛ କଥା । ତୋ ମୁହଁରେ କିଏ ସର ଲଗାଇ ଦେଇଚି ତୋତେ ଦୋଷୀ କରିବାକୁ ।

ଭାଇମ, ଭାଇ ଆଡ଼କୁ ଆଙ୍ଗୁଠି ଦେଖେଇ ମୁହଁ ଫୁଲାଇ କହିଲା ମିନି ।

ସତେ, ସତେ ଭାରି ବଦମାସ ସେ, ମାଡ଼ ଖାଇବ ।

ଆମର ଜୀବନ ଷାଠିଏ କି ସତୁରିବର୍ଷ ମଧ୍ୟରେ ପ୍ରଥମ ସାତ ବର୍ଷ ଆମେ ଧରି-ନେଇଚୁ ଅଜ୍ଞାନମସ୍ଥ ଏବଂ ସେଇଥିପାଇଁ ଆମେ ଦଣ୍ଡବିଧିରେ କହିଚୁ ସାତ ବର୍ଷର ତଳ ବାଳକ ଯେକୌଣସି ଅପରାଧ କଲେ ମଧ୍ୟ ସେ ଦଣ୍ଡନୀୟ ନୁହେଁ । ଆମର କୋଟି କୋଟି ବର୍ଷ ଯାହାଙ୍କ ନିକଟରେ ଗୋଟିଏ ମୁହୂର୍ତ୍ତ, ତାଙ୍କର ଦଣ୍ଡବିଧି ଆଇନରେ ଆମ ଜୀବନର କେତେ ବର୍ଷ ଅଜ୍ଞାନମସ୍ଥ ବୋଲି ଧରାହୋଇଚ କିଏ ଜାଣେ ?

□□□

## ଉଦ୍‌ଭ୍ରାନ୍ତ

କପିଳବସ୍ତୁ । ରାଜା ଶୁଦ୍ଧୋଦନଙ୍କର ସୁରମ୍ୟ ପ୍ରମୋଦୋଦ୍ୟାନ । ସମସ୍ତ ସୂର୍ଯ୍ୟାସ୍ତ । ପ୍ରଥମ ବସନ୍ତର ସମାଗମରେ ଉଦ୍ୟାନର ଶୋଭା ଅପୂର୍ବ । କିଂଶୁକ, କୁରୁବକ, କୁଟଜ

ପୁନ୍ନାଗ, ଅଶୋକ ପ୍ରଭୃତି ପୁଷ୍ପାବଳୀରେ ତରୁରାଜି ନମିତ । ପିକକୁଳର ଅବିରାମ କୁହୁ କୁହୁ ସହିତ ଭ୍ରମରର ଗୁଞ୍ଜନ ମିଳିତ ହୋଇ ତୋଳିଛି ଏକ ଅପୂର୍ବ ଝଙ୍କାର । ପ୍ରାସାଦର ଲାସ୍ୟମୟୀ ତରୁଣୀମାନେ ପ୍ରମୋଦୋଦ୍ୟାନର ପୁଷ୍କରିଣୀରେ ଜଳକ୍ରୀଡ଼ାରେ ମାତିଛନ୍ତି । ସେମାନଙ୍କର ତରଙ୍ଗାୟିତ ତନୁ ଓ ଛନ୍ଦାୟିତ ହାସ୍ୟ ମନରେ ମତାଣିଆ ମଦିର ପରିବେଷଣ କରୁଛି । ଗନ୍ଧବହ ମନ୍ଦେ ମନ୍ଦେ ନାନା ସୁବାସ ବିତରଣ କରୁଛି ।

ଅଦୂରେ ଗୋଟିଏ ପ୍ରସ୍ତର ବେଦିକା ଉପରେ ଗୌତମ ମୌନୀ ଭାବରେ ବସିଛନ୍ତି । ଯୁବତୀମାନଙ୍କର ମୁହୁର୍ମୁହୁଃ କଟାକ୍ଷପାତ ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଉଦାସ ଆଖି-ଯୋଡ଼ିକ ତାଙ୍କର ଅସୀମରେ ନ୍ୟସ୍ତ । ଚିନ୍ତାରେ ତାଙ୍କର କପାଳର ରେଖା ମଝିରେ ମଝିରେ ପରିସ୍ଫୁଟ ହୋଇଉଠୁଛି । ତପ୍ତ ଦୀର୍ଘନିଶ୍ୱାସ ବାରମ୍ବାର ଅସୀମରେ ମିଳାଇଯାଉଛି ।

ସେ ଭାବୁଛନ୍ତି···ଏ ବସନ୍ତ ଚିରସ୍ଥାୟୀ ନୁହେଁ, ଏ ଜୀବନ ମଧ୍ୟ ଚିରସ୍ଥାୟୀ ନୁହେଁ । ଏ ଦୁଇଟି ଅସ୍ଥାୟୀ ପରିବେଶରୁ ଏ ଉନ୍ମାଦନା ଅସ୍ଥାୟୀ ହେବ, ଏଥିରେ ସନ୍ଦେହ ନାହିଁ । ଅସ୍ଥାୟୀ ବସ୍ତୁ ବା ଭାବ ଦୁଃଖଦାୟକ । ଏ ଜୀବନର ଆଦ୍ୟରେ ଦୁଃଖ, ମଧ୍ୟରେ ଦୁଃଖ ଏବଂ ଅନ୍ତିମରେ ମଧ୍ୟ ଦୁଃଖ । ଏ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଦୁଃଖଦାୟକ ···

ଦୀର୍ଘନିଶ୍ୱାସ ପକାଇ ଗୌତମ ଅଶ୍ରୁପୂର୍ଣ୍ଣ ନୟନରେ ଚାରିଆଡ଼େ ଶୂନ୍ୟ ଦୃଷ୍ଟିରେ ଚାହିଁଲେ । ବିଗତ କେତେ ଦିନର ପ୍ରତ୍ୟେକଟି ଘଟଣା ବିଷୟରେ ସେ ପୁଣି ଭାବିବାକୁ ଲାଗିଲେ ।

···ସେହି ଜର୍ଜରିତ କଳେବର, ଗଳିତ ଚର୍ମ, ଦନ୍ତହୀନ ଜରାଗ୍ରସ୍ତ ବୃଦ୍ଧ, ସେଇ ପୂତିଗନ୍ଧମୟ, ମାର୍ଗପାର୍ଶ୍ୱରେ ପରିତ୍ୟକ୍ତ ଏବଂ ତଥାପି ନିର୍ଲଜ୍ଜ ଭାବରେ ଜୀବିତ ଜୀବନ । ସେଇ ଶବ ଏବଂ ଶବବାହକମାନଙ୍କ ପଛରେ ରୋରୁଦ୍ୟମାନା ନାରୀ—ଗୋଟି ଗୋଟି କରି ସବୁ ଦୃଶ୍ୟ ତାଙ୍କ ଆଖି ଆଗରେ ଭାସିଗଲା । ଦୁଇବିନ୍ଦୁ ଅଶ୍ରୁ ତାଙ୍କର ବକ୍ଷସ୍ଥିତ ରତ୍ନଖଚିତ ମୁକ୍ତାହାର ଉପରେ ପଡ଼ି ଗଡ଼ିଗଲା ।

···ତଥାପି, ତଥାପି ମନୁଷ୍ୟ ନିର୍ଲଜ୍ଜ ଓ ନିର୍ମମ ଭାବରେ ବଞ୍ଚିରହିବାକୁ ଚାହେଁ । କାହିଁକି ?

ଗୌତମ ଗାତ୍ରୋତ୍ଥାନ କରି ଧୀରେ ଧୀରେ ପ୍ରାସାଦ ଆଡ଼କୁ ଅଗ୍ରସର ହେଲେ ଏବଂ ଦ୍ୱାରପାଳକୁ ଆଦେଶ ଦେଲେ ଛନ୍ଦକକୁ ରଥଯୋଜନ କରିବାକୁ ଆଜ୍ଞା ଦେବାପାଇଁ ।

ନିଜ କକ୍ଷ ମଧ୍ୟରେ ପ୍ରବେଶ କରିବାକୁ ଯାଇ ଦେଖିଲେ ଯୁବରାଣୀ ଗୋପା ଦ୍ୱାରଦେଶରେ ଦଣ୍ଡାୟମାନା । ଶିଶିର-ସ୍ନାନ କମଳକୋରକ ପରି ଆଖିଯୋଡ଼ିକ ତାଙ୍କର ଛଳଛଳ ।

ଗୌତମ ତାଙ୍କୁ ଉପେକ୍ଷା କରି କକ୍ଷମଧ୍ୟରେ ପ୍ରବେଶ କରିବାକୁ ଯାଆନ୍ତେ, ଗୋପା ତାଙ୍କ ହାତ ଧରି ଅଟକାଇଲେ । ଗୌତମ ବାଧା ନ ଦେଇ ନିର୍ବାକ ଭାବରେ ସେଇଠି ଛିଡ଼ାହୋଇ ରହିଲେ । ଦୃଷ୍ଟି ତାଙ୍କର ପୂର୍ବପରି ବେଦନାମୟ ।

ଗୋପା ଅଭିମାନଭରା କଣ୍ଠରେ କହିଲେ, ପ୍ରମୋଦୋଦ୍ୟାନକୁ ଏକାକୀ··· । ରୁଦ୍ଧ ଅଭିମାନ ତାଙ୍କର ବାକ୍‌ରୋଧ କଲା ।

ଗୌତମଙ୍କ କପାଳରେ ରେଖା ପରିସ୍ଫୁଟ ହୋଇଉଠିଲା । ଗୋପାଙ୍କ ଆଡ଼କୁ ଚାହିଁ ସେ ଭାବିବାକୁ ଲାଗିଲେ, ଏ ତରଙ୍ଗାୟିତ ନର୍ମୋକ ତଳେ ବୀଭତ୍ସ ଦୃଶ୍ୟ ଲୁକ୍‌କାୟିତ ଅଛି । ଏ ତୃଷ୍ଣା ସେଇ ବୀଭତ୍ସତାକୁ ଢାକ ।

ଥରେ ମାତ୍ର ଗୋପାଙ୍କ ଆଡ଼କୁ ଚାହିଁ ଗୌତମ କ୍ଷିପ୍ରଗତିରେ ପ୍ରାସାଦରୁ ବାହାରି ଗଲେ । ଉଦ୍‌ଗତ ଅଶ୍ରୁରୋଧ କରିବାର ଚେଷ୍ଟାରେ ଗୋପାଙ୍କର ବକ୍ଷୋଷ୍ଠାଗ୍ର କମ୍ପିତହେଲା । ଅଭିମାନର ଆତିଶଯ୍ୟରେ ସେ ଗୌତମଙ୍କର ପ୍ରତ୍ୟାବର୍ତ୍ତିତ ପଦଚିହ୍ନ ଉପରେ ଲୋଟି ପଡ଼ିଲେ ।

ଗୌତମଙ୍କର ରଥ ସେତେବେଳେ ପ୍ରାସାଦ ଛାଡ଼ି ରାଜମାର୍ଗରେ ଧୀରେ ଧୀରେ ଅଗ୍ରସର ହେଉଛି ।

ଗୌତମ ଦେଖିଲେ ଅଦୂରେ ଏକ ଅପୂର୍ବ ପୁରୁଷ । ହସ୍ତରେ ତାଙ୍କର କମଣ୍ଡଳୁ । କୌଣସି ବସ୍ତ୍ର ଅଙ୍ଗରେ ନାହିଁ ।

ଗୌତମ ରଥ ଅଟକାଇ ସନ୍ନ୍ୟାସୀଙ୍କ ନିକଟକୁ ଗଲେ । ସନ୍ନ୍ୟାସୀ ଉଦ୍‌ଭ୍ରାନ୍ତ ଦୃଷ୍ଟିରେ ଗୌତମଙ୍କ ଆଡ଼କୁ ଚାହିଁରହିଲେ । ଗୌତମ କିଛିକ୍ଷଣ ଅଭିଭୂତ ଭାବରେ ସନ୍ନ୍ୟାସୀଙ୍କ ଆଡ଼େ ଚାହିଁ ପଚାରିଲେ, ଆପଣଙ୍କର ପରିଚୟ ?

—ସେହି ପ୍ରଶ୍ନର ଉପଯୁକ୍ତ ଉତ୍ତର ପାଇବା ପାଇଁ ତ ମୁଁ ଗୃହତ୍ୟାଗ କରିଛି । ସନ୍ନ୍ୟାସୀ ସହାସ ଉତ୍ତର ଦେଲେ ।

—ଆପଣ କଅଣ ଚିନ୍ତା କରୁଛନ୍ତି ?

—ବନ୍ଧୁ, କେଉଁ ବିଷୟରେ ଚିନ୍ତା କରିବି ଏ ପର୍ଯ୍ୟନ୍ତ ମୁଁ ନିରୂପଣ କରିପାରିନାହିଁ ।

—ଆପଣଙ୍କର ଗନ୍ତବ୍ୟ ?

—କିଏ ଜାଣେ ?

ସନ୍ନ୍ୟାସୀ ସହାସ ଅଭିବାଦନ କରି ବିଦାୟ ନେଲେ ।

ଏ କି ଅପୂର୍ବ ଜୀବ ! ଏହାଙ୍କର ବାସସ୍ଥାନ ନାହିଁ, ପରିଚୟ ନାହିଁ, ଧନ ନାହିଁ, ତଥାପି କି ଐଶ୍ୱର୍ଯ୍ୟବାନ ମନେହେଉଛନ୍ତି ଏ ! ଗୌତମ ଆଶ୍ଚର୍ଯ୍ୟ ଭାବରେ କିଛିକ୍ଷଣ ସନ୍ନ୍ୟାସୀ ଆଡ଼େ ଚାହିଁ ଛନ୍ଦକକୁ ପଚାରିଲେ, ଛନ୍ଦକ, ତୁମେ ଏହାଙ୍କୁ ଜାଣ ?

ଛନ୍ଦକ ସ୍ମିତ ହାସ୍ୟକରି ଉତ୍ତର ଦେଲେ, ଯୁବରାଜ, ଏମାନଙ୍କର ପରିଚୟ ଦେଶ, କାଳ, ପାତ୍ର ମଧ୍ୟରେ ନିବଦ୍ଧ ନ ଥାଏ । ଏମାନଙ୍କର ପରିଚୟ, ଏମାନଙ୍କର ଚିନ୍ତାଧାରା ଯାହା ଚିରନ୍ତନ ।

ରଥ ଫେରାଅ ଛନ୍ଦକ: ଗୌତମ ଦୀର୍ଘ ନିଶ୍ୱାସ ପକାଇ ଆଦେଶ ଦେଲେ ।

ସେଇ ରାତିମଧ୍ୟରାତ୍ରରେ ସୁପ୍ତା ଗୋପାଙ୍କର ଶିଥିଳ ଆଲିଙ୍ଗନ ମୁକ୍ତ କରି ପୁତ୍ର ରାହୁଲଙ୍କ ଆଡ଼େ ଥରେ ମାତ୍ର ଚାହିଁ ଗୌତମ ରାଜପ୍ରାସାଦ ପରିତ୍ୟାଗ କଲେ । ପରଦିନ ପ୍ରଭାତ ନ ହେଉଣୁ ଛନ୍ଦକ ଗୌତମଙ୍କର ରତ୍ନହାର, ବହୁମୂଲ୍ୟ ପରିଚ୍ଛଦ ଏବଂ କର୍ତ୍ତିତ କୁଞ୍ଚିତ କେଶଦାମ ମହାରାଜ ଶୁଦ୍ଧୋଦନଙ୍କ ପାଦତଳେ ରଖି ନୀରବରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ଶୁଦ୍ଧୋଦନ ମସ୍ତକରେ ହସ୍ତ ରଖି ସେହିଠାରେ ବସିପଡ଼ିଲେ । ଅନ୍ତଃପୁରରେ ଗୋପା ଏ ସମ୍ବାଦ ପାଇ ମୂର୍ଚ୍ଛିତା ହେଲେ ।

× × × ×

ରାଜଗୃହର ଉପାନ୍ତରେ ଗୋଟିଏ ଆଶ୍ରମ ।

ଯୁବକ ଗୌତମ ନାନା ଦେଶ ପର୍ଯ୍ୟଟନ କରି ଦିନେ ତପ୍ତ ମଧ୍ୟାହ୍ନରେ ଆଶ୍ରମର ଦ୍ୱାରଦେଶରେ ଉପସ୍ଥିତ ହେଲେ । ଆଶ୍ରମ ମଧ୍ୟରୁ ଅଲାର କାଲାମ ଏବଂ ଉଦ୍ରକ ରାମପୁତ୍ର ଆଶ୍ରମ ଭିତରକୁ ଯିବାପାଇଁ ଗୌତମଙ୍କୁ ସଙ୍କେତ ଦେଲେ ।

—କ'ଣ ଚାହଁ ଯୁବକ ? କାଲାମ ପଚାରିଲେ ।

—ମୁଁ ଚାହେଁ ପରମ ସୁଖ । ଗୌତମଙ୍କର ଉତ୍ତର ବେଦନାମୟ ।

ରାମପୁତ୍ର କହିଲେ, ପରମ ସୁଖ ଜୀବନର ଲକ୍ଷ୍ୟ ହେବା ଉଚିତ ବତ୍ସ ! କେବଳ କଠୋର ସାଧନାଦ୍ୱାରା ତାହା ପ୍ରାପ୍ତ ହୁଏ । ଯେତେବେଳେ ମନ ନିସ୍ତରଙ୍ଗ ପୁଷ୍କରିଣୀ ପରି ନିବିଡ଼ ସ୍ଥିର, କୌଣସି ଇଚ୍ଛାର ଉଦ୍ରେକ ନାହିଁ, ବତ୍ସ ! ସେତେବେଳେ ଜାଣିବ ତୁମର ସାଧନା ସାର୍ଥକ ହୋଇଛି । ସେ ଅବସ୍ଥାରେ ମନୁଷ୍ୟ ଅପାର ଆନନ୍ଦ ପାଏ । କଠୋର ସାଧନାରେ ତୁମେ ଅରୂପ ବ୍ରହ୍ମଲୋକ ପାଇବ ।

କାଲାମ କହିଲେ, କଠୋର ସାଧନାବଳରେ ତୁମେ ଅକିଞ୍ଚନାୟତନ ସ୍ତରରେ ଜନ୍ମଲାଭ କରିବ, ଯେଉଁଠାରେ ତୁମର ମନ ନିରୁଦ୍‌ବେଗ, ସ୍ଥିର ରହିବ ।

ଗୌତମ ମନୋଯୋଗ ଦେଇ ଉପଦେଶଗୁଡ଼ିକ ଶୁଣୁ ଶୁଣୁ ଅନ୍ୟମନସ୍କ ହୋଇଗଲେ । ମନରେ ତାଙ୍କର ପ୍ରଶ୍ନ ଜାତ ହେଲା, ମନର ଏପରି ଅବସ୍ଥା କଅଣ ଚରମଲକ୍ଷ୍ୟ ହେବା ଉଚିତ ? ମନର ଏପରି ଅବସ୍ଥାରେ ମୁଁ ମୋର ପ୍ରଶ୍ନର ଉତ୍ତର ପାଇପାରିବି କି ? ମାନବ-ଜାତିର ଦୁଃଖର ଅବସାନର ଉପାୟ ପାଇବି କି ?

ଗୌତମଙ୍କ ମନ ନାନା ସନ୍ଦେହ-ଦୋଳାରେ ଦୋଳାୟିତ ହେବାକୁ ଲାଗିଲା । ରାତ୍ରିର ମଧ୍ୟମ ଯାମରେ କାଲାମ ଏବଂ ରାମପୁତ୍ର ଯେତେବେଳେ ଗଭୀର ଧ୍ୟାନରେ ନିମଗ୍ନ, ଗୌତମ ଆଶ୍ରମ ତ୍ୟାଗ କରି ଚାଲିଲେ ତାଙ୍କର ସମସ୍ୟାର ସମାଧାନର ଅନ୍ୱେଷଣରେ ।

ଏ ଅନନ୍ତ ସୃଷ୍ଟିରେ ମନୁଷ୍ୟର ସ୍ଥାନ କେଉଁଠି ? ତାର ବିକାଶ କେଉଁ ଦିଗରେ ହେବା ଉଚିତ ? ଇନ୍ଦ୍ରିୟଜନିତ ସୁଖର ଅଭିବୃଦ୍ଧିର ନୂତନ ନୂତନ ଉପାୟ ଆବିଷ୍କାର କରିବାରେ ତାର ବୁଦ୍ଧିର ବିକାଶ କଅଣ ଶ୍ରେଷ୍ଠ ବିକାଶ ? ମନୁଷ୍ୟ କାହିଁକି ଇନ୍ଦ୍ରିୟଜନିତ ସୁଖ ପ୍ରତି ଅଧିକ ଆକୃଷ୍ଟ ହେଉଛି ?

କିଏ ଦେବ ଏହାର ଉତ୍ତର ! ପାଗଳ ପରି ଗୌତମ ମଗଧର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ବାରମ୍ବାର ଯାତାୟାତ କଲେ ଏହାର ସମାଧାନ ପାଇଁ । କୌଣସିଠାରେ ତାଙ୍କର ମନ ଏକାଧିକ ଦିନ ସ୍ଥିର ରହିଲା ନାହିଁ । ଦୁର୍ବାର ପ୍ରଶ୍ନର ଜ୍ୱାଳାରେ ସେ ଧାବମାନ । ସେ ଉଦ୍‌ଭ୍ରାନ୍ତ । ପୁଞ୍ଜୀଭୂତ ପ୍ରଶ୍ନର ଚାପରେ ମସ୍ତିଷ୍କର ସ୍ନାୟୁ ସର୍ବଦା ଉତ୍ତେଜିତ ।

କେତେଦିନ ହେଲା ତାଙ୍କର ଆହାର ନାହିଁ, ନିଦ୍ରା ନାହିଁ । କ୍ଲାନ୍ତ ଶ୍ରାନ୍ତ ହୋଇ ସେ ଗୋଟିଏ ଉନ୍ମୁକ୍ତ ପ୍ରାନ୍ତରରେ ଶୋଇପଡ଼ିଲେ । ଆକାଶରେ ସେତେବେଳେ ସପ୍ତତାରକା ସମନ୍ୱିତ ପ୍ରଶ୍ନ ବାଚକ ଚିହ୍ନଟି ଅଧିକ ଜାଜ୍ୱଲ୍ୟମାନ ହୋଇଉଠିଛି ।

ପରଦିନ ପ୍ରଭାତ ସମୟରେ ଗୌତମ ଦେଖିଲେ ସେ ଉରୁବେଲା ଅରଣ୍ୟର ଗୋଟିଏ ଅତି ରମଣୀୟ ସ୍ଥାନରେ । ଚାରିଦିଗର ନିବିଡ଼ ଅରଣ୍ୟ ମଧ୍ୟରେ କୁଳୁସ୍ୱନା ନେରଞ୍ଜରା ପ୍ରବାହିତା । ସ୍ଥାନେ ସ୍ଥାନେ ସ୍ନାନମଣ୍ଡପ । ବନାନୀର ଉପାନ୍ତରେ ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ର ଏବଂ ଦୂରେ ଶାନ୍ତ ସ୍ନିଗ୍ଧ ଜନପଦ । ସମସ୍ତ ଦୃଶ୍ୟଟି ଯେପରି ଗୋଟିଏ ଚିତ୍ରପଟ ।

ଗୌତମ ନେରଞ୍ଜରାରେ ଅବଗାହନ କରି ତା'ର ତଟରେ ଚିନ୍ତାମଗ୍ନ ହୋଇ ଉପବେଶନ କଲେ ।

···ଜଳସିକ୍ତ କାଷ୍ଠରୁ କଦାପି ଅଗ୍ନିର ଉଦ୍ଭବ ହୋଇନପାରେ—କେବଳ ଶୁଷ୍କ କାଷ୍ଠରୁ ହିଁ ଅଗ୍ନିର ସମ୍ଭବ । କାମନାସିକ୍ତ ଏ ଶରୀରରେ ଜ୍ଞାନାଗ୍ନି ଜାତ ହେବା ଅସମ୍ଭବ । କଠୋର କୃଚ୍ଛ୍ର ସାଧନା ଦ୍ୱାରା ଏ ଶରୀରରୁ ସମସ୍ତ କାମନା ନିଷ୍କାସିତ କରିବାକୁ ହେବ । ଏଇ ରମଣୀୟ ସ୍ଥାନ ମୋର ସାଧନାର କ୍ଷେତ୍ର ହେଉ ।

କୁହୁ, କୁହୁ, କୁଉ··:ଉ···ଉହୁ ।

ଗୌତମ ଇନ୍ଦ୍ରିୟର ସମସ୍ତ ଦ୍ୱାର ରୋଧ କରି ଚିନ୍ତା କରିବାକୁ ଲାଗିଲେ । ଭିତରିଲ ମୁଖଗହ୍ୱରରେ ବାୟୁ ପ୍ରବେଶ କରି ମୃଦୁ ସ୍ୱନ ନିର୍ଗତ ହେବାରୁ ସେ ଦାନ୍ତରେ ଦାନ୍ତ ଚାପି ମୁଖ ବନ୍ଦକଲେ ଓ ଜିହ୍ୱାକୁ ତାଳୁରେ ଦୃଢ଼ ଭାବରେ ଚାପିଧରିଲେ । ଧୀରେ ଧୀରେ ସେ ନିଶ୍ୱାସ ନିୟନ୍ତ୍ରଣ କରି କିଛିଦିନ ପରେ ନିଶ୍ୱାସ ନେବା ସ୍ଥଗିତ କଲେ । ଧମନୀରେ ତୀବ୍ର ବେଗରେ ମସ୍ତିଷ୍କ ଆଡ଼କୁ ରକ୍ତପ୍ରବାହର ଶବ୍ଦ ସେ ଶୁଣିବାକୁ ପାଇଲେ । ଥରେ ମନେ-ହେଲା ତାଙ୍କର ତାଳୁ ଦୁଇଭାଗ ହୋଇଯାଉଛି । ଗୌତମ ତଥାପି ନିଶ୍ଚଳ ।

ପ୍ରତିଦିନ ନିଜର ଆହାର ପରିମାଣ ହ୍ରାସ କରି ଶେଷକୁ ସେ ଗୋଟିଏ ମାତ୍ର ଶସ୍ୟ-କଣା ଆହାର କରିବାକୁ ଲାଗିଲେ । ଦିନେ ସେ ଶସ୍ୟକଣା ମଧ୍ୟ ତ୍ୟାଗକରି ଆହାର କଲେ ବନ୍ୟ ତୃଣ ।

କିନ୍ତୁ ଏ ତୃଣ ମଧ୍ୟ ରସମୟ···

ତୃଣ ତ୍ୟାଗ କରି ଗୌତମ ଶୁଷ୍କ ଗୋମୟ ଆହାର କଲେ ।

ସମସ୍ତ ଶରୀର ବୃଦ୍ଧନ୍ତ୍ ଅଗ୍ନିମସ୍ତ୍ ପାଙ୍ଗରେ ସ୍ଥିତିବନ୍ତ୍ ତାଙ୍କର ମନେହେଲା । କେତେବେଳେ ମନେହେଲା ସହସ୍ର ଦନ୍ତୁଶତ ଛୁରିକା ଦ୍ୱାରା ତାଙ୍କର ଉଦର କିଏ ଧୀରେ ଧୀରେ କର୍ତ୍ତନ କରୁଅଛୁ ।

ଗୌତମ ତଥାପି ନିଶ୍ଚଳ, ସ୍ତବ୍ଧ, ମୌନ ।

କିନ୍ତୁ କାହିଁ ସେ ଜ୍ଞାନର ଆଲୋକ ? କାହିଁ ଏ ଜୀବନ ପ୍ରହେଳିକାର ସମାଧାନ ? କାହିଁକି ଏ ଜୀବନର ସୃଷ୍ଟି ? କାହିଁକି ପୁଣି ମୃତ୍ୟୁ ? କେଉଁଥିରୁ ଏହାର ଉଦ୍ଭବ ? କେଉଁଥିରେ ଏହାର ବିଲୋପ ? ସମାଧାନର ଉତ୍କଣ୍ଠାରେ ଗୌତମଙ୍କ ଶ୍ୱାସରୋଧ ହୋଇ-ଆସିଲା ।

···ଏ ଜୀବନର ବିଲୋପ ହିଁ ଶ୍ରେୟ ସଦ୍ଧ ସମାଧାନ ଅସମ୍ଭବ···

···ବିଲୋପ ଦ୍ୱାରା ସମାଧାନ ହେବ କିପରି ? ନା, ଶରୀରକୁ ଯାତନା ଦେଇ ସମାଧାନ ଅସମ୍ଭବ । ଶରୀରକୁ ଯେତେ ଯାତନା ଦେଉଛି ସେ ସେତେ ପ୍ରାଧାନ୍ୟ ଲଭ କରୁଛି ।···

ଗୌତମ ଧୀରେ ଧୀରେ ଗାତ୍ରୋତ୍ଥାନ କରି ଆହାର ସଂଗ୍ରହ କରି ଆହାରକଲେ । ଯେଉଁ ପାଞ୍ଚଜଣ ତପସ୍ୱୀ ଅଦୂରେ ଗୌତମଙ୍କ ସହିତ ତପସ୍ୟା କରୁଥିଲେ, ସେମାନେ ଗୌତମଙ୍କୁ ଆହାର କରିବାର ଦେଖି କାଳେ ସେମାନଙ୍କ ମନ ଆହାର ପ୍ରତି ଆକୃଷ୍ଟ ହେବ ସେହି ଭୟରେ ସେ ସ୍ଥାନ ଛାଡ଼ି ପଳାୟନକଲେ ।

ଆହାର ପରେ ଗୌତମ ସୁସ୍ଥ ହୋଇ ଧ୍ୟାନମଗ୍ନ ହେଲେ । ପୃଥିବୀର ଜନ୍ମରୁ ଜୀବନ-ପ୍ରବାହର ପ୍ରତ୍ୟେକ ଅବସ୍ଥା ତାଙ୍କ ମାନସପଟରେ ଉଦ୍ଭାସିତ ହେବାକୁ ଲାଗିଲା । ଯୁଗେ ଯୁଗେ ବଞ୍ଚିରହିବାର କାମନା ଏବଂ ସେ କାମନାରୁ ଜାତ କର୍ମ ଏବଂ କର୍ମରୁ ଜାତ ଦୁଃଖ, ପ୍ରତ୍ୟେକ ଜୀବର ଦୁଃଖ ସେ ପରିଷ୍କାର ଅନୁଭବ କରିପାରିଲେ । ଜ୍ଞାନର ଆଲୋକରେ ତାଙ୍କ ମୁଖମଣ୍ଡଳ ଦିବ୍ୟ ଜ୍ୟୋତି ଧାରଣକଲା ।

···ପାଇଛି, ଜ୍ଞାନର ଆଲୋକ ମୁଁ ପାଇଛି···

ଗୌତମ ଧୀରେ ଧୀରେ ଆସନ ତ୍ୟାଗ କରି ଆଖି ମେଲି ଚାରିଆଡ଼କୁ ଚାହିଁଲେ । ମନ ତାଙ୍କର ପ୍ରଶାନ୍ତ, ସ୍ଥିରନିଶ୍ଚିତ ।

···ମୁଁ ବୁଦ୍ଧ, ଜୀବର ଦୁଃଖ ମୁଁ ମୋର ଜ୍ଞାନଦ୍ୱାରା ଦୂର କରିବି···

···କିଏ ମୋର ପ୍ରଥମ ଶିଷ୍ୟ ହେବ ?

ବୁଦ୍ଧ ଧୀରେ ଧୀରେ ଅଗ୍ରସର ହେଲେ । ପ୍ରତ୍ୟେକ ପଦକ୍ଷେପରେ ଆନନ୍ଦର ଗୀତ ଝଙ୍କୃତ ହେବାକୁ ଲାଗିଲା ।

ଅନତିଦୂରେ ସନ୍ନ୍ୟାସୀଙ୍କୁ ଦେଖି ବୁଦ୍ଧ ତାଙ୍କୁ ସଙ୍କେତଦ୍ୱାରା ଡାକଲେ । ସନ୍ନ୍ୟାସୀ ସ୍ମିତହାସ୍ୟ କରି ବୁଦ୍ଧଙ୍କ ସମ୍ମୁଖରେ ଛିଡ଼ାହେଲେ । ବୁଦ୍ଧ ଚିହ୍ନିପାରିଲେ ଏ ପୂର୍ବର ସେହି ସନ୍ନ୍ୟାସୀ ।

—ସନ୍ନ୍ୟାସୀ, ମୁଁ ବୁଦ୍ଧତ୍ୱ ପ୍ରାପ୍ତ ହୋଇଛି ।

ସନ୍ନ୍ୟାସୀ ଅଭିବାଦନ କଲେ । ଦୃଷ୍ଟି ତାଙ୍କର କିନ୍ତୁ ପୂର୍ବପରି ଉଦ୍‌ଭ୍ରାନ୍ତ ।

—ମୁଁ ଚରମ ସତ୍ୟ ଲାଭକରିଛି ।

ସନ୍ନ୍ୟାସୀ ଉତ୍‌କଣ୍ଠିତ ହୋଇ ଚାହିଁଲେ ।

—ଏ ଜୀବନ ଦୁଃଖପୂର୍ଣ୍ଣ ।

—ଦୁଃଖ ? ସନ୍ନ୍ୟାସୀ ଧୀରେ ଧୀରେ ମସ୍ତକ ଚାଳନାକଲେ ।

—ଦୁଃଖର କାରଣ କାମନା, ବୁଦ୍ଧ ନିଷ୍ଠସ୍ୱତା ଜ୍ଞାପକ ସ୍ୱରରେ କହିଲେ ।

—କାମନା ? ସନ୍ନ୍ୟାସୀ ସନ୍ଦିଗ୍ଧ ଭାବରେ ପଚାରିଲେ ।

—କମନାର ବିନାଶରେ ଦୁଃଖର ବିନାଶ । ବୁଦ୍ଧ ଦୃଢ଼କଣ୍ଠରେ କହିଲେ ।

—ବିନାଶ ? ସନ୍ନ୍ୟାସୀ ସ୍ମିତ ହାସ୍ୟ ସହ ପଚାରିଲେ ।

—ସନ୍ନ୍ୟାସୀ, ତୁମେ ଉଦ୍‌ଭ୍ରାନ୍ତ । ମୁଁ ବୁଦ୍ଧ !

—ବନ୍ଧୁ, ହୋଇପାରେ ତୁମେ ଅଗ୍ରସର ହୁଅ ବନ୍ଧୁ !

—ସନ୍ନ୍ୟାସୀ ଅନ୍ୟ ମାର୍ଗରେ ଅଗ୍ରସର ହେଲେ ।

ବୁଦ୍ଧ ରାଜଗିରି ଆଡ଼େ ଅଗ୍ରସର ହେଉ ହେଉ ଭାବିଲେ, ମୋର ପ୍ରଥମ ଶିଷ୍ୟ ମୋର ସତ୍ୟର ପ୍ରଥମ ସନ୍ଦେହୀ । ଚରମ ସତ୍ୟ ପାଇବା ପାଇଁ ମନୁଷ୍ୟ ବୁଦ୍ଧିର ବିକାଶ ସୁନିଶ୍ଚିତ ।

···କିନ୍ତୁ·· କିନ୍ତୁ···ସନ୍ନ୍ୟାସୀ କହଣ ଭାବୁଚନ୍ତି ଦୁଃଖ ବା ସୁଖର ଅନୁଭୂତି ମନର ବିକାର ମାତ୍ର ଏବଂ ଚରମ ସତ୍ୟ ·ଦୃଷ୍ଟିରୁ ଦୁହେଁ ଏକାହିଁ ନିୟମଦ୍ୱାରା ସୃଷ୍ଟ ଦୃଷ୍ଟେ ଦୁହିଁଙ୍କ ଭିତରେ ମୌଳିକ ପାର୍ଥକ୍ୟ ନାହିଁ ? ଶୁଷ୍କକାଷ୍ଠ ଓ ପ୍ରସ୍ଫୁଟିତ କୁସୁମ ଦୁହେଁ ହିଁ ବିରାଟର ବିଭିନ୍ନ ପ୍ରକାଶ ମାତ୍ର ଦୃଷ୍ଟେ ଦୁହେଁ ହିଁ ମହାନ୍ ? କିନ୍ତୁ ସେ ·କଥା ପରେ । ପ୍ରଥମେ ସମାଜିକ ମନୁଷ୍ୟର ସଂସ୍କାର ଆବଶ୍ୟକ ।

□□□

# ଦନେଇ ତୁଉଣି

ଓଃ ! ସେ କି ଗାଳି । ଅବିରାମ ଖଇବାଣ ଫୁଟୁଚି !!

ଛିଃ ଛିଃରେ ଅବଗୁଣୀ କଇଁଶୁଆ, ଗାତପଶା, ଛିଣ୍ଡାକନାଖିଆ—ଆ—ଆ ।

ହାଃ ହାଃରେ ଠୁଣ୍ଡଆ, କୋଢିଆ, ଲୁଖୁରବାଳରେ ଫିରେଇକାଟିଆ —ଆ—ଆ ।

ହାତ୍ ହାତ୍ ( ଭୂମିରେ ପଦାଘାତ ସହ ) ହାତ୍ ମୋ ପୋଡ଼ା କପାଳକୁ ଉ—ଉ—ଉ··· ।

ଥୁଃ ଥୁଃ ଥୁଃ (ଭୂମିରେ ଛେପ ପକାଇ) କାହିଁକି ତୁ ଜନମ ଯା ନେଲୁ—ଉ—ଉ—ଉ ।

ଗୀତର ସେ ଗୋଟାଏ ଅପୂର୍ବ ସାହିତ୍ୟ ! ଛନ୍ଦ, ଶବ୍ଦପାତ ଓ ଭାବଭଙ୍ଗୀର ଅପୂର୍ବ ସମାବେଶ !

ଘରର ଆମେସବୁ ଅବାକ୍ ଭାବରେ ଛିଡ଼ା ହୋଇ ସେ ସାହିତ୍ୟ ଶୁଣୁଚୁ ।

କିଛିକ୍ଷଣ ଅବିରାମ ଗୀତ ଗାଇଲା ପରେ ଦନେଇ ବୋଉ ଧଇଁସଇଁ ହୋଇ ପିଣ୍ଡାରେ ବସିପଡ଼ିଲା ।

ଦନେଇ ଅଦୂରେ ଛିଡ଼ାହୋଇ ପିଜୁଳିଗଛରେ ପାଣି ଢାଳୁଚି ନିର୍ବିକାର ଭାବରେ । ତାର ଦରପାଚିଲା ବାଳଗୁଡ଼ିକ ଚୈତ୍ର ପବନରେ ଫୁରୁଫୁରୁ ହୋଇ ଉଡ଼ୁଚି । ବୟସ-ଦୋଷରୁ ବାଳଗୁଡ଼ିକ ପାଚି ନାହିଁ । ବୟସ ହେବ ତାର ପଇଁତିରିଶ । ବାପା ବିଦ୍ରୂପ କରି କୁହନ୍ତି, ନୁହେଁ ବୃଦ୍ଧ ଯେଉଁ ଜନ ଶୁକ୍ଳକେଶ ଅଟେ ଯାର ଶିର ।

ଦନେଇ ବୋଉ ପାଣି ଗିଲାସେ ପିଇ ପିଣ୍ଡାରେ ଶୋଇପଡ଼ିଲା । ଦନେଇ ପିଜୁଳି ଗଛରେ ପାଣି ଦେଇସାରି ବୋଉ ପାଖରେ ବସିପଡ଼ିଲା । ଅଭିମାନରେ ବୋଉ ମୁହଁ ସେ ପାଖକୁ କରି ଶୋଇପଡ଼ିଲା ।

ଦନେଇ ଭାଇ ଗମ୍ଭୀର ଭାବରେ ପଚାରିଲା, "ଆଲୋ ବୋଉ, ବୋଉ ମ, ଏ ବୋଉ, ଆଚ୍ଛା କହିଲୁ ଭଲା, ଏ ଚୈତ୍ର ମାସରେ ପବନଟା ଗରମ ହେଲେ କଅଣ ହବ—କେମିତି ଗୋଟାଏ ଉଦାସିଆ ଭାବରେ ବହେ କାହିଁକି ? ଦେଖିଲୁ, କେମିତି ଶୁଖିଲା ପତର ସବୁ ଉଡ଼େଇ ନେଇ ଯାଉଚି ! କହିଲୁ ବୋଉ, ଏ ମାସରେ କାହିଁକି ପତରସବୁ ଶୁଖି ଝଡ଼ି-ପଡ଼େ !!

(ମୋର ମନେପଡ଼ିଗଲା ସେଲିଙ୍କର 'ପଶ୍ଚିମାପବନର ଗାନ'—ଯେଉଁ ପବନ ଶୁଖିଲା ପତର ଉଡ଼ାଇ ଦିଏ, ସେଇ ବିଞ୍ଚିଦେଇଯାଏ ସୃଷ୍ଟିର ବୀଜ )

ଦନେଇ ଭାଇ କିନ୍ତୁ ପ୍ରଶ୍ନ ପଚାରି ଦେଇ ଆଶ୍ଚର୍ଯ୍ୟ ଭାବରେ ଆକାଶକୁ ଚାହିଁରହିଚି, କେମିତି କା...କା କରି ଦଳେ କାଉ ଉଡ଼ିଯାଉଛନ୍ତି ବସାକୁ । ପ୍ରଶ୍ନଗୁଡ଼ାଏ ପଚାରିଚି ସତ, କିନ୍ତୁ ଉତ୍ତର ପାଇବାକୁ ଯେ ମୋଟେ ଆଗ୍ରହୀ ନୁହେଁ; ପ୍ରଶ୍ନ ପଚାରିବାରେହିଁ ତାର ଯେପରି ଆନନ୍ଦ ।

ଦନେଇ ଭାଇର ପ୍ରଶ୍ନ ପଚାରିବାର ଢଙ୍ଗ ଏମିତି ପୂର୍ବାପର ପ୍ରସଙ୍ଗ ବାଦ୍ ଦେଇ ଦୁମ୍ କରି ଏମିତି କେତେଗୁଡ଼ିଏ ଅବାନ୍ତର ପ୍ରଶ୍ନ ପଚାରି କିଛିକ୍ଷଣ ଶୂନ୍ୟଦୃଷ୍ଟିରେ ଆକାଶକୁ ଚାହିଁ ରହି ସେ ଅନ୍ୟମନସ୍କ ଭାବରେ ଉଠି ଚାଲିଯାଏ ତରତର ହୋଇ । ଲୋକେ କୁହନ୍ତି, ପାଗଳାଟା, ବାୟାଟା ।

ଥରେ ମୁଁ ତାକୁ ଅଟକାଇ ବାଧ୍ୟ କରିଥିଲି ଏମିତି କେତେଗୁଡ଼ିଏ ଅବାନ୍ତର ପ୍ରଶ୍ନର ଉତ୍ତର ଶୁଣିବାକୁ । ତା ବେକ ଧରି ବସାଇ କହିଲି, ଆମ ରାଜନୀତି ଆଲୋଚନାକୁ ଦବାଇ ଗୁଡ଼ାଏ ଏଣ୍ଡେତେଣ୍ଡେ କଅଣ ପଚାରିଲୁ ଯଦି ଶୁଣ୍ ତା ଉତ୍ତର ।

ଗୁଟିପିଟି ହୋଇ ସେ ଖସି ପଳାଇ ଯାଇ କହିଲ, ଉତ୍ତର-ଫୁଲରୁ କଅଣ ମିଳିବ ।

ସେଦିନ ମୋର ମନେହୋଇଥିଲ, ସତେ ତ, ପ୍ରଶ୍ନ ପଶ୍ଚରେ ମନୁଷ୍ୟର ନିର୍ବିକାର ନିରହଙ୍କାର ମନ । ଧୂଳିକଣାଠାରୁ ଆରମ୍ଭକରି ବିଶ୍ୱ ସୂର୍ଯ୍ୟ ପର୍ଯ୍ୟନ୍ତ ସବୁଥିରେ ବୈଚିତ୍ର୍ୟ ଦେଖି ସେ କୁହେ, ନ ତତ୍ର ଚକ୍ଷୁର୍ଗଚ୍ଛତି ନ ବାଗ୍‌ଗଚ୍ଛତି ନୋ ମନଃ, ନ ବିଦ୍ମୋ ନ ବିଜାନୀମୋ ଯଥୈତଦନୁଶିଷ୍ୟାତ୍—ହେ ଶିଷ୍ୟ, ମୁଁ ତ ତାକୁ ନିଜେ ବୁଝି ପାରୁନାହିଁ, ଅପରକୁ ବୁଝାଇବି କଅଣ ! ସୃଷ୍ଟିର ନାନାରୂପ, ନାନା ପ୍ରକାଶ ଦେଖୁ ଦେଖୁ ଯିଏ ନିଜର ସତ୍ତା ଭୁଲିଯାଏ, ସିଏ ପଶ୍ଚରେ ପ୍ରଶ୍ନ ଆକାରର ଆତ୍ମସମର୍ପଣରେ । ଉତ୍ତର ଦିଏ ମନୁଷ୍ୟର ଅହଙ୍କାରୀ ମନ । ଯିଏ ଭାବେ ସେ ସୃଷ୍ଟିତତ୍ତ୍ୱ ବୁଝିପାରିଛି, ପ୍ରକୃତିର ରହସ୍ୟ ଭେଦ କରି ପାରିଛି, ତାର ତୀକ୍ଷ୍ଣ ବୁଦ୍ଧି ସାହାଯ୍ୟରେ ବା ଅଲୌକିକ ଐଶ୍ୱରିକ ଶକ୍ତି ସାହାଯ୍ୟରେ— ସେ କୁହେ, ହେ ଅଜ୍ଞ ମାନବଗଣ, ଶ୍ରବଣ କର ସେ ତତ୍ତ୍ୱ । ଅଥବା ଉତ୍ତର ବାଢ଼େ ମନୁଷ୍ୟର ଦୁର୍ବଳ ମନ । କିଛି ନ ଜାଣିପାରିବାର ଆତଙ୍କମୟ ଅବସ୍ଥାରୁ ଉଦ୍ଧାର ପାଇବାକୁ ଯିଏ ଗୋଟିଏ ଘଟଣାର କୌଣସି ଗୋଟିଏ କାରଣ ବାହାର କରି ମନରେ ସାହସ ସଞ୍ଚୟ କରିବାକୁ ଚାହେଁ, ନିଜର ବୁଦ୍ଧିବଳ ଦେଖି ନିଜେ ମୁଗ୍ଧ ହୁଏ । ଯସ୍ୟା ମତଂ ତସ୍ୟ ମତଂ ମତଂ ଯସ୍ୟ ନ ବେଦ ସଃ, ଅବିଜ୍ଞାତଂ ବିଜାନତାମ୍ ବିଜ୍ଞାତଂ ଅବିଜାନତାମ୍—ଯିଏ କୁହେ ସେ ଜାଣିପାରିଛି ସେ ଜାଣିନାହିଁ, ଯିଏ କୁହେ ଜାଣିପାରିନାହିଁ ସେ ଜାଣିଛି !

ଦନେଇବୋଉ ଆମ ଘରେ ବିଧବା ହେବା ଦିନରୁ ରହିଛି । ଆମେ କରଣ, ସେ ବ୍ରାହ୍ମଣ । ତଥାପି ସେ ଆମଘରେ ତାର ପନ୍ଦର ବର୍ଷ ବୟସରୁ ଅଛି ଆମ ଘରର ମଣିଷ ଭଳି । ଦନେଇର ଜନ୍ମ ଏବଂ ତାର ଦୁଇମାସ ପରେ ତା'ର ବାପାର ମୃତ୍ୟୁ । ମୋ ବୋଉର ଦନେଇବୋଉ ଧରମ ଝିଅ ମଧ୍ୟ ସେଇ ଦିନୁ । ଦନେଇବୋଉର ଆଶା ଥିଲା, ଆମ ଘରେ ରହି ଦନେଇ ମଣିଷ ହବ, ପାଠ ପଢ଼ିବ, ବଡ଼ ଚାକିରି କରିବ । ପିଲାଦିନୁ ମୁଁ ଓ ଦନେଇ ଏକା ସାଙ୍ଗରେ ପାଠ ପଢ଼ିଛୁ । ମୁଁ ବହୁତ ପାଠ ପଢ଼ିଥିବାରୁ ବର୍ତ୍ତମାନ ବଡ଼ ଚାକିରି କରିଛି, ବଂଶର ମର୍ଯ୍ୟାଦା ବଢ଼ାଉଛି; କିନ୍ତୁ ଦନେଇବୋଉର ଆଶା ଧୂଳିସାତ୍ ହୋଇଛି ।

ଜଣେ ଜଣେ ଥାଆନ୍ତି, ଜୀବନ ଯେଉଁମାନଙ୍କ ପକ୍ଷରେ ଗୋଟିଏ ଉଦ୍ଦେଶ୍ୟ । ସେମାନଙ୍କର ଆଦର୍ଶ ହେଲା 'ଉଦ୍ଦେଶ୍ୟସାଧନ ଅବା ଶରୀରପାତନ' । ପିଲାଦିନୁ ହୁଏତ ଠିକ୍ କରିଦେଲେ ବଡ଼ ଇଞ୍ଜିନିୟର ବା ବଡ଼ ଡାକ୍ତର ବା ଆଇ. ଏ. ଏସ୍. ହେବେ । ପାଠ ପଢ଼ିବା ବେଳୁ ଲାଗିପଡ଼ିଲେ ତାକୁ ଉଦ୍ଦେଶ୍ୟ ରଖି ନିଜକୁ ଗଢ଼ିବାକୁ । ଇସ୍କୁଲ କଲେଜରେ ପାଠପଢ଼ା ସରିଲା, ବଡ଼ ଚାକିରି କଲେ, ନିଜର ଅକ୍ଳାନ୍ତ ପରିଶ୍ରମ ଫଳରେ ଧାପେ ଧାପେ ଉଠି ଚରମକୁ ଯାଇ ଅବସର ନେଲେ । ସେମାନଙ୍କର ଜୀବନକୁ ଅନ୍ୟ ପିତାମାତା ସେମାନଙ୍କ ପୁଅମାନଙ୍କ ଆଗରେ ଆଦର୍ଶ ହିସାବରେ ଥୋଇ କୁହନ୍ତି, ଦେଖ୍ ଅମୁକ କେମିତି ବଡ଼ ହୋଇଛି, ବିଦ୍ୟାସାଗର କିପରି ପିଲାଦିନରୁ ରାସ୍ତା ଆଲୁଅରେ ପାଠପଢ଼ି ମଧ୍ୟ ବଡ଼ ହୋଇ-

ଥିଲେ ! ଆଦର୍ଶ ରଖି ନିଜକୁ ଗଢ଼ିବାକୁ ହେବ, ନ ହେଲେ ବଡ଼ ହୋଇପାରିବୁ ନାହିଁ । ଏ ଆଦର୍ଶ ମୋତେ ଉଦ୍‌ବୁଦ୍ଧ କରିଛି ।

ଚଢ଼ିମାଡ଼ି ଯେତେବେଳେ ଦେଖେ ଏହି ବଡ଼ ହେବା ଆଦର୍ଶ ଅନ୍ୟ କେତେ ଜଣଙ୍କୁ ଆକୃଷ୍ଟ କରେ ନାହିଁ, ଯେଉଁମାନଙ୍କ ପକ୍ଷରେ ଜୀବନ ଗୋଟାଏ ଉଦ୍ଦେଶ୍ୟ ନୁହଁ, ପ୍ରକାଶ ମାତ୍ର; ଯେଉଁମାନଙ୍କ ପକ୍ଷରେ ସେ ପ୍ରକାଶ ଯେପରି ହେଉନା କାହିଁକି ଆନନ୍ଦମୟ, ଆଶ୍ଚର୍ଯ୍ୟମୟ, ଯେଉଁମାନେ କୁହନ୍ତି ନର୍ଦ୍ଦମା କୀଟ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଝଡ଼ରେ ଶୁଖିଲା ପତ୍ରପରି ସେମାନଙ୍କ ଜୀବନଯାତ୍ରା । ମୁଁ ଅକ୍ଲାନ୍ତ ପରିଶ୍ରମ କରି ବଡ଼ ହୋଇଛି; ଅଥଚ ମୋ ଆଉ ଅଇଣ୍ଠୁ ଭିତରେ କିଛି ତଫାତ୍ ନାହିଁ !

ଦନେଇ ଭାଇର ଜୀବନ ଗୋଟିଏ ଶୁଖିଲା ପତ୍ର । ମୂର୍ଖ ନୁହେଁ ସେ; ମ୍ୟାଟ୍ରିକୁଲେସନ ପର୍ଯ୍ୟନ୍ତ ପଢ଼ିଛି । ଆମ ଘରର ଗୃହପୁରୁଷର ଆଭିଜାତ୍ୟ ଅନୁସାରେ ମୋର ଏପାଖ ସେପାଖ ହେବାର ବାଟ ନାହିଁ । ସିଧାସଳଖ ଏମ୍. ଏ. ପାସ୍ କରି ବଡ଼ ଚାକିରି କରି ଧନୀ ଘରେ ବାହାହୋଇ ବର୍ତ୍ତମାନ ସମାଜରେ ମୁଁ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ।

ମୁଁ ଯେତେବେଳେ ଥାଏ ଢେଙ୍କାନାଳରେ ସେତେବେଳେ ଦିନେ ସକାଳୁ ଉଠି ବାହାରକୁ ଆସି ଦେଖିଲି ବାହାରର ପିଣ୍ଡାରେ କିଏ ଜଣେ ଘୋଡ଼ିଘାଡ଼ି ହୋଇ ଶୋଇଛି ।

କିଏ କି—ଚିତ୍କାର କଲି । କାହାର ଏତେ ସାହସ ଯେ ଜଣେ ହାକିମଙ୍କ ପିଣ୍ଡାରେ ବିନା ଅନୁମତିରେ ଶୋଇଛି !

ମୋର ଚିତ୍କାର ଶୁଣି ମୁହଁ ଉପରୁ ସାମାନ୍ୟ ଟିକିଏ ଲୁଗା କାଢ଼ି ଦନେଇ ଭାଇ କହିଲା, କାହିଁକି ପାଟିଟା କରୁଛୁ ?

ଆଶ୍ଚର୍ଯ୍ୟ ହୋଇ ପଚାରିଲି—କି ହୋ, କୁହାନାହିଁ ପଚରା ନାହିଁ ତୁମେ କୁଆଡ଼େ ଦନେଇଭାଇ ?

ଚାକିରି କରିବାକୁ ବୋଉ ପଠାଇ ଦେଇଛି—ସେ ନିର୍ଲିପ୍ତ ଭାବରେ ଗୋଦର ଭିତରୁ ଉତ୍ତର ଦେଇ ପୁଣି ଶୋଇପଡ଼ିଲା ।

—ଚାକିରି କଅଣ ରାସ୍ତାରେ ଘାଟରେ ପଡ଼ିଛି ଯେ ଗୋଟେଇ ଅଣ୍ଟିରେ ପୂରେଇ-ଦବ ଶେଷ—ବିରକ୍ତ ହୋଇ କହିଲି । ମୋର କଥା ଭଙ୍ଗୀରୁ ପରିଷ୍କାର ଜଣାଇଦେଲି ଯେ ଏଠି ସେ ସବୁ ଚଳିବ ନାହିଁ ।

ମୁଁ କି ଜାଣେ ସେ କଥା, ଦିଅ ଦାନ୍ତଘଷା ଜିନିଷ ଦିଅ, ଆଉ ଖାଉଜକୁ କିଛି ଚାହା କରିବାକୁ—କହି ସେ ଉଠିଲା ।

ତମର ବିଛଣା ପତର କାହିଁ ? —ନିରୁପାୟ ଭାବରେ ପଚାରିଲି ।

— ଖଣ୍ଡେ ଦିଖଣ୍ଡ କଅଣ ବୋଉ ଦେଇଥିଲା, ବାଟରେ ଜଣକୁ ଦେଇଦେଲି, ସେ ବିଶୀତରେ ଥରୁଥିଲା, ମୋତେ ବି ବୋଝ ଲାଗୁଥିଲା । ଭାବିଲି ତୋ ଘରେ ଅଭାବ ହବନାହିଁ, ମୋର ପୁଣି ଅଲଗା ଜଞ୍ଜାଳ କଅଣ ହେବ ?

ରାଗରେ ପିତ୍ତ ଜଳିଗଲା । କିଛି ନ କହି ସେଠୁ ଚାଲିଗଲି; କିନ୍ତୁ ଉପାୟ ନାହିଁ । ବାପା ଭାରି ସ୍ନେହ କରନ୍ତି ତାକୁ, ଆଉ ବୋଉ ବି । ମୋର ସ୍ତ୍ରୀ ନିରୁପମା ବି ବୋଧହୁଏ ତାକୁ ଟିକିଏ ସ୍ନେହ ଚକ୍ଷୁରେ ଦେଖେ ।

ଦନେଇ ଭାଇକୁ ବେଶି ଦିନ କେଉଁଠି ରହିବାର ଦେଖିନାହିଁ । ଘରେ ଅଛି, ଖାଉଛି, ପିଉଛି ଆନନ୍ଦରେ ବୁଲୁଛି—ହଠାତ୍ ଦିନେ ସକାଳୁ ଖୋଜିଲାବେଳକୁ ଦନେଇ ଭାଇ ନାହିଁ । ଦନେଇ କୁଆଡ଼େ ଗଲା ? କୁଆଡେ ଗଲା ବାସ୍ତାଟା ? ଖାଇବାବେଳ ପର୍ଯ୍ୟନ୍ତ ଯଦି ଦନେଇ ନ ଆସେ, ତେବେ ଘରେ ସମସ୍ତେ ନିଶ୍ଚିନ୍ତ ହୁଅନ୍ତି ଯେ ଦନେଇ ହୁଏତ ସେତେବେଳକୁ ଓଡ଼ିଶା ବାହାରେ । ଏଟା ଏପରି ଅଭ୍ୟାସରେ ପଡିଗଲାଣି ଯେ ସେଥିପାଇଁ ଦନେଇବୋଉ କିମ୍ବା ଘରର ଅନ୍ୟ କାହାରି କିଛି ଖିଲେଣି ପଡ଼େନାହିଁ । ଏମିତି ସେ ସାରା ଭାରତ ବୁଲିସାରିଲାଣି । ଗୋଟାଏ କାବୁଲି ସାଙ୍ଗରେ ଆଫଗାନିସ୍ଥାନ ମଧ୍ୟ ବୁଲିଆସିଲାଣି ।

କିନ୍ତୁ ଢେଙ୍କାନାଳରେ ସେଥର ସେ ଟିକିଏ ବେଶିଦିନ ରହିଗଲା ଦେଖି ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି, ବିବ୍ରତ ହେଲି ମଧ୍ୟ ।

ବିବ୍ରତ ହେଲି କାରଣ ସେ ଚାରିଆଡ଼େ କହିବୁଲିଲା ମୁଁ ତାର ଭାଇ । ତାର ଅଦ୍ଭୁତ ବେଶଭୂଷା, କଥାବାର୍ତ୍ତା ପାଇଁ ମୁଁ କେତେଥର ଉଚ୍ଚମହଲରେ ଅପଦସ୍ଥ ମଧ୍ୟ ହେଲିଣି । କିନ୍ତୁ ଅସ୍ୱୀକାର କରିବାର ମଧ୍ୟ ଉପାୟ ନାହିଁ ଯେ ସେ ମୋର ଭାଇ ନ ହେଲେ ବି ଭାଇ ଭଳି । ବାଧ୍ୟହୋଇ ମୋର ମାନ ସମ୍ମାନକୁ ଜଗି ତାକୁ ଭଲ ଧୋତି ଜାମା କିଣିଦେଲି । ଗୋଟାଏ ଅଲଗା ଘରେ ତାର ରହିବାର ଜାଗା କରିଦେଲି, ଭଲ ବିଛଣା ମଶାରି ମଧ୍ୟ କିଣି ଦେଲି । ତା'ର ଗୋଟାଏ ଚାକିରି ପାଇଁ ମଧ୍ୟ ଭିତରେ ଭିତରେ ଚେଷ୍ଟାକଲି । ତାକୁ କହିଥିଲି ମୋ କଚେରୀକୁ ଯାଇ କାମ ଶିଖିବାକୁ; କିନ୍ତୁ ରହିବା ଦିନରୁ ମାସେ ହୋଇଗଲା ତା ସହିତ ମୋର ଥରେ କି ଦୁଇଥର ଦେଖା । ବାବୁ ସକାଳୁ ଚାହା ତିନି ପିଆଲା ଖାଇ ପ୍ରାତଃଭ୍ରମଣରେ ବାହାରିଯିବେ ଯେ ଫେରିବେ ଦିନ ଏଗାରଟା ବେଳକୁ । ତା'ପରେ ଖାଇସାରି ଯୋଗନିଦ୍ରାରେ ରହିବେ ଦିନ ଚାରିଟା ପର୍ଯ୍ୟନ୍ତ । ତା'ପରେ ପୁଣି ବାହାରିଯିବେ ଚାରିପିଆଲା ଚାହା ଖାଇ ସାନ୍ଧ୍ୟଭ୍ରମଣରେ । ଫେରିବେ ରାତି ଦଶଟା ।

ଦିନେ ବଡ଼ିସକାଳୁ ଉଠି ତା ଘରକୁ ପଶିଯାଇ ଦେଖିଲି ଦନେଇ ଭାଇ ଶୋଇଛି ତଳେ, ନିଜ ପିନ୍ଧା ଲୁଗାର ଗୋଟିଏ ପଣତ ଘୋଡ଼ିହୋଇ । ରାଗରେ ମୋର ସର୍ବାଙ୍ଗ ଜଳିଗଲା । ତାକୁ ଗୋଟିଏ ପ୍ରଚଣ୍ଡ ଠେଲିଦେଇ ଉଠାଇ ପଚାରିଲି—ବ୍ୟାପାର କଅଣ ? ମୋର ଜିନିଷ ସବୁ କାହିଁ ?

ମୋର ବିଶ୍ୱସ୍ତ ଭୃତ୍ୟ କହିଲା, ଦନେଇବାବୁ ସେ ସବୁ ବିକିଦେଇ ଚାହା ଜଳଖିଆ ଖାଇଦେଇଛନ୍ତି । କ୍ରୋଧରେ ପାଗଳ ହେବାପାଇଁ ଏହାଠାରୁ ବଳି ଆଉ କଅଣ କାରଣ ଥାଇପାରେ ?

ଦଳେଇ ଭାଇ ମୋ ଚାକର ଉପରେ ବିରକ୍ତ ହୋଇ କହିଲା — ଛିଃ, ବାବୁଙ୍କୁ ଏ କଥା କହନ୍ତି ? ସକାଳୁ ରାଗିଲେ ମନ ଖରାପ ହେବ ନାହିଁ ? ଆରେ ହଁ, ତୋତେ ଆଉ କଅଣ କହନ୍ତି, ତୁ ତ ଜାଣୁ ମୁଁ ଦିନକୁ କେତେଥର ଚାହା ଖାଏ । ଆଜିକି ଆଉ କେତେଥର ଚାହା କରିବ ତୁ କହ ! ନା, ନା, ତୁ କହ । ଆରେ ଭାଇ, ମୁଁ ଜାଣେ ତୋ ମାନକୁ ଜଗି ମୋତେ ଚଳିବାକୁ ହେବ ···

—ଥାନ୍ତୁ, ଥାଉ,···ତୁମେ ···ତୁମେ ···ଏଇକ୍ଷଣି ··· ରାଗରେ ତମତମ ହୋଇ ଚାଲିଗଲା ।

ସେ ଦିନ ଖାଇଲାବେଳ ଗଡ଼ିଗଲା, ଦଳେଇଭାଇର ଦେଖାନାହିଁ ।

ଯାଃ, ଜଞ୍ଜାଳ ଯାଇଚି । ଆଶ୍ୱସ୍ତ ହେଲି ।

ଖାଉ ଖାଉ ଗୋଟାଏ ତରକାରିର ଅଦ୍ଭୁତ ସ୍ୱାଦ ପାଇ ଆଶ୍ଚର୍ଯ୍ୟ ହୋଇ ପଚାରିଲି, ଏ ତରକାରିଟା କଅଣ ତୁମର ତରକାରି ରାନ୍ଧିବାର ଗବେଷଣାର ଫଳ ?

ନରୁ ତଳକୁ ମୁହଁ ପୋତି କହିଲା— ଏ ରାନ୍ଧିବା ବତେଇଛନ୍ତି ଦଳେଇ । କାଲି ମୁଁ ରାନ୍ଧୁ ରାନ୍ଧୁ ସେ ରୋଷେଇଶାଳକୁ ପଶିଆସିଲେ । ମୁଁ ପରିହାସ କରି ପଚାରିଲି, ମାଛ କେମିତି ରନ୍ଧା ହୁଏ ? ସେ କହିଲେ, ପ୍ରଥମେ ମାଛକୁ ଘିଅରେ ଭାଜିଦିଅ, ହରଡ଼ ଡାଲି ସିଝାଇ ସେଥିରେ ତାକୁ ପକାଅ । ସେଥିରେ ଲୁଣ, ହଳଦୀ ମସଲା ପକାଅ । ତା'ପରେ ନଡ଼ିଆ, ଚିନି ଓ ଦୁଧ ପକାଅ । ସବା ଶେଷରେ ତରକାରି ଉତାରିବାବେଳେ ଚାହାପାଣି । ଦେଖିବ କି ଚମତ୍କାର !

ଧେତ୍, ଉଠାଅ, ଉଠାଅ ଏ ତରକାରି—ରାଗରେ ତରକାରି ତାଟିଆ ଠେଲିଦେଲି ।

ନରୁର ଆଖି ଛଳ ଛଳ ହୋଇଗଲା । ମୋ ମନଟା ବି କେମିତି ଉଦାସ ହୋଇଗଲା । ଗାଁକୁ ଚିଠି ଲେଖିଲି, କଟକକୁ ବାପାଙ୍କ ପାଖକୁ ବି ଚିଠି ଲେଖିଲି । କେଉଁଠୁ କିଛି ଉତ୍ତର ଆସିଲା ନାହିଁ । ବୁଝିଲି ଦଳେଇ ଭାଇ ପୁଣି ଫେରାର୍ । ବର୍ତ୍ତମାନ ହୁଏତ ପ୍ରୟାଗ ବା ବଦରିକାଶ୍ରମରେ କେତେଦିନ ହୁଏତ ଓପାସ ରହୁଚି ଅଥବା କା ଘରେ ଚାକର କାମ କରି ଦୁଇବେଳାର ଆହାର ଜୁଟାଇ ନେଇଚି ।

କିନ୍ତୁ ଗଣେଶପୂଜା ଛୁଟିରେ ଗାଁକୁ ଆସି ଶୁଣିଲି ତା ପୂର୍ବଦିନ ଅଧରେ ଦଳେଇ ଭାଇର ହଠାତ୍ ଆବିର୍ଭାବ ହୋଇଚି । ସକାଳୁ ଉଠି ବାପା ଦେଖନ୍ତି ତ ବାହାର ପିଣ୍ଡାରେ ନିଜ ପିନ୍ଧାଲୁଗା ଘୋଡ଼ିହୋଇ ଦଳେଇ ଘୁଙ୍ଗୁଡ଼ି ମାରୁଚି । ଶରୀରର ନିମ୍ନାର୍ଦ୍ଧ ପିଣ୍ଡା ବାହାରେ ପଡ଼ିଚି ଆଉ ବର୍ଷାରେ ଭିଜିଯାଇଚି ।

ଗଣେଶପୂଜା ଆମ ଘରେ ବଡ଼ ଆଡ଼ମ୍ବରରେ ହୁଏ ହୁଏ । ଏଥର ବାପା କହିଲେ —ପୂଜା କରିବ ଦଳେଇ ।

ପୂଜା ବେଳ ଆସିଗଲା; କିନ୍ତୁ ଦଳେଇ କାହିଁ ?

ବୋଉ କହିଲା, ଦେଖିଆସିଲୁ ପାଣମାଳରେ । ଅଗତ୍ୟା ଗଲି ଖୋଜ ତାହାର କରିବାକୁ । ଖୋଜି ଖୋଜି ଯାଇ ପହଞ୍ଚିଲି ପାଣ ମାଳରେ । ଅନେକ ସେଠି ତାଙ୍କୁ ଘେରି ବସିଛନ୍ତି । ଦନେଇ ଭାଇ ସେମାନଙ୍କୁ ବୁଝାଉଛି । ମୁଁ ନୀରବରେ ପଛରେ ଛିଡ଼ାହେଲି । ବକ୍ତବ୍ୟର ବିଷୟ ହେଉଛି ଉଡ଼ାଜାହାଜ । କିଛିକ୍ଷଣ ଆଗେ ଗୋଟାଏ ଉଡ଼ାଜାହାଜ ଦଣ୍ଡ ଉପରେ ଉଡ଼ିଯାଇଛି, ତାର ମୃଦୁ ଗୁଞ୍ଜନ ଏପର୍ଯ୍ୟନ୍ତ ଶୁଭୁଛି । ଦନେଇ ଭାଇ କହୁଛି, "ଦେଖ ମଣିଷର ବୁଦ୍ଧି କେତେ ! ଲୁହାକୁ ଆକାଶରେ ଉଡ଼ାଇଛି ! ଶିଳ ଶିଳପୁଆ ଗଗନରେ ଉଡ଼ୁଛନ୍ତି ।"

ଟନେଇ ମଲିକ ବଙ୍କା ଲୋକଙ୍କ ଭଳି ପଦ ଯୋଡ଼ିଦେଲା, "ଶିମୁଳି ତୁଳା କହୁଛି ମତେ ରଖ !"

ଦନେଇ ଭାଇ ଉତ୍ସାହିତ ହୋଇ କହିବାକୁ ଲାଗିଲା, "ହରି ବୋଲ ଭାଇ ହରି ବୋଲ, ଭାସିଲା ପଥର ବୁଡ଼ିଲା ସୋଲ । ଏ ଉଡ଼ାଜାହାଜ ଯିଏ ବାହାର କରିଛି ସିଏ ବି ମଣିଷ ! ଆଉ ଆମେ ବି ମଣିଷ !! ଆଜ୍ଞା ଦେଖ, ଚଇନା କହୁଥିଲା ଏ ଶବ୍ଦ ଉଡ଼ାଜାହାଜର ନୁହେଁ, ଭଅଁର ଘଡ଼ିର, ସେ ବି ମଣିଷ ! ସବେ ହୋଇବେ ଏକାକାର, ଭେଦର ନଥିବ ବିଚାର ।"

କି ଅବାନ୍ତର ଏ କଥାବାର୍ତ୍ତା ! ବିରକ୍ତ ହୋଇ ବାଧା ଦେଇ କହିଲି, "ଆଉ, ପୂଜା କରିବ ଆସ, ସମସ୍ତେ ଅନାଇ ବସିଛନ୍ତି ।"

ମୋତେ ଦେଖି ଆନନ୍ଦରେ ତାର ଆଖି ଉଜ୍ଜ୍ୱଳ ହୋଇଗଲା । ସେତିକି ମାତ୍ର ତାହାର ସ୍ନେହର ପ୍ରକାଶ । ତରତର ହୋଇ ଉଠିଆସିଲା ଘରକୁ । ଗାଧୋଇ ଚିତା ଚୈତନ କରି ସେ ପୂଜା କରି ବସିଲା । ନରୁ ଧୂପ ଜାଳିବାରେ ବ୍ୟସ୍ତ । ବୋଉ ନୈବେଦ୍ୟ ସଜାଉଛି । ଆଉ ଦନେଇଭାଇ ଅବିରାମ ପ୍ରଚଣ୍ଡ ଶବ୍ଦରେ ଘଣ୍ଟା ବଜାଇ ଚାଲିଛି, କେବଳ ଶୁଭୁଛି ତାର ଅନୁସ୍ୱାର ବିସର୍ଗର ଶବ୍ଦ ।

କାନ ଡେରି ଶୁଣିବାକୁ ଚେଷ୍ଟାକଲି କି ଶ୍ଲୋକ ବୋଲୁଛି ଦନେଇ ଭାଇ । ଦେଖିଲି ଅନୁସ୍ୱାର ବିସର୍ଗଗୁଡ଼ିକ ସମ୍ପୂର୍ଣ୍ଣ ସ୍ୱାଧୀନ, ଶବ୍ଦର ପରାଧୀନତା ନାହିଁ ସେମାନଙ୍କର । ଶୁଣିଲି ଅନୁସ୍ୱାର ବିସର୍ଗ ମିଶି ସେ ଏକ ସ୍ୱାଧୀନ ମୁକ୍ତ ବିହଙ୍ଗମର ଧାଡ଼ି ଉଡ଼ିଯାଉଛି ଆକାଶର ଉଦ୍ଦେଶ୍ୟବିହୀନ ମାର୍ଗରେ । ସବୁ ଶୁଣି ପାରିଲି ନାହିଁ, ଘଣ୍ଟାର ପ୍ରଚଣ୍ଡ ଶବ୍ଦରେ ସେ ଅଦ୍ଭୁତ ଶ୍ଲୋକ ଅବଲୁପ୍ତ ।

ବହୁ କଷ୍ଟରେ ହସ ଚାପିରଖି ଛିଡ଼ାହେଲି । ସେ ଅଦ୍ଭୁତ ପୂଜା ଶେଷ ହେଲା ।

ପଚାରିଲି, "ହଇହୋ, ଦନେଇ ଭାଇ ! ସେ କି ଶ୍ଲୋକ ବୋଲୁଥିଲ ? କେଉଁ ଶାସ୍ତ୍ରରେ ସେ ଶ୍ଲୋକ ଅଛି ?" ଦନେଇ ମୁରୁକି ହସି ଜିଭ କାମୁଡ଼ି ମୋ ହାତ ଧରିପକାଇ କହିଲା, "ତୋତେ ମୋ ରାଣ, ବାପା ବୋଉଙ୍କୁ କହିବୁ ନାହିଁ ଏ କଥା ।"

ସେ ଦିନ ରାତିରେ କିନ୍ତୁ ଦନେଇ ଭାଇକୁ ଗୋଟାଏ ନୂଆ ରୂପରେ ଦେଖିଲି । ଗମ୍ଭୀର ଭାବରେ ସେ ଖଟ ଉପରେ ଶୋଇ ନିବିଷ୍ଟ ମନରେ କଅଣ ଭାବୁଛି । ଦନେଇ ଭାଇ ଭାବୁଚି ! ମୋର ସଶବ୍ଦ ପ୍ରବେଶ ମଧ୍ୟ ତାଙ୍କୁ ମାଲୁମ ପଡ଼ିଲା ନାହିଁ ।

"ଦନେଇ ଭାଇ, ଭାବୁଚ ?"—ଠେଲିଦେଇ ଆଶ୍ଚର୍ଯ୍ୟ ଭାବରେ ପଚାରିଲି ।

ଦୀର୍ଘ ନିଃଶ୍ୱାସ ପକାଇ ସେ କହିଲା, "ଭାବୁଚି କେମିତିକା ମରଣ ଭଲ, କେଉଁ ବୟସରେ ମଲେ ଭଲ । ହରସାହୁ ମହାଜନ ମଲାବେଳକୁ ଟଙ୍କା ଥଳି ଖାଲି ଦରାଣ୍ଡିଲା । ଟଙ୍କା ଥଳି ବୋଲି ନିଜର ଧୁଅ ନିଜ ଖୋସଣିରେ ଗୁଞ୍ଜିଲା । ବୃନ୍ଦାବନବାବୁ ମଲେ ସେ ମରିବା ଦୁଇଘଣ୍ଟା ଆଗରୁ ସାମନାରେ ଟଙ୍ଗା ହୋଇଥିବା ଶ୍ରୀକୃଷ୍ଣଙ୍କ ଚିତ୍ରକୁ ଚାହିଁ ଚାହିଁ ମଲେ । ଜନାର୍ଦ୍ଦନ ମିଶ୍ରେ ଦାନ୍ତ ଘଷୁ ଘଷୁ ସେଇଠି ଟଳିପଡ଼ିଲେ ।"

ମୁଁ ଥମକିପଡ଼ିଲି ଦନେଇ ଭାଇ କଥା ଶୁଣି । ଲୋକଟା ସତେ ମରିଯିବ ନା କଅଣ !

ଟିକଏ ରୁକି ରହି ପୁଣି ସେହି ଅବାନ୍ତର ପ୍ରଶ୍ନର ସୁଅ—"ହଇରେ, ତୁ'ତ ଏତେ ପଢ଼ିଚୁ—ଜୀବନ କଅଣ ? କେମିତି ଏସବୁ ଘଟୁଚି ? କିଏ ଗୋଟାଏ ଭଗବାନ ଅଛନ୍ତିକରେ ? ଇଏ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ପୋକ, ମାଛି, ମଶା, ମଣିଷ, ବାଘ, ସବୁ ସିଏ କରିଚି ? ଗଛର ମରଣ କରୁଛି ସେଇ, ଗଛରେ ଫୁଲ ଫୁଟାଉଚି ସେଇ ? ପାପ କଅଣ ? ପୁଣ୍ୟ କଅଣ ?"

ପ୍ରଶ୍ନ ପଚାରି ସେ ପୁଣି ନୀରବ ରହିଲା । ଉତ୍ତର ଦେବାକୁ ଯାଇ ପ୍ରାଚ୍ୟ ପାଶ୍ଚାତ୍ୟ ଦର୍ଶନ ବୁଝାଇବାକୁ ଲାଗିଲି, ବୈଜ୍ଞାନିକମାନଙ୍କର ମତ କହିବାକୁ ଲାଗିଲି ।

କିନ୍ତୁ ଅନାଇଁ ଦେଖିଲି ସେ ସେମିତି ଶୂନ୍ୟଦୃଷ୍ଟିରେ ଚାହିଁ ରହିଚି । ବୁଝିଲି ମୋ କଥା ସେ ଟିକଏ ବି ଶୁଣି ନାହିଁ । ବିରକ୍ତ ହୋଇ ଉଠିଗଲି ।

ପରଦିନ ଖାଇବା ବେଳ ଗଡ଼ିଗଲା । ଦନେଇ ଭାଇର ଦେଖାନାହିଁ । ଘରେ କିଛି ଗୁଣ୍ଡିଲା ନାହିଁ, କେହି ବି ପଚାରିଲେ ନାହିଁ ଗାଁଟା ସାକରେ ଦନେଇ କୁଆଡ଼େ ଗଲା ।

ଦଶବର୍ଷ ହୋଇଗଲାଣି । ମହାନଦୀରେ କେତେ ପାଣି ସାଗର ଗର୍ଭକୁ ଗଲାଣି । ଦନେଇ ଭାଇର ଦେଖାନାହିଁ । ମୋର ପଡ଼ିଆଠି ଗଣ୍ୟମାନ୍ୟ ହେବାର ନିର୍ମମ ଚେଷ୍ଟା ସଫଳ ହୋଇଚି । ଦନେଇକୁ ସମସ୍ତେ ଭୁଲିଗଲେଣି ।

କେବଳ ନିରୁପମା ମଝିରେ ମଝିରେ ସେଇ ଅଦ୍ଭୁତ ତରକାରି କରେ । ତରକାରିର ନାଁ'ଟି ଆମ ଘରେ ହୋଇଚି 'ଦନେଇ ଭୁଜଣ' । ବାପା ଦିନେ ଦିନେ କହନ୍ତି—ବୋହୂ, ଆଜି ଟିକେ ଦନେଇ ଭୁଜଣ ରାନ୍ଧିବଟି ।

ଦନେଇ ଭୁଜଣ ମୁଁ କେବେ ଛୁଇଁ ବି ନଥିଲି । ସେଦିନ ଖାଇଲି । ବାଃ, ବେଶ୍ ଭଲ ଲାଗୁଚି ତ ! ସେଦିନ ଥୋଡ଼ାଏ ବେଶିଆରୁ ଖାଇଗଲି । ଖାଇସାରି ଶୋଇବାବେଳେ ଦନେଇ ଭାଇର ସେ ପ୍ରଶ୍ନଗୁଡ଼ିକ ମୁଣ୍ଡରେ କେମିତି ଗୋଟାଏ ମୃଦୁ ଧକ୍କା ମାରିବାକୁ ଲାଗିଲା ।

ଡରମାଡ଼ିଲା ବାଳେ କଅଣ ହୋଇଯିବ ପରା ? ଡାକ୍ତର ଡକାଇଲା । ଡାକ୍ତର ସବୁ ଶୁଣି ଓ ପରୀକ୍ଷା କରି କହିଲେ—ଏ ଆପଣଙ୍କର 'ଦନେଇ ଭୁଉଣ' ଗୁଣ । ଟିକଏ ହଜମି ଔଷଧ ଖାଇଦେଲେ ସବୁ ଠିକ୍ ହୋଇଯିବ ।

□□□

# କାଳରୂପେଣ

ବିଜୟବାବୁ ଓ ତାଙ୍କ ସ୍ତ୍ରୀ ଆଦରଣୀ ଦେବୀ ପୁଅ ଅଜୟର ଜବାବରେ ସ୍ତମ୍ଭିତ ହୋଇଗଲେ ।

ବିଜୟବାବୁ କଚେରୀରୁ ଝମ୍ ଝମ୍ ଫେରି ନାନା ରଙ୍ଗର ତାଳପତ୍ରା ଛତାଟି ତେର ଛିଡ଼ାହେଲେ । ବିଜୟବାବୁଙ୍କ ବୃଦ୍ଧା ମାତା ଧାଇଁଆସି ତାଙ୍କ ହାତରୁ ଜୋତା ହଳଟି କାଢ଼ିନେଇ ପାଟିକରି କହିଲେ, "ଇଲୋ ବୋହୂ, ତୋତେ କେତେଥର କହିଛି, ତୁ ଶୁଣିବୁ ନାହିଁ; କଚେରୀରୁ ଫେରିବାବେଳେ ତୋର ଯେତିକ କାମ । ଏଡ଼େ ବଦ୍‌ମାସି ତୁ ।"

ଆଦରଣୀ ଦେବୀ ରୋଷେଇଶାଳରୁ ଦଉଡ଼ି ଆସି ଶାଶୁ ହାତରୁ ଜୋତା ନେଇ ରଖିଦେଇ କହିଲେ, "ମୁଁ ପରା ଅଜୁର ଜଳଖିଆ ତିଆରି କରୁଥିଲି । ସେ ପରା ତରତର ହେଉଛି କୁଆଡ଼େ ଯିବ ବୋଲି ।"

"ତୋ ପୁଅ କାମ ଆଗେ ନା ମୋ ପୁଅ କାମ ଆଗେ ? ମୁଁ ଏ ଘରେ କଏ ଯେ ମୋ କଥା କଏ ଶୁଣିବ ?" ଲୁହ ପୋଛୁପୋଛୁ ସେ କହିଚାଲିଲେ, "କେତେଥର କହିଲି, ନଣ୍ଡା, ତୋ ପିଲାପିଲି ବେଳ ହୋଇଗଲାଣି, ଅଜୁ ବ ଯୋଗିଅ ହେଲାଣି, କାନ୍ଧକୁ କାନ୍ଧ ଯୋଡ଼ିଦେବା ବେଳ ହେଲାଣି, ଏଥର ତୁ ତାକୁ ଖଣ୍ଡେ କାମ କରାଇଦେଇ ଘରେ ବସ । ତା ହେଲା ନାହିଁ, ଥରକୁଥରର ପିଲାପିଲି ହେଲାଣି, ଥରକୁଥର ଫାଇନ୍ ଗଡ଼ାଇଲୁ··· କାହିଁକ······ଖଟି ଖଟି ମୋ ପୁଅ···" ସେ ଆଉ କହି ପାରଲେ ନାହିଁ ।

ବିଜୟବାବୁ ବିଚଳିତ ଭାବରେ ଏଣେତେଣେ ଚାହିଁ ଟିକଏ ବିରକ୍ତ ଭାବରେ କହିଲେ, "ବୋଉ, ତୁ ଚୁପ୍‌କର, ଅଜୁ ସେ ଘରେ ଅଛି । ଆଲୋ, ତୁ ଏତିକ ବୁଝୁନୁ, ପିଲାଏ ଯେତେବେଳ ବାପା ଅର୍ଜିତ ଧନ ଉପରେ ରହିବେ ସେତେ ତାଙ୍କ ବୁଦ୍ଧି ଖୋଲିବ; ନାଚବେ, କୁଦିବେ, ଖିଆ ଭଲ ରହିବ, ନାନା କଥା ଚଳିବାକୁ, ଶିଖିବାକୁ ବେଳପାଇବେ । ଏହି ବୟସରୁ ପଇସା ପଇସା ହେଲେ ଖାଲି ବୁଦ୍ଧି ଖରାପ ହୋଇଯିବ ସିନା ! ଯେତେ ଅଳ୍ପ

ବସ୍ତୁଠାରୁ ପଇସା, ମାନ୍ୟ ଏ ସବୁ ଖୋଜିବେ, ମଣିଷ ମନତଳେ ଯେତେ ହିଂସା, ସ୍ୱାର୍ଥ ଆଦି ଖରାପ ଗୁଣ ଅଛି ସବୁ ପଦାକୁ ବାହାରିପଡ଼ିବ । ଆଉ ମଣିଷ ହେବେ କ'ଣ ? ଯେତେ ବେଶି ଦିନ ସେମାନଙ୍କ ଖାଇବା ପିଇବା ଚଳ୍ତା ବାପା ଉପରେ ଥିବ, ତାଙ୍କ ଖରାପ ପ୍ରବୃତ୍ତିଗୁଡ଼ିକୁ ତାଙ୍କ ବୁଦ୍ଧି ସେତେ ମିଳେଇଦବ ।"

"ତୁ ଆଉ ବଅକଳା ଗୁଡ଼େ । ମୋ କଥା ମାନ ତୁ ଏଥର ଅଜୁକୁ ଗୃହକର୍ମ ଶଣ୍ଢେ କରେଇଦେଇ ଘରେ ବସ, ଯଦି ଆଉ କିଛିଦିନ ବଞ୍ଚିବାକୁ ଚାହୁଁ ।"

ଅଜୟ ସେତେବେଳେ ଆରପାଖ ଘରେ ବସି ନିର୍ବିଘ୍ନରେ ଜାଗ୍ରତ ସ୍ୱପ୍ନ ଦେଖିବା ପାଇଁ ଗୋଟିଏ ସ୍ଥାନ ଖୋଜୁଥିଲା । ଘରେ ଠାଏ ଠାଏ ବାଲିଟି, କଂସା ଆଦି ରଖା ହୋଇଛି, କଣାଘରର ବର୍ଷାପାଣିକୁ ବାନ୍ଧିରଖିବାକୁ । ଅଜୟର ହେବୁ ହେବା ଦିନରୁ ଏଇ ସନ୍ତସନ୍ତିଆ ଦୁଇ ବଖରା ଚାଳଘର । ବର୍ଷା ଦିନରେ ଏହି ହିନସ୍ତା ସହି ସହି ବର୍ଷାଋତୁ ପ୍ରତି ତା'ର ଗୋଟାଏ ଆତଙ୍କ ଜାତ ହୋଇଛି । କବିମାନଙ୍କର ବର୍ଷାର ଜୟଗାନ ତା'ର ଘୃଣାକୁ କେବଳ ଘନୀଭୂତ କରିଛି । ସେଥିରେ ପୁଣି ଏତିକ ଟିକିଏ ଟିକିଏ ଦୁଇ ବଖରା ଘରେ ରହିବାକୁ ଆଠଜଣ—ଭାଇ ଭଉଣୀ ଛ' ଏବଂ ବାପା, ବୋଉ । ଅତିଥି ଅଭ୍ୟାଗତ ତ ଅଛନ୍ତି । ବିଜୟବାବୁ କାହାରିକୁ ମନାକରନ୍ତି ନାହିଁ । ଗାଁରୁ ଯେତେ ଲୋକ ଆସନ୍ତି ସମସ୍ତଙ୍କୁ ଖାଇବାକୁ ଦେଇ ଶୋଇବାକୁ କୌଣସି ପ୍ରକାରେ ଗୋଟିଏ ସ୍ଥାନ କରିଦିଅନ୍ତି । ଚୁଟିମୁଣ୍ଡିଆ ଦିନେଇ ସାହୁଙ୍କୁ ବିଜୟବାବୁ ଯେତେବେଳେ ନିଜର ତକିଆ ଦେଇ ନିଜ ମୁଣ୍ଡତଳେ ହାତଦେଇ ଶୁଅନ୍ତି, ଅଜୟ ଦାନ୍ତ କଡ଼ମଡ଼ କରୁଥାଏ ।

ଏତେ କଷ୍ଟରେ ଥାଇ ମଧ୍ୟ ସେ କଷ୍ଟକୁ କଷ୍ଟ ମନେକରେ ନାହିଁ । ସବୁ କଥାକୁ ଆଖି ବୁଜିଦେଇ ସେ ମନଦେଇ ପଢ଼ିବାରେ ଲାଗିଛି ଭବିଷ୍ୟତର ସୁଖର ଆଶାରେ; କିନ୍ତୁ ତଥାପି ମଝିରେ ମଝିରେ ମନ ତା'ର ବିଗିଡ଼ିଯାଉଥାଏ । ଭାବେ, ଯେତିକ ହେଲା ଯେତିକ ଥାଉ, ଏଥର ପୋଥିରେ ଡୋର ବାନ୍ଧି ବାପାଙ୍କ ଭଳି ଛୁଣ୍ଡା ଛତା ଜାକି କଚେରୀରେ ଛୁଡ଼ାହୁଏ । ଯେ କଥା ମନକୁ ଆସିବା ମାତ୍ରକେ କିନ୍ତୁ ମନ ତା'ର ବିଦ୍ରୋହ କରୁଥାଏ । ଏମିତି ସିମ୍ପ୍ଲୁଡ଼ି କିରାଣୀ ହୀନ ଜୀବନ ଯାପନକରି ଲାଭ କ'ଣ ? ନା, ମୁଁ ମଣିଷ ହେବି, ମୁଁ ତ ସ୍କୁଲର ଶ୍ରେଷ୍ଠ ଛାତ୍ର, କାହିଁକି ନ ହେବ ? ବାପାଙ୍କଭଳି ଅଙ୍କ ଜୀବନ ଯାପନ କରିବାରେ କି ସାର୍ଥକତା ଅଛି ?

ପଦ୍ମତୋଳା ବୋଲିଲେ ସାପ ଯେପରି ଫଁ କରି ଗାତରୁ ବାହାରିଆସେ, ଜେଜେମା'ର କଥା ଶୁଣି ଅଜୟ ଘର ଭିତରୁ ସେମିତି ବାହାରି ଆସି କହିଲା, "କାହିଁକି, ପୋଷିବାର ଯଦି କ୍ଷମତା ନଥିଲା, ତେବେ ଏତେ ପିଲା ଛୁଆ କରିବାକୁ କିଏ ଦ୍ୱାହି ଦେଇଥିଲା ?"

ବିଜୟବାବୁ ଚମକିତ ହୋଇ କିଛିକ୍ଷଣ ବଲବଲ କରି ପୁଅ ଆଡ଼କୁ ଚାହିଁ ଧୀରେ ଧୀରେ କହିଲେ, "ବୋଉ ତ କିଛି ତୋତେ ଖରାପ କଥା କହୁନ ଅଜୁ ! କେଉଁ ଦିନ ଦିନେ ହଠାତ୍......

ଅଜୟ ସେହିପରି ସ୍ୱରରେ ପଚାରିଲା—କ'ଣ ହଠାତ୍ ?

ବିଜୟବାବୁ ବୁଝିଲେ ପୁତ୍ରର ଏ ପ୍ରଶ୍ନ ତାଙ୍କୁ ଆଘାତ ଦେବା ପାଇଁ ଉଦ୍ଦିଷ୍ଟ । ତଥାପି ପୁତ୍ରର ମନ ତରଳାଇବା ପାଇଁ ସେ କହିଲେ, "କେଉଁ ଦିନ ହଠାତ୍ ହୁଏତ ମୁଁ ଆଖି ବୁଜିଦେବି···ସେତେବେଳେ······"

ଅଜୟ କିନ୍ତୁ ସେହିପରି ଉତ୍ତେଜିତ ଭାବରେ କହିଲା, "ମନୁଷ୍ୟ ସୃଷ୍ଟି ଆଜକୁ ହଜାର ହଜାର ବର୍ଷ ହେବ ହେଲାଣି । ସମସ୍ତେ ଦିନେ ନା ଦିନେ ଆଖି ବୁଜିଦେବାକୁ ବାଧ୍ୟ ଏବଂ କରିଆସିଛନ୍ତି । ଏଥିରେ ଏତେ ଚିନ୍ତିତ ବା ଆଶ୍ଚର୍ଯ୍ୟ ହେବାର କ'ଣ ଅଛି, ମୁଁ ବୁଝୁନାହିଁ । କିନ୍ତୁ ମୁଁ ପଚାରୁଛି, ସନ୍ତାନମାନଙ୍କୁ ଯାହାର ସ୍ୱାସ୍ଥ୍ୟ ଓ ଶିକ୍ଷା ଦେବାର କ୍ଷମତା ନାହିଁ ତାହାର ସନ୍ତାନ ଉତ୍ପାଦନରେ କି ଅଧିକାର ଅଛି ? ଯେ ଏତିକି ନବୁଝେ ସେ ଭଗବାନଙ୍କ ପାଖରେ ଏବଂ ସମାଜ ପାଖରେ ଦୋଷୀ । କାହିଁ, ବୋଉ ତ ଦିନ ରାତି ଖଟୁଚି, ସେ ତ କେବେହେଲେ କିଛି କହୁନି ।"

ଆଦରିଣୀ ଦେବୀ ବ୍ୟସ୍ତ ହୋଇ ଅଜୟର ମୁହଁ ଚାପିଧରି କହିଲେ, "ଅଜୁ ତୁ ବାପାଙ୍କୁ ଏ ସବୁ କ'ଣ କହୁଚୁ ?"

ଅଜୟ ବୋଉର ହାତ ଛଡ଼ାଇଦେଇ କହିଲା, "ନା ବୋଉ, ଆଜି ମୁଁ ସବୁ କହିବି । ମୋ ମନ କେବଠୁଁ ବିଦ୍ରୋହ କଲାଣି । ଆଉ ଭୟ ଭକ୍ତି କରି ଲାଭ ନାହିଁ । ବାପା ତୋ ଦେହ ମୁଣ୍ଡକୁ କିଏ ଚାହିଁଛନ୍ତି ?"

"ସେ କଥା କ'ଣ ବୁଝିବୁ ତୁ ? ଚୁପ୍ କର ।" ଆଦରିଣୀ ଦେବୀ ବିରକ୍ତିଭରି କହିଲେ ।

"ନ ବୁଝିଲେ ନାହିଁ, କିନ୍ତୁ ମୁଁ ଯେ ପାଠ ପଢ଼ିଛି ଖାଲି କ'ଣ ମୋର ସୁଖ ହବ ଏଥିରେ ? ତୁମ ସୁଖ ପାଇଁ ଆଦୌ ନୁହେଁ ?"

ବିଜୟବାବୁ ପୂର୍ବପରି ସ୍ତମ୍ଭିତ ହୋଇ ଛିଡ଼ାହୋଇ ରହିଲେ । ଆଦରିଣୀ ଦେବୀ କ'ଣ କରିବେ ବୁଝି ନ ପାରି ଥରେ ସ୍ୱାମୀଙ୍କ ମୁହଁରେ, ଥରେ ପୁତ୍ର ମୁହଁରେ ହାତଦେବାକୁ ଲାଗିଲେ ।

ବିଜୟବାବୁ ନିଜକୁ ସମ୍ଭାଳିନେଇ ଧୀରେ ଧୀରେ କହିଲେ, "ମୁଁ କ'ଣ ତୋତେ ପାଠ ପଢ଼ିବାକୁ ମନାକଲି ? କରିଚି କେବେ ? ତୁ ବିଲାତ ଗଲେ ବି ମୁଁ ପଢ଼େଇବି । କିନ୍ତୁ ତୋ ବୋଉ ଯେ ଦଶ ମାସ ଦଶ ଦିନ ଗର୍ଭରେ ଧରିଥିଲା, ତା'ର ଫଳ କ'ଣ ଏହାହିଁ ଦେଲୁ ?"

ଅଜୟ ଧିକ୍କାର କରି କହିଲା, "ବେଶି ବଢ଼େଇ କହି ଲାଭ କ'ଣ ? ମୋଟେ ଆଠ ମାସ । ଦଶ ମାସ ଦଶ ଦିନ ଧାରଣ କରିବାର କ୍ଷମତା ନାହିଁ ।"

ପ୍ରତ୍ୟେକ ଗର୍ଭ ସଞ୍ଚାରଠାରୁ ଆରମ୍ଭ କରି ମାତାର ଯେଉଁ ଦୁଃଖ କଷ୍ଟର ଗୌରବ-ମୟ ଇତିହାସ ଆଦରିଣୀ ଦେବୀ ମର୍ମେ ମର୍ମେ ଜାଣନ୍ତି, ତାହା ଯେ ଏପରି ଭାବରେ ଆଘାତ ଦେବାକୁ ଫେରିଆସିବେ—ଏ କଥା ସେ କେବେ କଳ୍ପନା କରିନଥିଲେ ।

ବଜସ୍ବବାବୁ ସନ୍ତାନ ପାଳନରେ ଅନେକ ଝଡ଼ଝଞ୍ଜା ମଧ୍ୟ ସହିଚନ୍ତି । ଆଦରଣୀ ଦେବୀ ଏହାର ଅଧିକାଂଶ ଭାର ବହନ କଲେ ମଧ୍ୟ ବଜସ୍ବବାବୁଙ୍କ ଚନ୍ତା, ଉଦ୍‌ବେଗ, ପରିଶ୍ରମ କମ୍ ନୁହେଁ । ସନ୍ତାନ ପାଳନରେ ପରସ୍ପରର ସାହାଯ୍ୟ ସହାନୁଭୂତି ପରସ୍ପରକୁ ଗଭୀର ଭାବରେ ପରସ୍ପର ପ୍ରତି ଆକୃଷ୍ଟ କରିଚ । ବଜସ୍ବବାବୁଙ୍କ ଆଖିରେ ତେଣୁ ଆଉ କୌଣସି ନାରୀ ଏଡ଼େ ମହୀୟସୀ, ଏଡ଼େ ସୁନ୍ଦର ଦଶନ୍ତି ନାହିଁ । ଏଥିପାଇଁ କଥା ପଡ଼ିଲେ ବଜସ୍ବବାବୁ କୁହନ୍ତି ଯେ, ପାଶ୍ଚାତ୍ୟ ଦେଶରେ ଏ ଦାୟିତ୍ବ ପର ଉପରେ ମୁଖ୍ୟତଃ ନ୍ୟସ୍ତ ଥାଏ ବୋଲି ସେଠି ସ୍ବାମୀ ସ୍ତ୍ରୀ ଛାଡ଼ପତ୍ର ବେଶି ବଢ଼ୁଚ । ଦେହର ଆକର୍ଷଣ ତ କ୍ଷଣିକ, ମନର ଆକର୍ଷଣ ତ ମୋହ । କର୍ମର ସାଥୀ ପ୍ରତି ଆକର୍ଷଣ ଚିରସ୍ଥାୟୀ । ଜୀବନ ସଂଗ୍ରାମ ତାଙ୍କୁ ଆଉ କିଛି ଶିକ୍ଷା ଦେଉ ନଦେଉ, ଦେଇଚ ଅସୀମ ଧୈର୍ଯ୍ୟ । ତଥାପି ସେ ଆଜି ଧୈର୍ଯ୍ୟ ରଖିପାରିଲେ ନାହିଁ । ରାଗରେ ଥରଉଠି ସେ ଯାହା ଅନ୍ତରର ସହିତ ଘୃଣା କରନ୍ତି ନାହିଁ ତାହା ହିଁ କହିଲେ, "ମୋର ଆଦେଶ, ତୋର ଅନ୍ନଦାତାର, ଜନ୍ମଦାତାର ଆଦେଶ, ତୁ ସ୍ବୀକାର କର —"

—ଓ, ଅନ୍ନଦାତା—ଅନ୍ନଦାତା ତ ! ହଉ , ମୁଁ ଏ ଘରୁ ଏଇକ୍ଷଣି ବାହାରିଲି ଆଉ ଏ ଘରେ ଅନ୍ନ ଛୁଇଁବି ନାହିଁ ।

—ହିଁ, ବାହାର ଏଇକ୍ଷଣି ପାଜି, ଧମକ ଦେଉଛୁ କାହାକୁ ?

ଅଜୟ ଅଧିକ କ୍ରୋଧରେ ଜବାବ ଦେଲା, "କାହିଁକି ବାହାରିବି ? ଏ ଘର ମୋର ବାପାର—ଆପଣଙ୍କ ବାପାର ନୁହେଁ । ଏ ଘରର ମୁଁ ଜଣେ ନ୍ୟାଯ୍ୟ ଅଧିକାରୀ, ଆପଣ ନୁହନ୍ତି । ବାହାରିବାକୁ ହେଲେ ଆପଣଙ୍କୁ ବାହାରିବାକୁ ପଡ଼ିବ ।"

ବଜସ୍ବବାବୁ ଭାବିଲେ, ସତେ ! ବହୁ କଷ୍ଟ ସ୍ବୀକାର କରି, ଜୀବନର ତିନିଭାଗ ପ୍ରାୟ ପଦାରେ କଟାଇ, ଏ ଘର ଯେ ମୁଁ ମୋର ଶେଷବୟସରେ ତୋଳିଚ, ଏ କାହା ପାଇଁ ? ଏଥିରେ ମୋର କି ଅଧିକାର ଅଛି ? ତାଙ୍କର ସମସ୍ତ କ୍ରୋଧ ନିମିଷକେ ମିଳାଇଗଲା । ପୁତ୍ରର—ବଂଶଧରର—ପିତା ନିକଟରେ ଏ ଯେଉଁ ଦାବି, ସେଥିରେ ମହା ଗୌରବର ଆନନ୍ଦରେ ତାଙ୍କ ଆଖିରୁ ପାଣି ଝରିପଡ଼ିଲା । ମନେ ମନେ ସେ କହିଲେ, ଧନ୍ୟ ମିତାକ୍ଷର— କେତେଶହ ଶତାବ୍ଦୀ ପୂର୍ବରେ ଜନ୍ମି ମଧ୍ୟ ପିତାର ବେଦନା ବୁଝି ତୁମେ ପୁତ୍ରର ଦାବି ରୂପେ ପିତାକୁ ଏ ଗୌରବ ଦେଇଯାଇଚ ! ଅଜୟକୁ ଗଭୀର ବାତ୍ସଲ୍ୟରେ ବୁଡ଼ାଇ, ଛାତିରେ ଚାପି ଧରି, ସେ ଆନନ୍ଦରେ କୋହ ଚାପି ତା'ର ପିଠି ଆଉଁସିବାରେ ଲାଗିଲେ କିଛିକ୍ଷଣ ପାଇଁ ।

ତା'ପରେ କହିଲେ, "ହଁ, ନିଶ୍ଚୟ । ଯା, ଭୁଲିଯିବୁ ପରା । ହଇଓ, ଗଲ କୁଆଡ଼େ ! ଅଜୁକୁ ଜଳଖିଆ ଦିଅ ।"

ଆଦରଣୀ ଦେବୀ ଲୁହ ପୋଛୁ ପୋଛୁ ଗାମୁଛାରେ ବଜସ୍ବବାବୁଙ୍କ ଓଦା ଗୋଡ଼ ପୋଛିଦେଲେ । ଅଜୟର ମଧ୍ୟ ଛାତି ଭିତରୁ କୋହ ଉଠିଲା; କିନ୍ତୁ ସେ ତାକୁ ଠେଲିଦେଇ ଛିଡ଼ାହୋଇରହିଲା ।

× × × ×

ସେଦିନ ପିତାପୁତ୍ରଙ୍କ କଳହର ଏହିପରି ସମାଧାନ ହୋଇଥିଲା; କିନ୍ତୁ ଅଜୟର ଆଉ ପଢ଼ିବା ହୋଇପାରିଲା ନାହିଁ । କଲେଜପଢ଼ା ବନ୍ଧରେ ଡୋରି ବାନ୍ଧି ତାକୁ ଗୃହକର୍ମ କରିବାକୁ ପଡ଼ିଲା, ସେତେବେଳେ ଛଅଟି ମାସ ଭିତରେ ତା'ର ଗୋଟିଏ ଭଉଣୀ ବିଧବା ହୋଇ ଫେରିଆସିଲା ପିତାର ଆଶ୍ରୟ ଲୋଡ଼ିବାକୁ । ବିଜୟବାବୁ ଅନେକ ବୁଝାଇଲେ ପଢିବାକୁ; କିନ୍ତୁ ଅଜୟର ଏକ ଜିଦ୍, ସେ ଆଉ ପଢ଼ିବ ନାହିଁ । ପୁଅ ବଡ଼ହେଲାଣି, ଅଗତ୍ୟା ବିଜୟବାବୁ ଆଖିପାଣି ଆଖିରେ ମାରି ତୁନିହେଲେ । କିନ୍ତୁ ସେ ଘଟଣା ତାଙ୍କର ଆଉ ନିଦ ହେଲନାହିଁ ।

ଯେଉଁଦିନ ଅଜୟ ଗୃହକର୍ମ କରିବାକୁ ଗଲା, ସେଦିନ ବିଜୟବାବୁ ଗୋଟିଏ ଦୀର୍ଘ-ନିଃଶ୍ୱାସ ପକାଇ ଆଖିପାଣି ପୋଛି କହିଲେ, ପିଲାଟାର ଦୁଃଖ ସରିଲା—କିନ୍ତୁ ମୁଁ କ'ଣ କରିବି ? ହଉ, ଭଗବାନଙ୍କ ଇଚ୍ଛା । ଗୃହକର୍ମତ କଲା, ଏଥର ସଂସାର କରୁ ।"

ଅଜୟ ପାଖରେ ଯେତେବେଳେ ଏ ପ୍ରସ୍ତାବ କଲେ, ଅଜୟ ବଡ଼ ବଡ଼ ଆଖି କରି କହିଲା, "ମୋତେ ମୋଟେ ବାଇଶି ବର୍ଷ—ତା'ଛଡ଼ା, ମୁଁ ଆଦୌ ବିବାହ କରିବି ନାହିଁ । ବିବାହିତ ଜୀବନର ଯେଉଁ ସୁଖ ଛବି ମୁଁ ଆଖିଆଗରେ ଦେଖୁଛି ତାହା ଆଦୌ ମୋ ପକ୍ଷରେ ଉତ୍ସାହଜନକ ନୁହଁ । ଏତେ କମ୍ ବୟସରୁ ଏ ଭାବନା ଆପଣ କରୁଚନ୍ତି କାହିଁକି ?"

ବିଜୟବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ, "କମ୍ ବୟସ ! ମୁଁ କେତେ ବୟସରେ ବିବାହ କରିଥିଲି ଜାଣୁ ? ଅଠର ବର୍ଷରେ ।" ବିଜୟବାବୁ ଯେଉଁଦିନ ନୀରବ ରହି ଅଜୟର ବନ୍ଧୁଙ୍କ ଶରଣାପନ୍ନ ହେଲେ ।

ବନ୍ଧୁଙ୍କ ପ୍ରସ୍ତାବରେ ଅଜୟ ଗୋଟାଏ ଘୃଣାବ୍ୟଞ୍ଜକ ହସ ହସି କହିଲା, "ଲିଣ୍ଡବର୍ଗ୍ କହନ୍ତି ଯେ, ପୁରୁଷ ଓ ନାରୀ ବିବାହ କରିବା ଉଚିତ ଯେତେବେଳେ ଯୌବନରେ ଯଥେଷ୍ଟ ରୋମାନ୍ସ କରିସାରି ଯୌବନର ଶେଷରେ ସେମାନଙ୍କର ଶାନ୍ତ ଜୀବନ ଯାପନ କରିବାର ଇଚ୍ଛା ଜାଗ୍ରତ ହେବ— ଯେତେବେଳେ ନାରୀ ପୁରୁଷ ପକ୍ଷରେ ଆଉ ପ୍ରେମିକା ନ ହୋଇ ହେବ ବନ୍ଧୁ । ତା ନହେଲେ ଚିରଜୀବନ ସେହି ରୋମାନ୍ସ୍ କରିବାର ପିପାସାଟି ରହିଯିବ— ବିବାହିତ ଜୀବନ ଆଦୌ ସୁଖକର ହେବ ନାହିଁ । ଗୋଟିଏ ମନଲୋଭି ପ୍ରେମିକାର ଆକର୍ଷଣରେ ଆକର୍ଷିତ ହେବା ପୀଡ଼ାମୟ ହେଲେହେଁ କି ପ୍ରୀତିମୟ ତାହା ତ ତୁ ବା ବାପା ଅନୁଭବ କରିନାହଁ ।"

ବିଜୟବାବୁଙ୍କ କାନକୁ ଏକଥା ଆସିଲା । ପୁତ୍ର ପ୍ରାପ୍ତବୟସ୍କ ହେବାପରେ ବିଜୟ-ବାବୁ ତା ସହିତ ସବୁ ବିଷୟରେ ଖୋଲାଖୋଲି ଆଲୋଚନା କରିବାରେ କୁଣ୍ଠାବୋଧ କରିନାହାନ୍ତି । ହେଲେ, ତାଙ୍କ ବିଦ୍ୟା ମାଟ୍ରିକ୍ ସେକେଣ୍ଡ କ୍ଲାସ ପର୍ଯ୍ୟନ୍ତ । ସେ ଦେଖିଛନ୍ତି ଅଜୟ ନାନା ବିଷୟରେ ନାନା ମୋଟା ମୋଟା ବହି ପଢ଼େ । ତାଙ୍କର ସବୁ ବିଷୟରେ ଜ୍ଞାନ ତାଙ୍କର ସହଜାତ ସହଜ ବୁଦ୍ଧି ଦ୍ୱାରା ନିଜର ଅନୁଭୂତିଗୁଡ଼ିକୁ ବିଶ୍ଳେଷଣ କରି ସେ ପାଇଛନ୍ତି । ଅଜୟ ସହିତ ତର୍କ କରିବାକୁ ସେ ସଙ୍କୋଚବୋଧ କରନ୍ତି, ଯଦିଓ ସେ ପୁତ୍ରର

ଜ୍ଞାନରେ ନିଜକୁ ଗୌରବାନ୍ୱିତ ମନେକରନ୍ତି । ତଥାପି ସେ କହିଲେ, "କାହିଁକି, ବିବାହିତା ସ୍ତ୍ରୀ ସହିତ କ'ଣ ରୋମାନ୍ସ୍ ହୁଏନାହିଁ ? ତୁ ଯେଉଁ ରୋମାନ୍ସ୍ କଥା କହୁଚୁ ତା ହେଉଛି ମଦ ଖାଇ ନିଶା କରିବାପରି । ଏ ନିଶାରେ ମଦର ପରିମାଣ ଦିନକୁ ଦିନ ବଢ଼ୁଥିବ ଏବଂ ଶେଷରେ ଏମିତି ହେବ ଯେ ମଦ ପିମ୍ପାରେ ବୁଡ଼ିରହିଲେ ବି ନିଶା ହେବ ନାହିଁ । ଶେଷରେ ନାନା ଶାରୀରିକ ବ୍ୟାଧି ହେବ । ତା'ଛଡ଼ା, ଜୀବନର ରୋମାନ୍ସ୍ ଟିକକ ଯଦି ଗୁଲିଯାଏ ତା'ପରେ ବିବାହ କରି ଲାଭ କ'ଣ ? ଏ ପରସ୍ପର ସାହାଯ୍ୟକୃତ ସନ୍ଧି କେତେଦିନ ରହିବ ? ପ୍ରକୃତିର ନିୟମାନୁସାରେ ସବୁ ରୋମାନ୍ସ୍ ବା ମିଳନ ଯଦି ପ୍ରଜନନରେ ପର୍ଯ୍ୟବସିତ ନହୁଏ ତେବେ ଖାଲି ମାନସିକ ବିକୃତି ବଢ଼ିବ ସିନା ! ପୁଣି ସମାଜ କଥାତ ଭାବିବାକୁ ହେବ ।"

ଅଜୟ ତାଚ୍ଛଲ୍ୟର ସହିତ କହିଲା, "ଆପଣତ କିଛି ପଢ଼ିବେ ନାହିଁ, କିଛି ଜାଣିବେ ନାହିଁ—ଆଜିକାଲି ଏ ବିଷୟରେ କେତେ ଗବେଷଣା ଗୁଲିଚି ।"

ବିଜୟବାବୁ ବୁଝିଲେ ଯେ ସେ ପାରିବେ ନାହିଁ । ସ୍ତ୍ରୀଙ୍କ ସହିତ ଗୋପନୀୟ ପରାମର୍ଶ କରିବା ପରେ ସ୍ଥିର ହେଲା ବନ୍ଧୁଶ୍ରେଷ୍ଠଙ୍କୁ ଡାକିବାକୁ ।

ବିଜୟବାବୁ କହିଲେ, "ତୁମ ଭାଇତ ଏମ୍. ଏ. ପାଶ କରିଚି—ତାଙ୍କୁ ଡକାଅ, ସେ ଅଜୁକୁ ବୁଝାଇବ ।"

ଆଦରଣୀ ଦେବୀ ଘୋର ଅନ୍ଧକାରରେ ଟିକିଏ ଆଲୁଅ ଦେଖିବାଭଳି କହିଲେ, "ଠିକ୍ କହିଚ, ମୁଁ କାଲି ଲେଖୁଚି ଚିଠି ।"

ଚିଠିଟି ଲେଖିସାରି ଆଦରଣୀ ଦେବୀ ସ୍ୱାମୀଙ୍କୁ ପଢ଼ାଇଲେ । ବିଜୟବାବୁ ଅନୁମୋଦନ କରିସାରିବା ପରେ ସମସ୍ତ ଦେବଦେବୀଙ୍କୁ ପ୍ରଣାମ କରି ଚିଠିଟି ଡାକରେ ପଠାଇଦେଲେ ।

ବନ୍ଧୁଶ୍ରେଷ୍ଠ ଆସିଲେ ସତ, କିନ୍ତୁ ଫଳ ଓଲଟା ଫଳିଲା । ବନ୍ଧୁଶ୍ରେଷ୍ଠ ହରିବାବୁ କହିଲେ, "ଅଜୁତ କିଛି ମନ୍ଦ କହୁନାହିଁ । ରୋଜଗାର ଏତିକି—ସେଥିରେ ପୁଣି ବାହା ! ତୁମେ କ'ଣ ନିଜେ ବୁଝୁନା କି କଷ୍ଟକର ଜୀବନ ଏଥିରେ ? କାହିଁକି ? ବିବେକାନନ୍ଦ କ'ଣ ବିବାହ କରିଥିଲେ ? ପିଲାଝିଲା କରିବା ଛଡ଼ା ଆଉ କ'ଣ ଦୁନିଆରେ କିଛି କରିବାର ନାହିଁ ?'

କାଳେ ଏକଥା ଅଜୟ ଶୁଣିବ ଏହି ଭୟରେ ବିଜୟବାବୁ କବାଟ କିଳିଦେଇ ଆସି କ୍ରୋଧରେ ତୁନି ହୋଇ କିଛିକ୍ଷଣ ଛିଡ଼ାହୋଇ ରହି କହିଲେ, "ବୁଝିଲି, ତୁମର ନିଜ ରୋଜଗାର କେତେ ? ତୁମର ପିଲାପିଲି କେତୋଟି ? ତୁମେ ପିଲାଛୁଆ କଲାବେଳେ ନିଜ ରୋଜଗାର ପ୍ରତି ଦୃଷ୍ଟି ଦେଇଥିଲ ?"

—"ମୋ କଥା ଛାଡ଼, ମୋର ଭୁଲ୍ ହୋଇଛି ବୋଲି ଅଜୁକୁ ସେଇ ଭୁଲ କରିବାକୁ ମୁଁ କହିପାରେନା । ସେ ବରଂ ବିବେକାନନ୍ଦର ଆଦର୍ଶ ରଖି—"

ବିଜୟବାବୁ ଯଥାଶକ୍ତି ନିଜର କ୍ରୋଧକୁ ଦମନ କରି କହିଲେ, "ବୁଝିଲି ବିବେକାନନ୍ଦ ବା ସେହିଭଳି କାହାରିକୁ ମୁଁ ଆଦୌ ସଂସାରରେ ସ୍ଥାନ ଦିଏ ନାହିଁ । ସେମାନଙ୍କଠାରୁ ଆମର ଚୈନାପାଣ ତେଲି ବଡ଼ କାମ କରିଚି । ସିଏ ତାହାର ସମସ୍ତ ଜୀବନ ତ୍ୟାଗ କରିଚି ପିଲା-

ଛୁଆଙ୍କୁ ମଣିଷ କରିବାରେ । କ'ଣ କରିଛନ୍ତି ଏଇ ବିବେକାନନ୍ଦମାନେ ବୁଝିପାରେ ? ଅବିବାହିତ, ଅଘରିଆମାନେ ପରୋପକାର ସଦୁପଦେଶ ନାଆଁରେ କେବଳ ଅନ୍ୟମାନଙ୍କୁ ବୁଡ଼େଇବାରେ ଲାଗିପଡ଼ନ୍ତି । ଯାହାର ସଂସାର ନାହିଁ, ତାର ଦାୟିତ୍ୱ ନାହିଁ—ସେ କ'ଣ ପରୋପକାର କରିବ ? ଏ ଚାରି ଆଶ୍ରମ ଭିତରେ ଗୃହସ୍ଥାଶ୍ରମ ସବୁଠୁଁ ବଡ଼ । ମନୁ କହିଛନ୍ତି ।"

ହରିହରବାବୁ ଅବଜ୍ଞାର ହସ ହସି କହିଲେ, "ସେ ସବୁ ଶାସ୍ତ୍ର ସେକାଳ ପାଇଁ ହୋଇଥିଲା । ଯୁଗ ବଦଳିଛି ; କିନ୍ତୁ ଆମେ ସେଇ ପୁରୁଣା ଆଦର୍ଶକୁ ଧରି ପଡ଼ିଛୁ । ଶାସ୍ତ୍ର ଯଦି ଯୁଗ ଅନୁସାରେ ନ ବଦଳେ ତେବେ ସେ ଶାସ୍ତ୍ର ସମାଜ ପକ୍ଷରେ ଘୋର କ୍ଷତିକାରକ ହୁଏ । ଅସମ୍ଭବ ଆଦର୍ଶ ଖାଲି ମାନସିକ ବିକୃତି ବଢ଼ାଏ ।"

ବିଜୟବାବୁ ଏଥର ଆଉ ଧୈର୍ଯ୍ୟ ରଖିପାରିଲେ ନାହିଁ । ଉତ୍‌କ୍ଷିପ୍ତ ହୋଇ ସେ କହିଲେ, "ଆରେ, ଆଗେ ମୋ କଥା ଶୁଣ । ଏହି ଗୃହସ୍ଥାଶ୍ରମରେ ତୁମର ସବୁ ଅଛି । ପ୍ରଭୁତ୍ୱ କରିବାର ପ୍ରବୃତ୍ତି ଏଇଠି ମେଣ୍ଟେ, ପୁଣି ତ୍ୟାଗ କରିବାର ଆନନ୍ଦ ମଧ୍ୟ ଏଇଠି ମିଳେ । ଏ ସାଧନାର କ୍ଷେତ୍ର, ସଂଯମର କ୍ଷେତ୍ର, ସୁଶାସନର ଭିତ୍ତିସ୍ଥଳ, ସବୁ ଏଇ ଘର । ଅନେକଙ୍କ ମନ ସହିତ ନିଜର ମନ ଘନିଷ୍ଠ ଭାବରେ ଜଡ଼ିତ ବୋଲି ଏଇଠି ସଂଯମ, ଧୈର୍ଯ୍ୟ, ସୁଶାସନ, ତ୍ୟାଗ ସବୁ ଦରକାର ହୁଏ । ଏ ଗୋଟିଏ କ୍ଷୁଦ୍ର ରାଜ୍ୟ । ପୋଲଫାଙ୍କିଆ ହୋଇ ବୁଲି ପରର ଦୁଃଖରେ କାନ୍ଦିବୁଲି ଦପଦ ମନରଖାଣିଆ କଥା କହିବାକୁ ମୁଁ ବଡ଼ କୁହେନି । ନାନା ଦୁଃଖ, ଯନ୍ତ୍ରଣା, କଷ୍ଟ, ଉତ୍ପୀଡ଼ନ ମଧ୍ୟରେ ନିଜର ମନକୁ ଶାନ୍ତ ରଖି, ସୁଖଦୁଃଖ ପ୍ରତି ଉଦାସୀନ ହୋଇ ଗୋଟିଏ ଘର ଚଳାଇବାରେ ଯେଉଁ ଶିକ୍ଷା, ଯେଉଁ ପୁଣ୍ୟ ଅଛି, ଶହେ ବର୍ଷଧରି ହିମାଳୟରେ ତପସ୍ୟା କରି ବା ଯୁଗ ଯୁଗ ଧରି ଗୀତା ଭାଗବତ ପଢ଼ିଲେ ମଧ୍ୟ ସେ ପୁଣ୍ୟ ନାହିଁ । ପ୍ରକୃତ ଯୋଗୀ ଯିଏ ଏମିତି ଘର ଚଳାଏ । ଜାଣ, ପ୍ରକୃତିର ସବୁଠୁ ବଡ଼ ଦାନ ଏଇ ସନ୍ତାନପାଳନ କରିବାର ପ୍ରବୃତ୍ତି । ଏଇ ପ୍ରବୃତ୍ତି ହିଁ ଆଜି ଗୁହାବାସୀ ବର୍ବରକୁ ମଣିଷ କରିପାରିଛି ; ଆଉ ଏଇ ପ୍ରବୃତ୍ତିରୁ ଜାତ ଯେତେ ଧର୍ମ, ନୀତି, ପରୋପକାର ଇଚ୍ଛା । ଯାହାର ଘର ନାହିଁ, ସନ୍ତାନ ନାହିଁ, ତାର ଦାୟିତ୍ୱହୀନ ପରୋପକାରରେ କୌଣସି ସାର୍ଥକତା ନାହିଁ ।"

"ତୁମେ ବୁଝୁନା, ଭିଣୋଇ ! ଆଚ୍ଛା, ପାଶ୍ଚାତ୍ୟ ଦେଶ ଯେ ଆଜି ଏତେ ଉନ୍ନତ..."

ବିଜୟବାବୁ ଅଧିକ ଉତ୍‌କ୍ଷିପ୍ତ ହୋଇ କହିଲେ, "କଅଣ ଉନ୍ନତ ହୋ ? ଘର ନାହିଁ, ହୋଟେଲ । ସନ୍ତାନ ନାହିଁ, ଭାର୍ଯ୍ୟା । ଏ ସଭ୍ୟତାରେ ଦୟାମାୟା ନାହିଁ...ନିର୍ମମ ଅର୍ଥକାମୀ ସ୍ୱାର୍ଥାନ୍ୱେଷୀ ସୌଦାଗରୀ ସଭ୍ୟତା ! କେବଳ ନିଜର ସୁଖ ବୃଦ୍ଧି ହିଁ ଏହାର ଉଦ୍ଦେଶ୍ୟ । ଏ ଇଚ୍ଛା ଯେତେ ବଢ଼ିଚାଲିଛି, ଶକ୍ତି ମଧ୍ୟ ସେତେ ବଢ଼ିଚାଲିଛି ପୃଥିବୀ ଗ୍ରାସ କରିବାପାଇଁ । ଘରର ଦାୟିତ୍ୱ ଯେତେ ନିଜ ଉପରୁ ଖସେ ସେତେ ଭଲ । ପିଲା ଜନ୍ମହେବା ମାତ୍ରକେ ସରକାର ସବୁ ଦାୟିତ୍ୱ ନେବ । ଆହା କି ଆଦର୍ଶ !! ସନ୍ତାନ ନିଜ ଦାୟିତ୍ୱ ନେବାଭଳି

କ୍ଷମତା ହେବା ମାତ୍ରକେ ପିତାମାତା ତାଙ୍କୁ ମନରୁ ଓ ଘରୁ ଅଲଗା କରିଦେବେ ! ପିଲମାନଙ୍କର ଆଉ ସୁଖ ଅନୁଭୂତ ହେବା ବେଳ କାହିଁ ? ସେମାନେ ଲଗିପଡ଼ିଲେ ଅର୍ଥୋପାର୍ଜନରେ ନିଜର ସୁଖ ପାଇଁ । ଏଥିରେ ପିତାମାତାଙ୍କର ଯେମିତି ବିକୃତି ଆସିଲ, ସନ୍ତାନମାନଙ୍କର ମଧ୍ୟ ସେମିତି ବିକୃତି ଆସିଲ । କରୁଥା, ହିନ୍ନତି କରୁଥା, ଆକାଶଚୁମ୍ବୀ କୋଠା ଟେକୁଥା, ମୁହଁରେ ବଡ଼ ବଡ଼ ଆଦର୍ଶ କହୁଥା; କିନ୍ତୁ ପ୍ରେମ ବନ୍ଧ ହବନାହିଁ, ସୁଖ ଲଗିଥିବ । ସେବା ତ ଏ ସଭ୍ୟତାର ଆଦର୍ଶ ନୁହେଁ, ସୁଖ ଏ ସଭ୍ୟତାର ଆଦର୍ଶ । ନା, ହରି ବାବୁ, ତୁମେ ଯାଅ, ଏହିକ୍ଷଣି ଯାଅ ! ତୁମକୁ ଡାକି ମୁଁ ଭୁଲ କରିଚି ।" ବିଜୟବାବୁ ହରିହରବାବୁଙ୍କର ହାତ ଧରି ଉଠେଇବାକୁ ଚେଷ୍ଟାକଲେ ।

ହରିହରବାବୁ ବାଧାଦେଇ କହିଲେ, "ଆଉ ଗୋଟେ କଥା ମୋର ଶୁଣ । ସମସ୍ତେ ଯଦି ତୁମ ଆଦର୍ଶରେ ସନ୍ତାନ ଉତ୍ପାଦନରେ ଲଗିପଡ଼ନ୍ତି, ତେବେ ଏତେ ମୁହଁକୁ ଆହାର କେଉଁଠୁ ଆସିବ ?"

ଅଜୟ ଏତିକିବେଳେ ଦୁଆର ଠେଲି ପ୍ରବେଶ କରି କହିଲା, "ବାପା, ମୁଁ ସବୁ ଶୁଣିଚି । ମାମୁଙ୍କ ସହିତ ମୁଁ ସମ୍ପୂର୍ଣ୍ଣ ଏକମତ । ଜାଣନ୍ତି, ଭାରତର ଲୋକସଂଖ୍ୟା କି ଭୟାବହ ଆକାର ଧାରଣ କରିଚି ? ତଥାପି ଦ୍ରୁତଗତିରେ ବର୍ଷକୁ ବର୍ଷ ଲୋକସଂଖ୍ୟା କିପରି ବଢ଼ିଚାଲିଚି ? ଏଥିପାଇଁ କେତେ ଅନାହାର ମୃତ୍ୟୁ, କେତେ ଶିଶୁମୃତ୍ୟୁ, କେତେ ପ୍ରସୂତି ମୃତ୍ୟୁ ହେଉଚି ଜାଣନ୍ତି ? ତା ଛଡ଼ା ଦାରିଦ୍ର୍ୟ, ରୋଗ, ଦୁର୍ଭିକ୍ଷ, ମହାମାରୀ କେତେ ବଢ଼ିଚାଲିଚି ଜାଣନ୍ତି ?"

ବିଜୟବାବୁ କିଂକର୍ତ୍ତବ୍ୟବିମୂଢ଼ ହୋଇ କିଛିକ୍ଷଣ ଛିଡ଼ାହୋଇ ରହି କହିଲେ, "କିଏ କହିଲା ସ୍ଥାନ ଓ ଖାଦ୍ୟର ଅଭାବ ? ଏଟା ଏକଦମ ଭୁଲ ଧାରଣା । ଅବଶ୍ୟ ସ୍ଥାନ ଓ ଖାଦ୍ୟର ଗୋଟାଏ ସୀମା ଅଛି ମାନୁଚି; କିନ୍ତୁ ସେ ସୀମା, ମୋ ଧାରଣାରେ ଅନେକ ଦୂରରେ ଅଛି । ତୁମର ଆଧୁନିକ ନିର୍ମମ ସଭ୍ୟତା ହିଁ ଏ ଦୁର୍ଦ୍ଦଶାର ମୂଳ କାରଣ । ଗଲା ଯୁଦ୍ଧରେ ଦୈନିକ ଶହେକୋଟିଠାରୁ ବେଶୀ ଟଙ୍କା ଖରଚ ହୋଇଥିଲା । ଏତେ ଟଙ୍କା ଯଦି ମଣିଷ ମାରିବାରେ ଖର୍ଚ୍ଚ ନ ହୋଇ ଖାଦ୍ୟ ଉତ୍ପାଦନ ବା ଅନ୍ୟାନ୍ୟ ମଙ୍ଗଳଜନକ କାମରେ ଖର୍ଚ୍ଚ ହୋଇ-ଥାଆନ୍ତା, ତେବେ କଅଣ ହୋଇଥାନ୍ତା ? ଆଚ୍ଛା, ତୁମେ ଯୁବକମାନେ ତ ଯୁଦ୍ଧରେ ଆଗ୍ରହର ସହିତ ଯୋଗଦେଉଚ ଗୋଟାଏ ବିକୃତ ରୋମାଞ୍ଚ ଅନୁଭବ କରିବାପାଇଁ, ଠିକ୍ ତାହା ନ ହୋଇ ଜୀବନଯାକ ଗୋଟାଏ ବିକୃତ ମାଦକତା ଅନୁଭବ କରିବା ଭଲ । କହିଲ ଭଲା ହରିବାବୁ, କ'ରେ ହସନ୍ତ ଉଚ୍ଚାରଣ କଲ ?"

"ସ୍ୱରବର୍ଣ୍ଣ ନ ଲଗିଲେ ବ୍ୟଞ୍ଜନ ବର୍ଣ୍ଣର ସ୍ୱର ବାହାରିବ କେମିତି ?" ହରିବାବୁ ହସି କହିଲେ ।

—"ହେଲ, ହେଲ ! ଠିକ୍ ସେମିତି । ପୁରୁଷ ବ୍ୟଞ୍ଜନବର୍ଣ୍ଣ, ନାରୀ ସ୍ୱରବର୍ଣ୍ଣ । ଏ ଦୁଇଟିର ମିଳନର ଉଦ୍ଦେଶ୍ୟ ଖାଲି ମିଳନ ନୁହଁ, ବୁଝିଲ ? ଆଉ ଗୁଡ଼ାଏ ପିଲା ଜନ୍ମଦେବାକୁ ତ ମୁଁ କହୁନାହିଁ । ଦୁଇଟି ହେବା ପରେ ବନ୍ଦକର । ବ୍ରହ୍ମଚର୍ଯ୍ୟ ରଖ ।"

ହରବାବୁ ଓ ଅଜୟ ଅବଜ୍ଞାର ହସ ହସିଲେ । ଅଜୟ କହିଲା, "ବାପା, ଏହି ବ୍ୟଞ୍ଜନବର୍ଣ୍ଣ ସ୍ୱରବର୍ଣ୍ଣରୁ ସବୁ ଅର୍ଥନୀତି, ସମାଜନୀତି ପ୍ରମାଣ କରିଦେଲେ···ହୋଃ·· ହୋଃ ହୋଃ···"

ହରବାବୁ କହିଲେ, "ବ୍ରହ୍ମଚର୍ଯ୍ୟ ଏତେ ସହଜ କଥା ନୁହେଁ ଯେ···"

ଅଜୟ କହିଲା, "ମୋ ପକ୍ଷରେ ତ ନିଃସନ୍ତାନ ହେବା ଉଚିତ ।"

ବିଜୟବାବୁ ଅପ୍ରସ୍ତୁତ ହୋଇ ନୀରବ ରହିଲେ । ସେ ଦିନ ସନ୍ଧ୍ୟାବେଳକୁ ଆଦରିଣୀ ଦେବୀ ନିଜର ଝିଅ ସହିତ କଳହ କରି ତାଙ୍କୁ ନିଜ ଘରୁ ପ୍ରାୟ ତଡ଼ି ବାହାରକରିବା ପରେ ପରେ ଘରର କବାଟ କିଳି ପୁଣି ସ୍ୱାମୀଙ୍କ ସହିତ ମନ୍ତ୍ରଣା କରିବାକୁ ଲାଗିଲେ । ଶେଷରେ ସିଦ୍ଧାନ୍ତ ହେଲା ଶେଷ ଅସ୍ତ୍ର ନିକ୍ଷେପ କରିବାକୁ ।

× × × ×

ଏହା ପରେ ବିଜୟବାବୁ ଓ ଆଦରିଣୀ ଦେବୀ ଆଉ ବିବାହ ପ୍ରସଙ୍ଗ ଉତ୍ଥାପନ କଲେନାହିଁ । ସପ୍ତାହକ ପରେ ବିଜୟବାବୁଙ୍କ ଘରକୁ ଦୁଇଜଣ ଅତିଥି ଆସିଲେ । ଜଣେ ଯୁବତୀ ଅପୂର୍ବ ସୁନ୍ଦରୀ, ଶିକ୍ଷିତା । ଅନ୍ୟ ଜଣେ ପ୍ରୌଢ଼ା ବିଧବା । ଏହି ଯୁବତୀଟି ବିଜୟବାବୁଙ୍କ ବାଲ୍ୟବନ୍ଧୁ ବିନୋଦବାବୁଙ୍କର ଏକମାତ୍ର କନ୍ୟାସନ୍ତାନ ଆରତି । ଆରତି ସହିତ ଅଜୟର ବିବାହ ପାଇଁ ବିଜୟବାବୁଙ୍କର ଖୁବ ଆଗ୍ରହ ଦୁଇଟି କାରଣ ଲାଗି—କନ୍ୟାଟି ସୁଲକ୍ଷଣା, ତାଙ୍କ ମନଲାଖି ଏବଂ ଦ୍ୱିତୀୟରେ ସ୍ୱର୍ଗୀୟ ବନ୍ଧୁ ନିକଟରେ ସେ ଏଥିପାଇଁ ପ୍ରତିଜ୍ଞାବଦ୍ଧ ।

ଏହାର ଦୁଇଦିନ ପରେ ଅଜୟର ଅଦ୍ଭୁତ ଆକସ୍ମିକ ପରିବର୍ତ୍ତନ ଆସିବାର ଦେଖାଗଲା । ସେ କବିତା ଲେଖିବାକୁ ଚେଷ୍ଟାକଲା ।

ଅଜୟ ସକାଳୁ ଉଠିବାମାତ୍ରକେ କବିତା ଲେଖିବସିଲା । ଉଠିଲା ଅର୍ଥାତ୍ ଯିବାର ମାତ୍ର ଅଳ୍ପ କିଛି ସମୟ ପୂର୍ବରୁ ।

ଫେରିବାବେଳେ ଦେଖିଲା ଆରତି ତାହାର କବିତାଟି ପାଠକରୁଛି । ଦେଖିବା ମାତ୍ରକେ ଆପାଦମସ୍ତକ ତାହାର ଲଜ୍ଜାରେ ଅବଶ ହୋଇଗଲା । ଆରତି ମଧ୍ୟ ଖାତାରେ କଟାକଟିର ସମ୍ମୁଖରୁ ଯାହା ପାଇଲା ସେଥିରେ ଲଜ୍ଜାରେ ତାହାର ମୁହଁ ଆରକ୍ତିମ ହୋଇଗଲା । ଦୁହେଁ ମୁହୂର୍ତ୍ତକ ପାଇଁ ଦୁହିଁଙ୍କୁ ଚାହିଁଲେ । ଆରତି ଅପୂର୍ବ ଭଙ୍ଗୀରେ ଟିକିଏ ହସି ନୀରବରେ ଘରୁ ବାହାରିଗଲା । ଅଜୟର ମୁଣ୍ଡଟି ଘୂରିଗଲା । ସେ ତଳେ ବସିପଡ଼ିଲା ।

ଏହି କ୍ଷୁଦ୍ର ଘଟଣାଟି ଆଦରିଣୀ ଦେବୀଙ୍କଠାରୁ ଶୁଣିବାପରେ ବିଜୟବାବୁଙ୍କ ଆଖି ଆଶାରେ ଉଜ୍ଜ୍ୱଳ ହୋଇଉଠିଲା । ଦୁହେଁ ଦୁହିଁଙ୍କୁ ଚାହିଁ ହସିଲେ । ଆଦରିଣୀ ଦେବୀଙ୍କ ଗଣ୍ଡଦେଶ ମଧ୍ୟ ଲଜ୍ଜାରେ ଆରକ୍ତିମ ହୋଇଗଲା ।

ଏହାର ପନ୍ଦର ଦିନ ପରେ ଅଜୟର ବିବାହମଣ୍ଡପରେ ଯେତେବେଳେ ହଠାତ୍ ଦିନେ ଘର ଶଙ୍ଖଧ୍ୱନିରେ ଉଚ୍ଛୁଳି ଉଠିଲା, ସେତେବେଳେ ଅଜୟର କ୍ଷୀଣ ଆପତ୍ତି ପ୍ରତି କେହି କର୍ଣ୍ଣପାତ କଲେ ନାହିଁ ।

ବଳଭଦ୍ରବାବୁ ପ୍ରଚ୍ଛନ୍ନ ନିଃଶ୍ୱାସ ମାରିଲେ । ପୁଅ ସ୍ୱୀକାର କରି ତାଙ୍କୁ ଆର୍ଥିକ ସାହାଯ୍ୟ କରିବା ଦିନ ତାଙ୍କର ଯାହାକି ଦୁଃଖ ହୋଇଥିଲା, ତାହା ଏହି ଆନନ୍ଦର ସୁଅରେ ଭାସିଗଲା ।

କିନ୍ତୁ ଏହି ଆନନ୍ଦ ତାଙ୍କର ବେଶିଦିନ ରହିଲା ନାହିଁ । ଦିନେ ବଳଭଦ୍ରବାବୁ ଅଜୟ ଘରେ ବାଥ୍ କଣ୍ଟ୍ରୋଲ ବହି ଦେଖି ଚମକି ପଡ଼ି ଚିନ୍ତିତ ହୋଇଗଲେ । ଆଦରଣୀ ଦେବୀଙ୍କୁ କହିବାରେ ସେ କେବଳ ଉପରକୁ ଚାହିଁରହିଲେ । ସେଦିନ ସମସ୍ତ ରାତି ସ୍ୱାମୀଙ୍କ ସହିତ ପରାମର୍ଶ ପରେ ଆଦରଣୀ ଦେବୀ ସକାଳୁ ବୋହୂକୁ ତାଙ୍କ ସାଧ୍ୟାନୁସାରେ ଶାସ୍ତ୍ରୀୟ ନଜିର ଦେଇ ବୁଝାଇବାକୁ ଲାଗିଲେ ପିଣ୍ଡ, ବଂଶଧର, ଆତ୍ମା ଆଦି କଥା । ଆରତି ଶିକ୍ଷିତା । ସବୁ ଶୁଣିସାରି ସେ କହିଲା, "ମା, ଦରମା ଅନ୍ତତଃ ତିନିଶହ ନହେବା ପର୍ଯ୍ୟନ୍ତ ପିଣ୍ଡ କଥା ଭାବି ଲାଭ ନାହିଁ ।"

ବୋହୂର ଉତ୍ତର ଶୁଣି ବୃଦ୍ଧା ବକାରେ ଦୁହେଁ ବସିରହିଲେ । ଯେଉଁ ଦିନ ଅଜୟ ଆରତିକୁ ପରିବାର ନିୟନ୍ତ୍ରଣ କେନ୍ଦ୍ରକୁ ନେଇ ତାକୁ ସନ୍ତାନଦାୟିତ୍ୱରୁ ମୁକ୍ତ କରି ଆଣିଲା ସେଇଦିନ ବଳଭଦ୍ରବାବୁ ନୀରବରେ ଶଯ୍ୟା ଗ୍ରହଣକଲେ । ଏହା ପରେ ସେ ଆଉ ଉଠିନାହାନ୍ତି । ବଳଭଦ୍ରବାବୁଙ୍କ ମୃତ୍ୟୁର ଅଳ୍ପ ଦିନ ପରେ ଆଦରଣୀ ଦେବୀ ମଧ୍ୟ ସ୍ୱାମୀଙ୍କ ପଥ ଅନୁସରଣ କଲେ ।

× × × ×

"କପୋତ କପୋତୀ ପରି ଜୀବନ—ତୁମେ ଆଉ ମୁଁ । ଏତିକି ଟଙ୍କା ଯଥେଷ୍ଟ । ତୁମେ ଆଉ ମୁଁ ଦୁନିଆରେ—ନୁହେଁ ଆରତି !" ଅଜୟ ମୁଗ୍‌ଧଦୃଷ୍ଟିରେ ଆରତିଆଡ଼କୁ ଚାହିଁଲା ।

ଦଶବର୍ଷ ହେବ ବିବାହ ହେଲାଣି । ଆରତିର ବୟସ ବର୍ତ୍ତମାନ ତିରିଶ; କିନ୍ତୁ କିଏ କହିବ ଏତେ ବୟସ ! ପୁରୁଷର ବୟସ ତା ମନରେ, ନାରୀର ବୟସ ତା'ର ଦେହରେ । ଆରତି ସବୁବେଳେ ସଜବାଜ ହୋଇ ଥାଏ । ପିଲାଝିଲାର ଜଞ୍ଜାଳ ନାହିଁ, କାମଧନ୍ଦା ନାହିଁ । ଅଜୟ ମଧ୍ୟ ଆରତିକୁ କାମ କରିବା ଦିଏନାହିଁ, ସବୁବେଳେ ସଜାଇରଖେ ।

ଆରତି ଆବେଗଭରା କଣ୍ଠରେ କହିଲା, "ହଁ, ତୁମେ ଆଉ ମୁଁ । ଜନ୍ମ-ଜନ୍ମ ଧରି ତୁମେ ଆଉ ମୁଁ ।" ଆବେଗରେ ଆରତି ଅଜୟର କୋଳରେ ଢଳିପଡ଼ିଲା । ଅଜୟ ଦୃଢ଼ଆଲିଙ୍ଗନରେ ଆରତିକୁ କୋଳକୁ ଟାଣିନେଲା । ତା'ର ପ୍ରତି ଅଙ୍ଗ ସେ ଆରତିର ପ୍ରତିଅଙ୍ଗ ସହିତ ମିଶାଇଦେବାକୁ ଚାହିଁଲା ଯେପରି ।

କିନ୍ତୁ ଦିନକର ସାମାନ୍ୟ ଘଟଣାରେ ସବୁ ଓଲଟପାଲଟ ହୋଇଗଲା । ଆରତି ଦିନେ ଜିଦ୍ ଧରିବସିଲା ଗୋଟିଏ ମୂଲ୍ୟବାନ୍ ଶାଢ଼ୀ ପାଇଁ । ଅଜୟ ପାଖରେ ଏତେ ଟଙ୍କା ନଥାଏ । ଯେତେ ବୁଝାଇଲେ ବି ଆରତି ନବୁଝି କହିଲା, "କ'ଣ ହବ ଆମର ଟଙ୍କା ରଖି ? କିଏ ଅଛି ଆମର ?"

'କିଏ ଅଛି ଆମର ?' ଏହି କଥାଟା ଯେପରି ଅଜୟର କାନର ପର୍ଦ୍ଦାକୁ ଧକ୍କା ମାରି ମସ୍ତିଷ୍କ ଭିତରେ ବେଶ୍ ମଜବୁତ ହୋଇ ବସିପଡ଼ିଲା । ଅଜୟ କେବଳ ଶୁଣିବାକୁ ପାଇଲା, "କିଏ ଅଛି ଆମର ?"

ଦୁର୍ଭାଗ୍ୟକୁ ସେଇଦିନ ତା'ର ସାନ ଭଉଣୀ ମିନତି ତା'ର ପିଲାପିଚିକା ନେଇ ବାପଘରକୁ ଆସିଥିଲା । ଅନେକ ଦିନ ପରେ ସେ ବାପଘରକୁ ଆସିଚି ।

ଆହା, କି ସୁନ୍ଦର ପୁଅ ଦୁଇଟି ! ଆରତି ମୁଗ୍ଧଦୃଷ୍ଟିରେ ଚାହିଁରହିଲା । କିନ୍ତୁ ହଠାତ୍ ତା'ର ମନରେ ଅଦ୍ଭୁତ ପରିବର୍ତ୍ତନ ଆସିଲା । ତା'ର ମନେହେଲା ମିନତି ଆସିଚି ତାକୁ ଉପହାସ କରିବାକୁ । ଆସିଚି ମୋତେ ଆଣ୍ଟୁକୁଡ଼ି ଦେଖି ମୋର ସମ୍ପତ୍ତିର ଉତ୍ତରାଧିକାରୀ ହିସାବରେ ତା'ର ଗୋଟିଏ ପୁଅକୁ ମୋତେ ଦେବାକୁ ।

"କେତେଦିନ ରହିବ ତୁମେ ?" ଆରତି ଗମ୍ଭୀର ସ୍ୱରରେ ପଚାରିଲା ।

ମିନତି ଆଶ୍ଚର୍ଯ୍ୟ ହୋଇ ଚାହିଁରହି କହିଲା, "ମାସେ ରହିବ ବୋଲି ଆସିଚି ତ । ରହିପାରିବିନି ଏତେ ଦିନ ବୋଧହୁଏ । ବଡ଼ ପୁଅର ପରୀକ୍ଷା, ବଡ଼ ଝିଅର ବିଦ୍ୟାଳୟ ଖୋଲା...।"

ଆରତି ବାଧାଦେଇ କହିଲା, ଏଠି ତ ଦେଖୁଚ ସ୍ଥାନ ନାହିଁ, ତା' ଛଡ଼ା ପିଲାଛୁଆ ମୋତେ ଭଲଲାଗନ୍ତି ନାହିଁ । ମୂତ ଗୁଅ, କେଁ-କଟର ଏସବୁ ମୁଁ ପାରିବି ନାହିଁ । ଏଇ ଜଞ୍ଜାଳ ପାଇଁ ତ..."

ମିନତି ନାକଟେକି କହିଲା, "ହଁ ଲୋ ମା ! ସେକଥା ମୋର ମନେନଥିଲା । ରୋଜ ସକାଳୁ ଉଠି ଆଣ୍ଟୁକୁଡ଼ୀ ମୁହଁ କିଏ ଦେଖିବ ଲୋ ମା ! ମୁଁ ଯାଉଚି..."

ମିନତି ଯେମିତି ଆସିଥିଲା, ସେମିତି ଚାଲିଗଲା । ଅଜୟ କେବଳ ନିର୍ବାକ୍ ହୋଇ ଚାହିଁରହିଲା । ଏଇମାନେହିଁ ତା'ର ଉତ୍ତରାଧିକାରୀ । ଆଜି ଯଦି ମୋର ନିଜର କେହି ଥାଆନ୍ତେ, ଘର ଆଜି ପୂରିଉଠିଥାଆନ୍ତା ମୋ ପିଲାଙ୍କ ପାଟିତୁଣ୍ଡରେ, ଆନନ୍ଦର କାକଳିରେ । ଆଜି ଏ ଘର ଶ୍ମଶାନଭଳି ନୀରବ ଭୟାବହ ।

"ତୁମେ ନାରୀ ନୁହଁ, ବେଶ୍ୟା, ରାକ୍ଷସୀ ।"—ଅଜୟ ଗର୍ଜିଉଠିଲା ।

"ତୁମେ ହିଁ ମୋର ଏ ସର୍ବନାଶ କରିଚ । ଯେତେବେଳେ କଥା କହୁ ତୁମେ ହିଁ ମୋତେ ଏ ଦୁର୍ଦ୍ଦଶା ଦେଇଚ । ତୁମେ ସ୍ୱାର୍ଥାନ୍ଧ, ସୁଖ-ପାଗଳ । ମୁଁ କେବଳ କାମୁକର ଖେଳନା ହୋଇଚି । ସନ୍ତାନର ଜନନୀ ଆଉ ହୋଇପାରିବିନି ।"—ଆରତି ଗର୍ଜିଉଠିଲା ।

ସେଦିନ କଥା-କଥାକେ ତୁମୁଳ କଳହ ହେଲା । ପରଦିନ ସକାଳେ ଅଜୟ ଦୌଡ଼ିଲା ଡାକ୍ତର ପାଖକୁ ସନ୍ତାନୋତ୍ପାଦନ ଶକ୍ତି ଫେରିପାରିବ କି ନାହିଁ ଜାଣିବାକୁ । ଡାକ୍ତର ପାଖରୁ ହତାଶ ହୋଇ ଫେରି ସେଇଦିନ ମାସକ ପାଇଁ ଛୁଟି ନେଇ ଅଜୟ ଆରତିକୁ ତା'ର ବାପଘରେ ଛାଡ଼ିଆସି ବାହାରିଲା ତୀର୍ଥ ଭ୍ରମଣରେ । କାଶୀ, ମଥୁରା, ଦିଲ୍ଲୀ, ଆଗ୍ରା ହୋଇ ଅଜୟ ଫେରିଲା ତିନିମାସ ପରେ ।

ଆରତି ତା'ର ବାପଘରୁ ଫେରିନାହିଁ । ଅଜୟ ଶୁଣିଲା ତା'ର ମୁଣ୍ଡ ଟିକିଏ ଖରାପ ହୋଇଚି । ଅଜୟ ଆରତି ପାଖକୁ ଯାଇ ଦେଖେ, ଆରତି ପୂଜାରେ ବସିଚି । ବାଲିଗୋରଡ଼ା ପଥର, ଚିତ୍ର, ମୂର୍ତ୍ତି ଆଦି କରି ଘରେ ଘରେ ଠାକୁର । ନିଜ ସ୍ୱାମୀକୁ ସେ ଯେପରି ଚିହ୍ନି

ପାରିଲାନାହିଁ । ଟିକିଏ ବିରକ୍ତ ଭାବରେ ଗୃହିଣୀ ସବୁ ଠାକୁରଙ୍କୁ ଗାଧୋଇ, ପୋଛିପାଛି କରି, ଖାଇବାକୁ ଦେଇ, ଶୁଆଇ ଆରତି ଯେତେବେଳେ ପୂଜାଘରୁ ଉଠିଲା । ସେତେବେଳେ ପ୍ରାୟ ସନ୍ଧ୍ୟା । ଏପର୍ଯ୍ୟନ୍ତ ଆରତି କିଛି ମୁହଁରେ ଦେଇନାହିଁ । ଆରତିର ସେ ସୌନ୍ଦର୍ଯ୍ୟ ନାହିଁ । ଶରୀର ଶୀର୍ଣ୍ଣ, ଆଖି ନିଷ୍ପ୍ରଭ । ତଥାପି ତା'ର ବେଳ ନାହିଁ । ଠାକୁରଙ୍କ କାମ ସାରୁ ସାରୁ ଦିନରେ ସନ୍ଧ୍ୟା ଓ ରାତିରେ ପ୍ରାୟ ଗୋଟାଏ । ଏହାଛଡ଼ା ଆରତିର ଅନ୍ୟ କାମ ନାହିଁ । ତା'ର ସବୁ ସଞ୍ଚିତ ଅର୍ଥ ସେ ଏଇଥିରେ ବ୍ୟୟ କରିବାରେ ଲାଗିଛି ।

ଅନନ୍ତ ମିଶ୍ର ଦିନ କେତୋଟା ଭିତରେ ବୁଢ଼ା ହୋଇଯାଇଛି । ତା'ର ବର୍ତ୍ତମାନ ଏକମାତ୍ର କ୍ଷୁଧା ଅର୍ଥ । ପେଟକୁ ନଖାଇ ସେ ଅର୍ଥ ସଞ୍ଚୟ କରିବାରେ ଲାଗିଛି । ବ୍ୟବହାର-ବିହୀନ, ଉଦ୍ଦେଶ୍ୟବିହୀନ ନିର୍ମମ ଅର୍ଥ ସଞ୍ଚୟ ।

□□□

# ମିମିର ସାହିତ୍ୟ-ଶିକ୍ଷା

ଜୀବନବାବୁଙ୍କ ମନରେ ଭାରି କଷ୍ଟ । ତାଙ୍କର ଏକମାତ୍ର ସନ୍ତାନ, କନ୍ୟା ମିମି ହୋଇଛି ଭାରି ବୋକା । ପଢ଼ାରେ ତାର ମନ ନାହିଁ, ବହି ଧରି ବସିଲେ ଢୁଳାଏ । କିଛି ପ୍ରଶ୍ନ ପଚାରିଲେ ବୋକାଙ୍କ ଭଳି ଚାହିଁରହିଥାଏ ।

ଅଧଘଣ୍ଟାଏ ଧରି ବକର ବକର ହୋଇ ଜୀବନବାବୁ ପ୍ରାଣପଣେ ଚେଷ୍ଟା କରୁଛନ୍ତି ବୁଝାଇବାକୁ—"ଏ ହୃଦୟ ମୋର ଢାଳିଦେଲି ଆଜି ତୁମରି ପାଦେ ହେ ନାଥ ।" ମିମି ପାଟିଟାକୁ ମେଲି କରି ବଡ଼ ବଡ଼ ଆଖିରେ ସବୁ ଯେମିତି ଗିଳିଯାଉଛି, ସବୁ ଯେମିତି ବୁଝି-ପକାଉଛି ଏମିତି ଭାବରେ ଚାହିଁରହିଛି । ମଝିରେ ମଝିରେ ତାର ଝୁଞ୍ଚୁକୁଞ୍ଚିଆ ବାଳଗୁଡ଼ିକ ପବନରେ ଉଡ଼ି ଆସି ଆଖି ଉପରେ ପଡ଼ିବାରୁ ମିମି ବିରକ୍ତ ହୋଇ ସେଗୁଡ଼ିକ ଉପରକୁ ଠେଲିଦେଇ ପୁଣି ସେମିତି ଚାହିଁରହୁଛି, ସତେ ଯେପରି ବାଳଗୁଡ଼ିକ ତାର ବୁଝିବାରେ ବ୍ୟାଘାତ ଜନ୍ମାଇବାରୁ ସେ ଭାରି ବିରକ୍ତ । ମିମିର ଭାବ ଦେଖି ଜୀବନବାବୁ ଅଧିକ ଉତ୍ସାହରେ ବୁଝାଇ ଚାଲିଛନ୍ତି । କିଛି ସମୟ ପରେ ମିମିର ବିସ୍ଫାରିତ ବଡ଼ ବଡ଼ ଆଖି ଯୋଡ଼ିକ କ୍ରମେ ଛୋଟ ହୋଇଆସିଲା । ପ୍ରାଣପଣେ ସେ ଉପରପତାକୁ ଟେକି ରଖିବାକୁ ଚେଷ୍ଟାକରୁଛି । ଘଣ୍ଟାଏ ଧରି ଉକ୍ତ ପଙ୍‌କ୍ତିଟିକୁ ବୁଝାଇବା ପରେ ଜୀବନବାବୁ ମନରେ ସନ୍ତୋଷ ଲାଭକଲେ ଯେ ମିମିକୁ ତାହାର ସରଳାର୍ଥ ଓ ଭାବାର୍ଥ ହୃଦୟଙ୍ଗମ କରାଇ-ପାରିଛନ୍ତି । ସନ୍ତୋଷର ହସ ହସି ସେ ଏଥର ପଚାରିଲେ—ବୁଝିଲୁ ମା' ?

ମିମି ପୁଣି ଥରେ ମୁଣ୍ଡବାଳ ଝେଙ୍କଦେଇ ଦିଁ। ଆଉ ଡାହାଣକୁ ମୁଣ୍ଡକୁ ଯଥା ସମ୍ଭବ ନୁଆଁଇ ମୁହଁରେ ହସ ଫୁଟାଇ ଜଣାଇଲା, ସେ ସବୁ ସମ୍ପୂର୍ଣ୍ଣ ରୂପେ ହୃଦୟଙ୍ଗମ କରି-ପାରିଛି; କିନ୍ତୁ ଆଖିରେ ତାର ଭୟ ଫୁଟିଉଠିଲା। ଘୁମନ୍ତ ଆଖିଯୋଡ଼ିକ ଭୟରେ ବଡ଼ ବଡ଼ ହୋଇଗଲା।

ଜୀବନବାବୁ ରାଗିଯାଇ କହିଲେ, "ବୁଝିଛୁ ତ ବୋକାଙ୍କ ଭଳି ଚାହିଁରହିଚୁ କିଆଁ ? ବୁଝା କଅଣ ବୁଝିଲୁ, ବୁଝା !"

ମିମି ଦୁଇ ଚାରି ଢୋକ ଛେପ ଗିଳି ଆରମ୍ଭ କଲା, "ନାଥ ବୋଇଲେ ସ୍ୱାମୀ କି ଭଗବାନ୍, ଯିଏ ଆମକୁ ସୃଷ୍ଟି କରିଚନ୍ତି, ସିଏ ଭାରି ଭଲଲୋକ, କାହାରିକୁ କିଛି କହନ୍ତି ନାହିଁ, କାହାରି ଉପରେ ରାଗନ୍ତି ନାହିଁ, ଭା-ଆ-ଆ-ରି ଭଲ ଲୋକ ଜଣେ।"

"ହେନାଟା ବୁଝିଚୁ, ବଦମାସ୍ କାହିଁକା। ଘଣ୍ଟାଏ ଧରି ବକର ବକର ହେଲା। ଶେଷରେ କହିଲୁ ଭଗବାନ୍ ଜଣେ ଲୋକ ! ସୃଷ୍ଟି ମୁହଁରେ ପଶୁ ନାହିଁ, କହୁଚ 'ସୁରୁଷ୍ଟି।' ଅହୁରି ପିଲା ହୋଇଯା ମ ! ଆଠ ବର୍ଷର ଝିଅ ହେଲଣି, ପଞ୍ଚମ ଶ୍ରେଣୀରେ ବର୍ଷେ ଫେଲ୍ ହେଲଣି···ଲାଜ ନାହିଁ ଟିକେ···"

ମିମି ଭୟରେ ପଛକୁ ଘୁଞ୍ଚିଯାଇ କହିଲା, "ନା, ନା, ଭଗବାନ୍ ଜଣେ···ଭଗବାନ୍ ଜଣେ ··"

"କଅଣ ଭଗବାନ ଜଣେ ?"—ଜୀବନବାବୁ ସଗର୍ଜନେ ପଚାରିଲେ।

ହୋହରିଲା ତେଣ୍ଡେରିଲା ମିମି ମନେ ମନେ ନିଜେ ନିଜକୁ ପଚାରିଲା, ଭଗବାନ୍ କଅଣ ? ବାପା କଅଣ କହିଲେଟି ? ଭଗବାନ୍ କଅଣ ? ଏହି ସମୟରେ ମିମିର ଗେଲବସର ଝିଅ ଶଙ୍କି ଦୌଡ଼ିଆସି ମିମିର କୋଳକୁ ଚଢ଼ିଯାଇ କହିଲା—ମ୍ୟାଉଁ, ମ୍ୟାଉଁ।

ମିମିର ପାଟିରେ ପଶିଗଲା, ଭଗବାନ୍ ଜଣେ ମ୍ୟାଉଁ।

ଜୀବନବାବୁଙ୍କର ଭୟଙ୍କର କ୍ରୋଧ ଜାତହେଲା। ସେ ଶଙ୍କିର ବେକକୁ ଧରି ଗ୍ରୁଟି ଦେଇ, ରୋଷେଇଶାଳଆଡ଼କୁ ଚାହିଁ ପାଟି କରି କହିଲେ, "ପଚାଶ ଥର କହିଲଣି ଯେ ଘରେ ବିରାଡ଼ି ଫିରାଡ଼ି ରଖନା, ପଢ଼ାରେ ଗୋଳମାଳ ହବ···ଦିନରାତି ସେଇ ବିରାଡ଼ି ସାଙ୍ଗରେ ଖେଳ !! ଇସ୍କୁଲରୁ ଆସି ଘରେ ପାଦ ଦେବାମାତ୍ରକେ ବହିପତ୍ର ଫୋପାଡ଼ିଦେଇ ଆଗେ ଖୋଜାହେବ ଶଙ୍କି କାହିଁ ! ହ୍ୟାପ, ମାତ୍ର ଗୁଣେ ଦୁହିତା ହୋଇଚ ! ମଲୁ ନାହିଁ, ଦେଖିଲୁ ଶଶଧରବାବୁଙ୍କ ଝିଅକୁ, କେମିତି ପାଟି କରି ପଢ଼ୁଚି। ଦେଖିଲୁ ଲିଙ୍ଗରାଜବାବୁଙ୍କ ଝିଅକୁ, କେମିତି କ୍ଲାସରେ ପ୍ରଥମ ହେଉଚି। ମୋରି କପାଳକୁ ତୁ ଆସିଲୁ। ଏ ବଂଶରେ କେହି ଗୋଟାଏ ହେବେନାହିଁ, କେହି ଗୋଟାଏ ନାଁ' ରଖିବେ ନାହିଁ। କପାଳ, କପାଳ ! ହ୍ୟାପ୍, ଆର ପରୀକ୍ଷାରେ ଖାତାସବୁ ଚିରି ଡଙ୍ଗା କରି ଭସେଇ ଦେଇ ଚାଲିଆସିଲା। ମଲୁ ନାହିଁ ଯା ତୁ···"

ଗତ କ୍ଲାସଉଠା ପରୀକ୍ଷାରେ ପରୀକ୍ଷାଦେବାକୁ ମିମି ଇସ୍କୁଲରେ ବସିଛି ଏହି ସମୟରେ ଘୋର ବର୍ଷା ହେଲା । ପାଣି ଇସ୍କୁଲର ବାରଣ୍ଡା ଟପି ଘରର ଦୁଆର ମୁହଁ ପର୍ଯ୍ୟନ୍ତ ଚାଲିଆସିଲା । ମିମିର ମନ ଆଉ ଠିକ୍ ରହିଲାନାହିଁ । ପରୀକ୍ଷା ଦେଉଛି ସେ, ଏ କଥା ଏକଦମ୍ ଭୁଲିଗଲା । ସେ ଧୀରେ ଧୀରେ ପରୀକ୍ଷା ଘରୁ ବାହାରି ଚାଲିଆସିଲା । ପରୀକ୍ଷା ଖାତା ପତ୍ରରୁ ପତ୍ର କରି ଚିରି ଡଙ୍ଗା କରି ଭସେଇଦେଲା । ଡଙ୍ଗାଗୁଡ଼ିକ ଥରି ଥରି ଭାସିଗଲେ । ମିମି ମହାତୃପ୍ତିର ସହିତ ଡଙ୍ଗାଗୁଡ଼ିକୁ ଛାଡ଼ି ବର୍ଷାରେ ଭିଜି ଘରକୁ ଫେରିଆସିଲା । ଘରକୁ ଆସି ତାର ମନେପଡ଼ିଲା ବାପାଙ୍କ କଥା । ବାପାଙ୍କ ଭୟରେ ତାର ଜ୍ୱର ଆସିଲା । ସେ ଜ୍ୱର ଛାଡ଼ିବାକୁ ଲାଗିଲା ଅନେକ ଦିନ । ମିମି ସେଥର ଫେଲ୍ ହେଲା ସତ; କିନ୍ତୁ ତାର ଜ୍ୱର ଯୋଗୁଁ ସେଥର ସେ ଛାଡ଼ ପାଇଗଲା । ପରେ ଜୀବନବାବୁ ସବୁ ଜାଣିପାରି ଖୁବ ରାଗିଯାଇ ବାଡ଼େଇଥିଲେ । ଆଜି ସେଇ କଥା ମନେପଡ଼ିଯିବାରୁ ତାଙ୍କର ରାଗ ଦ୍ୱିଗୁଣିତ ହେଲା । ଠାଏ କରି ଗୋଟାଏ ଚଟକଣି ଲଗେଇ ଦେଇ ସେ କହିଲେ, "ତୁ ନ ବୁଝାଇଲେ ତୋତେ ଛାଡ଼ୁନାହିଁ ମୁଁ । ଯେତେ ରାତି ହେଉ । ଆଜି ତୋର ଦିନେ କି ମୋର ଦିନେ । ଖାଇବା ଆଜି ବନ୍ଦ । ବୁଝା, ବୁଝା, ବୁଝା ମ, କାନ୍ଦଣା ଥାଉ ।"

ରୋଷେଇଶାଳରୁ ପାଟି ଶୁଭିଲା, "ତୁମେ ଝିଅକୁ ପାଠ ପଢ଼େଇବ ନାହିଁ ଆଉ । ଯେତେବେଳେ ପଢ଼େଇବସିଲେ, ମାଡ଼ ଛଡ଼ା ଆଉ କିଛି ନାହିଁ । ଆମେ କଅଣ ଝିଅକୁ ଖୋଞ୍ଚା-ବାକୁ ପିନ୍ଧିବାକୁ ଦେଉଚୁ ଯେ ତାଠୁଁ ଏତେ ଆଶା କରିବା ? ପଢ଼େଇ ତ ଜାଣ ନାହିଁ…"

ଜୀବନବାବୁ ଉତ୍କ୍ଷିପ୍ତ ହୋଇ କହିଲେ, "କଅଣ ହେଲା, ମୁଁ ପଢ଼େଇ ଜାଣେ ନାହିଁ ? ଘଣ୍ଟାଏ ଧରି ଟିକିନଖି ବୁଝେଇଲି । ସବୁ ବୁଝିଯିବାଭଳି ମୁଣ୍ଡ ଟୁଙ୍ଗାରିଲା । ମୁଁ ଜାଣେ ନାହିଁ ନା ମାତୃଗୁଣେ ବୁଦ୍ଧିହୀନା ହୋଇଚି ମ ! ଶ୍ୟ, ଗେହ୍ଲା କରି କରି ଝିଅଟାର ମୁଣ୍ଡ ଖାଇସାରିଲଣି ତମେ !

ରୋଷେଇଶାଳରୁ ପୁଣି ଦୃଢ଼କଣ୍ଠରେ ଡାକରା ଆସିଲା, "ହଉ, ଥାଉ ଆଜି ସେତିକି । ଆ ମିମି, ଖାଇବୁ ଆ ।"

ମିମି ଆଣ୍ଠୁ ଟେକୁଥିଲା ଉଠିବାକୁ । ଜୀବନବାବୁ ଗର୍ଜନ କରି ଉଠିଲେ, "ଖବର୍ଦ୍ଦାର ସେତକ ନ ବୁଝାଇ ତୁ ଆଜି ଯାଇପାରିବୁ ନାହିଁ । ବୁଝା, ଭଗବାନ୍ କଅଣ ? ଏତେ ବୁଝାଇଲି ମୁଁ, ବୁଝା !"

ସରଳାର୍ଥ ବୁଝାଇବାରେ ଭଗବାନ୍ ଆସି ସବୁ ପ୍ରଥମରୁ ଅଡ଼୍ୟୁଆ ପୂରାଇଦେବାରୁ ମିମି ଲୁହ ପୋଛି ଭଗବାନ୍‌ଙ୍କୁ ଗାଳିଦେଇ ମନେ ମନେ କହିଲା, ଭଲ ଲୋକ ନା ପୋଡ଼ା-ମୁହାଁଟା ; ମୋତେ ବାପାଙ୍କଠୁଁ ଏତେ ମାଡ଼ ଖୋଇଲାଣି । ଏତେ ଅଡ଼ୁଆକୁ ନ ଯାଇ ଭଗବାନ୍ କଥାଟାକୁ ବାଦ ଦେଇ ସେ ବୁଝାଇବାକୁ ଯାଉଥିଲା; କିନ୍ତୁ ମନେ ମନେ ପୋଡ଼ାମୁହାଁ ଗାଳି ଦେବାପରେ ତାର ମନେପଡ଼ିଗଲା ପୁରୀମନ୍ଦିରରେ ଜଗନ୍ନାଥଙ୍କ କଥା । ଜଗନ୍ନାଥଙ୍କୁ ଦେଖି ସେ ଆଈକୁ କାନେ କାନେ ପଚାରିଥିଲା, "ଆଈ ମ, ଜଗନ୍ନାଥଙ୍କ ମୁହଁ

କଅଣ ପୋଡ଼ା ?,'' ନାରୁଣୀର ପ୍ରଶ୍ନରେ ଆଈ ଆଖିରେ ଲୁହ ଝରିପଡୁଥିଲା । ସେ ନାରୁଣୀକୁ ଚୁମ୍ବନ ପରେ ଚୁମ୍ବନ ଦେଇ କହୁଥିଲେ, "ହଁ ସେ ପୋଡ଼ାମୁହାଁ ଭଗବାନ୍ । ସେଇକଥା ମନେ ପଡ଼ିଯିବାରୁ ମିମି ଯେପରି ଅନ୍ଧକାର ମଧ୍ୟରେ ଆଲୋକ ପାଇଲା । ଆଖି ତାର ଉଜ୍ଜ୍ୱଳ ହୋଇ-ଉଠିଲା । ଜଗନ୍ନାଥ ଯେପରି ତା ଆଖି ଆଗରେ ଉଭାହେଲେ । ସେ ଭଲକରି ଥରେ ସେ ଚେହେରା ଦେଖି ନେଇ କହିଲା, "ଭଗବାନ୍ ହେଉଛନ୍ତି ଜଗନ୍ନାଥ''; କିନ୍ତୁ ଆଈ କଥା ମନେ ପଡ଼ିଯିବାରୁ ମିମିର ଆଖିଯୋଡ଼ିକ ଛଳଛଳ ହୋଇଗଲା । ସେ ସବୁ ଭୁଲିଯାଇ କହିଲା, "ବାପା ମ, ବାପା, ଆଈ ମୋତେ ଲେଖିଚି ଗାଁରେ ରହି ତାର ମୋ କଥା ମନେପଡ଼ି ମନ ଭାରି ଖରାପ ହେଉଚି । ତାକୁ ନେଇ ଆସ ମ ବାପା !''

"ରଖ୍ ତୋ ଆଈ ! ହଁ, ଭଗବାନ୍ ହେଉଛନ୍ତି ଜଗନ୍ନାଥ । ତାପରେ କଅଣ ହେଲା ?''

ଆଈ-ବିରହବିଧୁର ଶିଶୁ ମନକୁ ପୁଣି ସରକାର୍ଥକୁ ଫେରାଇଆଣିବାକୁ ମିମିର କିଛି ସମୟ ଗଲିଗଲା । ଉଦ୍‌ଗତ ଅଶ୍ରୁ ରୋଧ କରି ମିମି କହିଲା, "କବି ଏଠାରେ କହୁଚନ୍ତି, କହୁଚନ୍ତି···କହୁଚନ୍ତି ଯେ···ଆଈ ମ, ଆଈ ଲୋ···!'' ମିମି ଏଥର ଆଉ ସମ୍ଭାଳି ନ ପାରି ଭେଁ କରି କାନ୍ଦିପକାଇଲା ।

ଜୀବନବାବୁ ଦୁମ୍ ଦୁମ୍ କରି ତା ପିଠିରେ ଦୁ'ଟା କିଦା ଦେଇ କହିଲେ, "ଧେତ୍, ମୋ କପାଳରେ, ଦେଖ ଯାକୁ । ଏତେ ବୁଝାଇଲି ଘଣ୍ଟାଏ ଧରି, ସବୁ କୁଆଡ଼େ ଭୁଲିଗଲୁ ? ଇସ୍କୁଲ ମାଷ୍ଟ୍ରେ କାଲି କହୁଥିଲେ ଯେ ମିମି କ୍ଲାସରେ ମୋଟେ ମନ ଦେଉନାହିଁ ; ଯେତେ ଅଦ୍ଭୁତ ଉତ୍ତର ଦେଉଛୁ । ହଇ ଲୋ ହେଏ, ବିପରୀତ ଶବ୍ଦମାନେ କଅଣ ? ବିପରୀତ ଶବ୍ଦ ମାନେ କଅଣ ବା ? କହୁଚି ନା ସକେଇ ଦଉଚି ବେହିସ୍ୟା । ଲାଜ ନାହିଁ, କାନ୍ଦୁଚି ପୁଣି ! ଛିଃ, ଛିଃ, ମୋ ଝିଅ ହୋଇ ତୁ ଏଇଥ୍ୟା କହିଲୁ ! ଏତେ ବୁଝାଇଲି ସେ ଦିନ, ତୁ କହିଲୁ 'ସୁଖ'ର ବିପରୀତ ଶବ୍ଦ 'ଖସୁ' ! କାନ୍ଦଣା ରଖି କହ, ମୁଁ କଅଣ ବୁଝାଇଲି । କବି କହୁଚନ୍ତି ଯେ···ହୁଁ···''

ମିମି ଲୁହ ପୋଛୁ ପୋଛୁ ପୁଣି କହିବାକୁ ଚେଷ୍ଟା କଲା, "କବି କହୁଚନ୍ତି ଯେ···''

ଏତକ କହିବା ପରେ ସେ ମନେ ମନେ ପୁଣି ନିଜେ ନିଜକୁ ପଚାରିଲା—କବି କିଏ ମ ? ସେ କାହାଁକି କଅଣ କହିବାକୁଗଲେଣି ? ସବୁ ତାର ପୁଣି ଗୋଳମାଳ ହୋଇଗଲା । ଆର ପାଖ ଘରେ ଶଙ୍କି ମ୍ୟାଉଁ ମ୍ୟାଉଁ କରି ଉଚ୍ଛନ୍ନ ସ୍ୱରରେ ଡାକିଲାଣି । ଲୋକ୍ୟାଡ଼େ କବି କିଏ, ଆଉ ସେ କଅଣ କହିଲେ ଓ କାହିଁକି କହିବାକୁ ଗଲେ ମିମିର ମନେପଡ଼ୁନାହିଁ । ମନେ ମନେ ମିମି ଶଙ୍କିକୁ ତାନେ ଗାଳିଦେବାକୁ ଲାଗିଲା, ପୋଡ଼ାମୁହିଁ, ପଡ଼ା ସବୁ, ଦଉଚି ତତେ ଟାଙ୍କେ ଛେଚି । ପଢ଼ା କଅଣ ସରିବ ଆଜି ସତେ ? ହେ ମହାପ୍ରଭୁ, ହେ ଜଗନ୍ନାଥ, ଏ କବି ପୋଡ଼ାମୁହାଁ କଅଣ କହିଚି ମନେପକେଇଦିଅ ।

ଏହି ସମୟରେ ବାହାରେ କିଏ ଡାକିଲା—ବାବୁ ଅଛନ୍ତି ? ଜୀବନବାବୁ ଚଢ଼ଉଠି ଉତ୍ତର ଦେଲେ, "ନାହିଁ, ବାବୁ ନାହାନ୍ତି ।" ବାହାରୁ ଉତ୍ତର ଆସିଲା, "ବଡ଼ବାବୁ ଡାକୁଚନ୍ତି, ଶୀଘ୍ର ଆସନ୍ତୁ କଚେରି—କଅଣ ଜରୁରି କାମ ଅଛି ।"

ଜୀବନବାବୁ ବିରକ୍ତ ହୋଇ କମିଜ ପିନ୍ଧୁ ପିନ୍ଧୁ କହୁଥିଲେ, "ମୁଁ ଯାଉଚି, ଅଧଘଣ୍ଟା ଭିତରେ ଫେରିବି । ମୁଁ ଯାହା ବୁଝାଇଥିଲି ତାହା ଲେଖିଥିବୁ, ଆଉ ଦ୍ୱିତୀୟ ଉଦାହରଣ-ମାଳାର ପାଞ୍ଚ ନମ୍ବର ଅଙ୍କଟି କଷି ରଖିଥିବୁ । ଯଦି ନ ହୋଇଚି ଏଠିକି ତ ଦେଖିବୁ ମୁଁ ତୋର କି ଅବସ୍ଥା କରିବି ।"

ଜୀବନବାବୁ ତରତର ହୋଇ ଚାଲିଗଲେ । କଚେରିରେ ବଢ଼ି ଫଜାନ୍ତ କରୁଣ କାମ କରୁ କରୁ ତାଙ୍କର ଘଣ୍ଟାଏ ଲାଗିଗଲା । ଘରର ଦାଣ୍ଡଦୁଆର ମୁହଁପାଖରେ ଧୀରେ ପାଦରୁ ଜୋତା କାଢ଼ି, ହାତରେ ଧରି, ଝରକାବାଟେ ଉଙ୍କି ମାରି ଦେଖିଲେ ମିମି ଶୋଇଚି ନା ପାଠ ପଢ଼ୁଚି । ଝରକା ବାଟେ ଯାହା ଦେଖିଲେ, ସେଥିରୁ ସେ କିଛି ବୁଝିପାରିଲେ ନାହିଁ । ତାଙ୍କର ବଡ଼ଭାଇ ଓ ସାନଭାଇ ଦୁହେଁ ଖାତା ଉପରେ ଲଇଁ ପଡ଼ି କଅଣ ଲେଖି ଚାଲିଚନ୍ତି । ଅନେକ ଲେଖିସାରିଲେଣି । ଅନେକ କାଗଜ ଚିରା ହୋଇ ତଳେ ପଡ଼ିଚି । ମିମି ଦୁଇଗୋଡ଼ ଲମ୍ବେଇ ଦେଇ ଶଙ୍କିକୁ କୋଳରେ ବସାଇ ତାକୁ ଥାପୁଡ଼ାଇ ଥାପୁଡ଼ାଇ ଗୀତ ଗାଉଚି, 'ଧୋରେ ବାୟା ଧୋ, ଯେଉଁ କିଆରିରେ ଗହଳ ମାଣ୍ଡିଆ ସେଇ କିଆରିରେ ଶୋ ।'

ଘର ଭିତରକୁ ପଶି ଆସି ଜୀବନବାବୁ ପଚାରିଲେ—ମିମି, ତୋର ଏଇ ପଢ଼ା ହଉଚି ?

ମିମି ଚମକିପଡ଼ି ବାପାକୁ ଚାହିଁ ଶଙ୍କିକୁ ଛାଡ଼ିଦେଲା । ଭୟରେ ମୁହଁ ତାର ଏତେ ଟିକିଏ ହୋଇଗଲା, କଳାକାଠ ପଡ଼ିଗଲା ।

"ଇଏ କଅଣ ହେଉଚି ଭାଇ ?" ଜୀବନବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଅଙ୍କ କଷୁଚୁ ଆମେ । ଛି, ଛି, ଏଇ ଟିକେ ପିଲାକୁ ଏମିତିକା ଅଙ୍କ ? 'ସରଳ ଗଣିତ' ଇଏ ନା ? ଲେଖକ ନିଜର ପାଣ୍ଡିତ୍ୟ ଦେଖେଇଚି ନା ପିଲାର ବୁଦ୍ଧି କେତେ ବିବେଚନା କରିଚି ଟିକିଏ ? ଦେଇ ତ ଗଲୁ ଅଙ୍କ...କଲୁ ତୁ ନିଜେ ଏକୁ ?"

ଜୀବନବାବୁ ଅଙ୍କ ଖଣ୍ଡିକ ପଢ଼ିଲେ...ମୁଁ ମୋ ଘରୁ ତେଲଙ୍କର ଗୋଟିଏ ସଭାକୁ ପାଦରେ ଚାଲି ଯିବି । ସଭାରେ ଠିକ୍ ସନ୍ଧ୍ୟା ୭ଟା ବେଳେ ପହଞ୍ଚିବାର କଥା । ମୁଁ ଯଦି ଘଣ୍ଟାକୁ ୩ ମାଇଲ ବେଗରେ ଯାଏଁ ତେବେ ଠିକ୍ ସମୟର ଅଧ ଘଣ୍ଟାଏ ଆଗରୁ ପହଞ୍ଚିବି । ଯଦି ଘଣ୍ଟାକୁ ୨ ମାଇଲ ବେଗରେ ଯାଏ ତେବେ ଠିକ୍ ସମୟର ଘଣ୍ଟାକ ପରେ ପହଞ୍ଚିବି । ତେବେ ମୋ ଘରୁ ସଭାସ୍ଥାନ କେତେ ଦୂର ? ଅଙ୍କଟି ପଢ଼ି ଜୀବନବାବୁ ବଙ୍କେଇ ତେଢ଼େଇ ଦୁଇ ତିନି ଥର ଅଙ୍କଟିକୁ ଚାହିଁଲେ । କେମିତି ଭାବରେ ଆରମ୍ଭ କରିବେ କିଛି ବୁଝିପାରିଲେ ନାହିଁ ।

ବଡ଼ଭାଇ କହିଲେ, "ଆରେ ଅଙ୍କ ତ କଷିବା ଦୂରେ ଥାଉ, ମିମି ଆଗେ ପଚାରୁଛି ବସିଲା ସଭା କଅଣ ? ସେଠାକୁ ନ ଗଲେ କଅଣ ଚଳନ୍ତା ନାହିଁ ? ବୁଝା, ସଭା କଅଣ ବୁଝା । କୌଣସି ମତରେ ସଭା କଅଣ ବୁଝାଇଲୁ ଆମେ । ମିମି ପୁଣି ପଚାରିଲା, ହଉ ହେଲା, ଠିକ୍ ଏ ଆଗରୁ ବା ପରେ ପହଞ୍ଚିଲେ ଦୋଷ କଅଣ ଯେ···ଏଣୁ ରାଗିଲେଣି କାହିଁକି ? ଏ ସବୁ ଗୋଲମାଲିଆ ପ୍ରଶ୍ନର ଉତ୍ତର ଦେଉଁ ଦେଉଁ ତ ଗଲା ଅଧଘଣ୍ଟାଏ । ତାପରେ ଅଙ୍କ ଧରି ତ ଆମେ ଦୁହେଁ ବସିଚୁ । ମିମିର ଦେଢ଼ ଖଣ୍ଡ ଖାତା ଶେଷ ହେଲାଣି, ମୋର ଖଣ୍ଡେ ଶେଷ ହେବାକୁ ବସିଚି ।

ସମସ୍ତେ ହସିଲେ । ଜୀବନବାବୁ କହିଲେ, "ହଉ ଥାଉ, ଅଙ୍କ ଥାଉ । ମିମି, ଏ ମିମି, ସାହିତ୍ୟ ହେଇଚି ?"

"ନା, ମୁଁ ଅଙ୍କ କରୁଥିଲି । ବଡ଼ବାପା ଓ ସାନବାପା ମୋତେ ଖାଇବାକୁ ଡାକିଲେ । ମୁଁ କହିଲି—ପଢ଼ା ନ ସାରି ଯିବିନାହିଁ—ପଢ଼ା ନ କଲେ ଭଗବାନ୍ ରାଗିବେ । ସେଇଠୁ ସେମାନେ ଅଙ୍କ ଦେଖି କଷିବାକୁ ବସିଲେ, ମୁଁ···"

"ତୁ ଶଙ୍କିକୁ ଶୋଇଦେବାକୁ ବସିଲୁ ! ନାଃ, ତୋ ଦେଇ ହବ ନାହିଁ ; କିନ୍ତୁ ତୋତେ ଆଜି ନ ବୁଝାଇ ମୁଁ ଛାଡ଼ିବି ନାହିଁ । କହ, 'ଏ ହୃଦୟ ମୋର ଢାଳିଦେଲି ଆଜି ତୁମରି ପାଦେ ହେ ନାଥ' ଏହାର ସରଳାର୍ଥ କହ ।"

ମିମି ଏଥର ସାହସ ଭରି କହିଲା, "ନାଥ ବୋଇଲେ ଜଗନ୍ନାଥ, ଯାହାଙ୍କର ମୁହଁଟି କାଳିଆ, ବଡ଼ ବଡ଼ ଆଖି, ନେଫଡ଼ା ମୁହଁ···"

ଜୀବନବାବୁ କଟମଟ କରି ଚାହିଁଲେ ମିମିକୁ । କିନ୍ତୁ ବଡ଼ଭାଇ ଥିବାରୁ ସେ ତାଙ୍କ ଭୟରେ ମିମିକୁ କିଛି କହିପାରିଲେ ନାହିଁ ।

କିନ୍ତୁ ବାପାଙ୍କର ବଡ଼ ବଡ଼ ଆଖି ଦେଖି ମିମିର ମୁହଁଟି ଶୁଖିଗଲା । ସବୁ ଉତ୍ସାହ ତାର ମରିଗଲା ।

ବଡ଼ଭାଇ ବୁଝିପାରି କହିଲେ, "ହଁ ଲୋ ମା, ତୁ ଠିକ୍ କହିଚୁ । ବାଃ, ବେଶ୍ ସୁନ୍ଦର ବୁଝିଚି । ହଁ, ତା ପରେ—"

"ତା ପରେ, ସେଇ ଜଗନ୍ନାଥଙ୍କୁ ଚାହିଁ କବି ବୋଲି ଜଣେ ଲୋକ କହିଲେ, କହିଲେ···"

"ହଁ ହଁ କହିଲେ"—ବଡ଼ଭାଇ ଉତ୍ସାହ ଦେଇ ପଚାରିଲେ । ମିମି ସାହସ ପାଇ ତାର ବଡ଼ବାପାର କାନେ କାନେ କହିଲା, "ଜଗନ୍ନାଥଙ୍କର ପାଦ ନାହିଁ ମୁଁ ଦେଖିଚି । ଆଉ ହୃଦୟକୁ କିଏ ବା ଢାଳିଦେଲା । ତା ବାପା ଗାଳିଦେଲେ । ଆଚ୍ଛା ବଡ଼ବାପା, ହୃଦୟ ଢାଳିଲା କେମିତି ?"

ବଡ଼ଭାଇ ମିମିକୁ କୋଳକୁ ଆଉଜାଇ ନେଇ କହିଲେ, "ମା, ତୋ ପଢ଼ା ସେତିକି ଥାଉ ଆଜି । ତୁ ଯାହା ପଚାରିଲୁ ତୋତେ ସେ କଥା କେହି ବୁଝାଇ ଦେଇ ପାରିବେ ନାହିଁ ।

ହୃଦୟକୁ କେମିତି ଚାଳନ୍ତି ସେ କଥା ମୁଁ ଏପର୍ଯ୍ୟନ୍ତ ବୁଝିପାରିନାହିଁ, ତୋତେ କିଏ ବୁଝାଇବ !! ଆଉ ମୋ କବିତା ବୁଝିବ ବୋଲି ବି ମୁଁ ଭାବୁନାହିଁ ।"

□□□

# ନାରୀ ଓ କବି

ଶଙ୍ଖ ହୁଳହୁଳିରେ ଗୃହ ମୁଖରିତ ହୋଇଉଠିଲା । ଘୋର ବର୍ଷା; କିନ୍ତୁ ମନ୍ଦ ମଳୟ ବୋହିବାକୁ ଲାଗିଲା । ପିକକୁଳ କୁହୁ ରବ କରିଉଠିଲେ । ଆକାଶରେ ପୂର୍ଣ୍ଣଚନ୍ଦ୍ର ପ୍ରତିଭାତ ହେଲେ । ଏପରି ଋତୁ ବିପର୍ଯ୍ୟୟ ହଠାତ୍ କାହିଁକି ଘଟିଲା !! ଓହୋଃ, ଶ୍ରୀ ଚକ୍ରଧର ମହାପାତ୍ରଙ୍କ ମଧ୍ୟମପୁତ୍ର ଶ୍ରୀମାନ୍ ମୁରଲୀମୋହନଙ୍କ ସହିତ ଅଠାଠିକ୍ ଗ୍ରାମନିବାସୀ ଶ୍ରୀ ଜୀବନ ବଲ୍ଲଭ ଦାସଙ୍କ ଜ୍ୟେଷ୍ଠା କନ୍ୟା ଆୟୁଷ୍ମତୀ ଶ୍ରୀମତୀ ସୁଶୀଲା ଦେବୀଙ୍କ ଶୁଭପରିଣୟ ଘୋଷିତ ହୋଇଛି । କାଲେ ଏ କଥା କେହି ବିଶ୍ୱାସ ନ କରନ୍ତି, ସେଥିପାଇଁ ପ୍ରମାଣ ପକ୍ଷେ ଯଥେଷ୍ଟ ବିବେଚିତ ହୋଇ କହୁଣି ପର୍ଯ୍ୟନ୍ତ ଗୋଟିଏ ନାରୀର ହାତ ସହିତ ତଦ୍ରୁପ ଗୋଟିଏ ପୁରୁଷର ହାତ ଛନ୍ଦାଛନ୍ଦି ଅବସ୍ଥାରେ ଅପାର୍ଥିବ ପୁଷ୍ପମାଳାରେ ବେଷ୍ଟିତ ହୋଇଥିବାର ଚିତ୍ର ମଧ୍ୟ ପ୍ରକାଶିତ ହୋଇଅଛି । ପତ୍ରଦ୍ୱାରା ନିମନ୍ତ୍ରଣ ତ୍ରୁଟି ମାର୍ଜନା କରି ସମସ୍ତ ବନ୍ଧୁବାନ୍ଧବ ଏବଂ ପତ୍ରଦ୍ୱାରା ନିମନ୍ତ୍ରିତ ହୋଇ ନ ଥିବାର ତ୍ରୁଟି ମାର୍ଜନା କରି ବନ୍ଧୁ ଅ-ବାନ୍ଧବ ଚକ୍ରଧରବାବୁଙ୍କର ମହାସମ୍ପଦଅ ବଜାରସ୍ଥ ବାସଭବନରେ ଉପସ୍ଥିତ । ମୁରଲୀଙ୍କ ଭାଉଜ ଉପର୍ଯ୍ୟୁକ୍ତ ଋତୁ-ବିପର୍ଯ୍ୟୟ ଗୋଲାପି କାଗଜରେ ନାଲି ଅକ୍ଷରରେ ଛପାଇ ପ୍ରଚାର କରିବା ସଙ୍ଗେ ସଙ୍ଗେ ପ୍ରାର୍ଥନା ଜଣାଇଛନ୍ତି, ହେ ଦୟାମୟ ବିଭୁ, ଏ ଦୁଇଟି ହୃଦୟର ଆଜି ଯେଉଁ ଅପୂର୍ବ ମିଳନ ଘଟିଲା ସେ ଦୁଇଟିକୁ ଏପରି ଭାବରେ ଯୋଡ଼ିଦିଅ ଯେ ଜନ୍ମଜନ୍ମ ଧରି···ଇତ୍ୟାଦି ଇତ୍ୟାଦି ।

ସାଙ୍ଗମାନଙ୍କ ଭିଡ଼ ଆସୁ ଆସୁ ଅନେକ ରାତି ହୋଇଗଲା । ମୁରଲୀ ଜାଣିଶୁଣି ମଧ୍ୟ ଡେରିକରି ଫେରିଲେ । କାରଣ ସେ କଳ୍ପନା କରୁଥିଲେ, ସୁଶୀଲା ତାଙ୍କୁ ଅପେକ୍ଷା କରି କରି ଅଭିମାନରେ ଖଟର ଗୋଟିଏ କଣରେ ବସିଥିବ, ରୁଦ୍ଧ ଅଭିମାନରେ ତାର ପାତଳା ଓଠ ଦୁଇଟି ଥରିଉଠୁଥିବ, ସୁନ୍ଦର ଆଖିଯୋଡ଼ିକ ଉଦ୍‌ଗତ ଅଶ୍ରୁରେ ଛଳଛଳ ହୋଇ ଆହୁରି ସୁନ୍ଦର ଦିଶୁଥିବ···

କିନ୍ତୁ ଦୁଆର ଖୋଲି ଦେଖିଲେ ସୁଶୀଲା ପଲଙ୍କର ଗୋଟିଏ କଣରେ ନିଘୋଡ଼ ନିଦରେ ଶୋଇଛି । ପାଟି ଉପରେ ପଡ଼ିଥିବା ପଣତ କାନି ନିଃଶ୍ୱାସ-ପ୍ରଶ୍ୱାସରେ ପଡ଼ୁଛି

ଝିଅଠୁ ଏବଂ ଗୋଟିଏ ଅଦ୍ଭୁତ ଶବ୍ଦ ନିର୍ଗତ ହେଉଅଛି । ମୁରଲୀଙ୍କ କଳ୍ପନା ଧୂଳିସାତ୍ ହୋଇଗଲା । କ୍ଷୋଭ ଓ ଅଭିମାନରେ ତାଙ୍କର ଦେହ ଥରିଉଠିଲା । ପୁଣି ଭାବିଲେ, ଦୁଇ ଦିନର ଉପବାସରେ ବୋଧହୁଏ ସୁଶୀଳା କ୍ଲାନ୍ତ, ତାଙ୍କୁ ଅପେକ୍ଷା କରି କରି ବୋଧହୁଏ ସେ ସେଇଠି ଶୋଇପଡ଼ିଛି···ଏ ଭାବନା ଆସିବା ପରେ ସେ ଟିକିଏ ଆଶ୍ୱାସନା ପାଇଲେ । ସୁଶୀଳାକୁ ନିଜର ଆଗମନ ବାର୍ତ୍ତା ଜଣାଇବା ଉଦ୍ଦେଶ୍ୟରେ ସେ ସଶବ୍ଦରେ ପଲଙ୍କ ଉପରେ ଶୋଇପଡ଼ିଲେ ।

ସୁଶୀଳା ତଥାପି ପୂର୍ବବତ । ମୁରଲୀଙ୍କ ମନରେ କ୍ରୋଧ ଜାତହେଲା । ପୁଣି ଭାବିଲେ, ସୁଶୀଳା ବୋଧହୁଏ ତାଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଶୋଇବାର ଅଭିନୟ କରୁଛି । ଗୋଟିଏ ତୃପ୍ତିର ନିଃଶ୍ୱାସ ପକାଇ ମୃଦୁକ ହସି ମୁରଲୀ ମଧ୍ୟ ଶୋଇବାର ଅଭିନୟ କଲେ ଏବଂ ଉଦ୍‌ଗ୍ରୀବ ଭାବରେ ଅପେକ୍ଷା କରି ରହିଲେ ସୁଶୀଳାର ସଙ୍କେତମୟ ପରଶକୁ ।

ସୁଶୀଳା ତଥାପି ପୂର୍ବବତ । ମୁରଲୀ ମୁଣ୍ଡଟେକି କଣେଇ ଚାହିଁ ଦେଖିଲେ ଯେ ତାଙ୍କର ଆଗମନବାର୍ତ୍ତା ସୁଶୀଳାକୁ ଆଦୌ ଜଣାନାହିଁ । ମୁରଲୀ ଏଥର ଯଥେଷ୍ଟ ଭୟ ପାଇଲେ···ତେବେ କଅଣ ସୁଶୀଳାର ମୋତେ ପସନ୍ଦ ହୋଇନାହିଁ ! ଏ ଚିନ୍ତା ଆସିବା ମାତ୍ରକେ ମୁଣ୍ଡରୁ ତାଙ୍କ ଝାଳ ବୋହିଗଲା···ଆଚ୍ଛା, ଏତେଦୂର ସ୍ପର୍ଦ୍ଧା, ଆମେ ବି ଏହାର ପ୍ରତିଶୋଧ ନେବା ଜାଣୁ···

ମୁରଲୀ ନିଘୋଡ଼ ନିଦରେ ଶୋଇବାର ଅଭିନୟ କରି ବିଲିବିଲେଇବାକୁ ଲାଗିଲେ··· ରାଣୀ, ରାଣୀ, ତୁମେ ଆସ···ଆସ ତୁମେ । ସୁଶୀଳା ତଥାପି ପୂର୍ବବତ ।

···ନା ରାଣୀ ମୁଁ ବିବାହିତ ହେଲେ ବି, ତୁମେ ହିଁ ମୋର ସବୁ···

ସୁଶୀଳା କର ଲେଉଟାଇ ତକିଆ ଜାକି ଅଧିକ ଆରାମରେ ଶୋଇଲା । ସବୁ ବିଫଳ··· ମୁରଲୀ ସେ ରାତିରେ ଆଉ ଶୋଇପାରିଲେ ନାହିଁ । ନାନା ଦୁଶ୍ଚିନ୍ତାରେ ସେ ରାତିଟି କଟିଲା ।

ଏହାପରେ ଦୀର୍ଘ ତିନିବର୍ଷ ବିତିଯାଇଛି । ମୁରଲୀ ଏ-ପର୍ଯ୍ୟନ୍ତ ବୁଝିପାରିନାହାନ୍ତି ସୁଶୀଳା ତାଙ୍କୁ ଭଲପାଇଛି କି ନା । ମଝିରେ ମଝିରେ ତାଙ୍କର ଘୋର ସନ୍ଦେହ ଜାତହୁଏ, ସୁଶୀଳାର କଅଣ କୌଣସି ନାରୀସୁଲଭ ଗୁଣ ନାହିଁ ! ସୁଶୀଳାର ମନରେ ହିଂସା ଜାତ କରାଇବା ଉଦ୍ଦେଶ୍ୟରେ ସେ ଥରେ କହିବାକୁ ଲାଗିଲେ, ତାଙ୍କର ରାଣୀ ପ୍ରତି ପୂର୍ବ ପ୍ରେମକଥା ସବୁ ଶୁଣି ସୁଶୀଳା ମୃଦୁକ ହସି କହିଲା—ଏସବୁ ମିଛକଥା ମୁଁ ଜାଣେ ।

—କାହିଁକି ମିଛ କହୁଛ ?

—ଜାଣେ ତ, ପ୍ରେମରେ ପଡ଼ିଥିବା ପୁରୁଷର କଥା ଅଲଗା ।

—ତା ମାନେ ତୁମେ କହୁଛ ମୋତେ କୌଣସି ନାରୀ ପ୍ରେମ କରିପାରେନା । ବେଶ୍ ବେଶ୍, ବୁଝିଲି ତୁମ ମନକଥା ।

—ମୁଁ ସେ କଥା କହୁନାହିଁ । ତୁମେ ମିଛରେ 'ସୁଶୀ' ବୋଲି ବଳବଳେଇଥିଲ, ମୁଁ ଜାଣେ ।

କ୍ରୋଧରେ ମୁରଳୀଙ୍କ ଦେହ ଥରଉଠିଲା । କିଛି ଗୋଟିଏ ଅଶୋଭନୀୟ କରିପକାଇବା ଭୟରେ ସେ ସେଠାରୁ ଚାଲିଗଲେ । କେତେ ଉପାୟରେ ସେ ସୁଶୀଳାକୁ ଆକୃଷ୍ଟ କରିବାକୁ ଚେଷ୍ଟାକରିଛନ୍ତି; କିନ୍ତୁ ଥରେ ସୁଦ୍ଧା ସୁଶୀଳାର ଭାବାନ୍ତର ସେ ଲକ୍ଷ୍ୟ କରିପାରିଲେ ନାହିଁ । ଗମ୍ଭୀର ହୋଇ ଉର୍ତ୍ତାରୂପ ଧାରଣ କରିଛନ୍ତି । ନୀରବ ରହି ତାପସ ରୂପ ଧରିଛନ୍ତି । ଶେଷକୁ ସେ ଥରେ ସାହିତ୍ୟ ଲେଖିବାକୁ ଆରମ୍ଭକଲେ । ତାଙ୍କର ଗୋଟିଏ କବିତା ପତ୍ରିକାରେ ପ୍ରକାଶ ପାଇଲା । ମୁରଳୀ ପତ୍ରିକାଟି ସୁଶୀଳାର ନଜରରେ ପଡ଼ିବା ଭଳି ଗୋଟିଏ ସ୍ଥାନରେ ରଖିଦେଇ କଚେରି ଚାଲିଗଲେ । କଚେରିରୁ ଫେରି ଦେଖିଲେ, ସୁଶୀଳାର କୌଣସି ଭାବାନ୍ତର ନାହିଁ । କଚେରିରୁ ସଦ୍ୟ ଫେରିଛନ୍ତି ବୋଲି ସୁଶୀଳା ଜଳଖିଆ ପ୍ରସ୍ତୁତ କରିବାରେ ବ୍ୟସ୍ତ । ଦୁଇଦିନ ଗଲା, ତଥାପି ସୁଶୀଳା କବିତା ବିଷୟରେ କିଛି କହିଲାନାହିଁ ।

ଆଉ ସହି ନ ପାରି ଥରେ ମୁରଳୀ କହିଲେ, "ସୁଶୀ, ମୋର ଗୋଟିଏ କବିତା ପ୍ରକାଶ ପାଇଛି, ଜାଣ ? ତାର ପ୍ରଶଂସା ବି ବାହାରିଛି କାଗଜରେ, ଦେଖ ।"

—ଦେଖେ ! ବାଃ, ମୋତେ ଆଜଯାଏ ବି କହିନା ତମେ ! ମୁଁ ଆଜି ଦେଖାଇବି ଝୁମ୍ପବୋଉକୁ । ଝୁମ୍ପ ବାପା କଅଣ ଗୋଟିଏ ଲେଖିଛନ୍ତି ଯେ ଝୁମ୍ପବୋଉ କେତେ ଗର୍ବରେ କାଲି ମୋତେ କହୁଥିଲା ।

—ବାଃ, କହିବି କଅଣ ବା, ମୁଁ ତୁମର ସାମନାରେ ଏତେ ଗାଧଯାଏ ବସି ଲେଖୁଥାଏ, ତୁମେ ଜାଣନା ? ଜାଣିବ କେମିତି ! ଗଧଙ୍କ ଭଳି ତ ଶୋଇବ ।

—ମୁଁ କାହିଁକି ଜାଣନ୍ତି କଅଣ ଲେଖୁଚ, ଭାବେ ଅଫିସ୍ କାମ କରୁଥିବ ।

—ରାତି ଗୋଟାଏ ପର୍ଯ୍ୟନ୍ତ ଅଫିସ୍ କାମ କରୁଥାଏ ଭାବିଲ !

—ବାପା ତ କରନ୍ତି । ତୁମେ ନ କରିବ କାହିଁକି ?

—ଆଚ୍ଛା, ମୁଁ କଣ ଲେଖେ ଥରେ ବି ଜାଣିବାକୁ ତୁମର ଆଗ୍ରହ ହୋଇନାହିଁ ?

—କହିଲି ପରା, ଅଫିସ୍ କାମ ଥିବ ଭାବିଥିଲି । ତୁମର ଯେ ଏ ଗୁଣ ଅଛି ମୁଁ କେମିତି ଜାଣନ୍ତି ?

—ଆହା କଏସେ ଜାଣନ୍ତା ?

—ରାଗ ନାହିଁ, ଦିଅ, ଖାଇବେଳେ ମୁଁ ଝୁମ୍ପବୋଉକୁ ଦେଖାଇବି ।

—ଝୁମ୍ପବୋଉକୁ ନ ଦେଖାଇ ନିଜେ ପଢ଼ିଲେ ମୁଁ ଖୁସିହୁଅନ୍ତି ।

—ପଢ଼ିବି, ପଢ଼ିବି ।

ତା ପରଦିନ ମଧ୍ୟ ମୁରଳୀ ସନ୍ଧ୍ୟା କଚେରିରୁ ଫେରିଲେ । ଫେରି ଦେଖିଲେ ସୁଶୀଳା ଚୌକିର ଗୋଡ଼ ଘଷିଦେଉଚି । ଚୌକି ଉପରେ ମୁରଳୀଙ୍କର ଘର ରାଗ ହେଲା, ଏମାନେ ଦୁହାନ୍ତି ଘରକୁ ଦାସୀ ; ଆଉ କିଛି ନାହିଁ ।

ମୁରଲୀ ନିଜ ଘରକୁ ଯାଇ ଜିନିଷପତ୍ର ଫୋପାଡ଼ି ପାଟିକରି କହିଲେ, "ଆରେ ମୋର କଲମ କିଏ ନେଲା ? ଗୋଟିଏ ଭାବନା ଆସିଚି, ଲେଖିବାକୁ ବସିଚି, ଆରେ କଲମ କିଏ ନେଲା—ଏ ଘରେ ସବୁ କିଛି ହବନାହିଁ ।"

ଭାଉଜ ଆସି କହିଲେ, "କାହିଁକି ପାଟିଟା କରୁଚ ? ସୁଶୀଳା ଆସୁଚି, ପାଟି କରନା । ବୋଉ ଦିନସାରା ଖଟି ଖଟି ଟିକିଏ ଆରାମ କରୁଚନ୍ତି ।"

—ମୁଁ ସେସବୁ ଜାଣେନା । ଡାକିଦିଅ ତାକୁ, ମୋ କଲମ ଦେଇଯାଉ ।—ମୁରଲୀ ଅଧିକ ଚିତ୍କାର କରି କହିଲେ ।

କେମିତି ଅଲଜୁକ ମ ତୁମେ ।—ସୁଶୀଳା ଆସି କହିଲା ।

—ସେ କଥା ଛାଡ଼—ପଢ଼ିଚ ?

—କଅଣ ?

—କଅଣ !!

—କଅଣ ମ ? ଓହୋ ତୁମର ଲେଖା ? ଝୁପଡ଼ୋଉ ଆସିଲାନାହିଁ ଆଜି । ମୋର ମନେପଡ଼ିଲା ନାହିଁ । କଅଣ କରିବି, କାମରୁ ବେଳନାହିଁ, ତୁମ ଲେଖା ପଢ଼ିବି କେତେବେଳେ ?

—ବେଳ ନାହିଁ । ପଢ଼ିନା ତେବେ ?

—ରାଗନା ମ । ପୁଅକୁ ଶୁଆଉ ଶୁଆଉ ତ ବେଳ ଗଲା । ଏତେ ଦୁଷ୍ଟ ସେ ହୋଇଚି, ତୁମପରି ମୋଟେ ଶୋଇବ ନାହିଁ ମୁଁ ତା ପାଖରେ ନ ଶୋଇଲେ । ଆଜି ରାତିରେ ତୁମେ ନିଜେ ମୋତେ ପଢ଼ି ଶୁଣାଇବ, ହେଲା ।

—ହଉ, ଆଜି ସହଳ କାମ ସାରି ଆସିବ ଶୋଇବାକୁ ।

ଘରକାମ ସାରି ସୁଶୀଳାର ଆସିବାକୁ ରାତି ବାରଟା ! ବହିଧରି ମୁରଲୀବାବୁ ଚେଇଁ ବସିଥାଆନ୍ତି ।

—ଆସିଲ ଏତେବେଳେ ! ହଉ, ଦୟାକରି ଶୁଣ !

—ଟିକିଏ କୁନକୁ ଶୋଇପକାଏ—ନ ହେଲେ ସେ ଶୁଣିବାକୁ ଦେବ ନାହିଁ ।

—ନା, ସେ ବି ଶୁଣୁ । ସେ ବଡ଼ନ କବି ହେବ ।

କୁନ ଧଡ଼କରି ବିଛଣାରୁ ଉଠିପଡ଼ି କହିଲା, "ହଁ ବୋଉ, ମୁଁ କୋବି ଖାଇବି ।"

ସୁଶୀଳା କୁନକୁ ଚୁମ୍ବନ ପରେ ଚୁମ୍ବନ ଦେଇ ଦେଇ କହିଲା, "ଦୂର୍ ଗଧ, ଏ ଖାଇବା କୋବି ନୁହଁରେ, ଆଉ ଜାତକା କୋବି, ଅଖାଦ୍ୟ କୋବି ।

—"ନା ମୁଁ ଖାଇବି ।"—କୁନ ମୁହଁ ଫୁଲାଇ କହିଲା ।

—ହଉ, ଖାଇବୁ । ବାପା ପଢ଼ୁଛନ୍ତି—ଶୁଣ୍ । ପଢ଼ ଏଥର…

ମୋ ପାଖକୁ ଲାଗି ବସ । ମୁରଲୀ ଆଦରରେ ସୁଶୀଳାକୁ ଆଲିଙ୍ଗନ କରି ଟାଣିବାକୁ ଲାଗିଲେ ।

କୁନ ବୋଉର ପଣତ କାନ ଧରି ଟାଣି କହିଲା—ନାଇଁ ବୋଉ ତୁ ଏଇଠି ଶୁଅ ।

—ହେଲା—ସୁଶୀଲା କୁନକୁ ପୁଣି ଚୁମ୍ବନ ଦେଇ ଗର୍ବର ମହତ୍ତ୍ୱ ଗ୍ରହିଁରହିଲା ।

—ହଉ, ମେଇଠି ବସି ଶୁଣ ! ମୋ ଆଡ଼କୁ ଅନାଅ ।

...ରୂପ ନାହିଁ, ରସ ନାହିଁ ନାହିଁ ସେ ସୁବାସ ।

ପ୍ରଥମ ଧାଡ଼ିଟି ପଢ଼ି ଟିକିଏ ଥମକି ରହିଁ ମୁରଳୀ ଦେଖିଲେ ସୁଶୀଲାର ମଥା ଶେଯରେ ଲଗିଗଲଣି । କୁନ ଚଲବଲ କରି ଗ୍ରହିଁଚ ବାପାଙ୍କ ଆଡ଼େ । ମୁରଳୀ ସୁଶୀଳାକୁ ଟେକି ଉଠାଇବାକୁ ଚେଷ୍ଟାକଲେ । କିନ୍ତୁ ସୁଶୀଲା ପଥର ପାଲଟିଯାଇସାରିଲଣି ଇତି-ମଧ୍ୟରେ ।

ରାଗରେ ପଣିଦରେ ବହି ଫୋପାଡ଼ିଦେଇ ମୁରଳୀ ଶୋଇପଡ଼ିଲେ । ନାନା ପ୍ରକାର ଚିନ୍ତାରେ ଆଖିରେ ତାଙ୍କର ପଲକ ପଡ଼ିଲାନାହିଁ । ସୁଶୀଲା ଆରାମରେ ଶୋଇଛି । କୁନ ଶୋଇପଡ଼ିଲଣି । ଏତେ ନିଦରେ ବି ସୁଶୀଲାର ଗୋଟିଏ ହାତ ଟେକାହୋଇ କୁନକୁ ଆବୋରି ରଖିଛି ।

ରାତି ପ୍ରାୟ ଦୁଇଟା । ହଠାତ୍ କୁନ ବିଛଣାରୁ ଉଠିପଡ଼ିଲା । ସାଙ୍ଗେ ସାଙ୍ଗେ ସୁଶୀଳା ମଧ୍ୟ ଉଠିପଡ଼ିଲା । ମୁରଳୀ ଶୋଇବାର ଅଭିନୟ କରି ଆଖି ମୁଦିଲେ ।

କୁନ କହିଲା, "ବୋଉ ମୁଁ ପଢ଼ୁଛି ଶୁଣୁ..."

ସୁଶୀଲା ଆନନ୍ଦରେ ତେଇଁ ବସି କହିଲା, "ସତେ ! ମୋ ପୁଅ ପଢ଼ିବ, କବି ହେବ..."

କୁନ ପଢ଼ିବାକୁ ଲଗିଲା ଗମ୍ଭୀର ସ୍ୱରରେ...କରୁମ କାରୁମ ମଖନ ଲଟପ ନାଇଁ... ବିଚୁଟ ଦେବେନୁ ନାଇଁ ନାଇଁ ନାଇଁ ।

ସୁଶୀଲା ମୁଗ୍ଧ ଦୃଷ୍ଟିରେ ଅନାଇ ରହିଛି କୁନକୁ । କୁନର ଅଦ୍ଭୁତ କବିତା ଶୁଣି ଆନନ୍ଦର ଆତିଶଯ୍ୟରେ କୁନକୁ ଚୁମ୍ବନ ଦେଇ କହୁଛି...ଅଛୁ ଅଛୁ, ସବୁ ଅଛୁ, କାଲି ସକାଳେ ଦେବି ।

ପୁଅ ଅନେକ କ୍ଷଣ ଧରି ତା'ର ଅଦ୍ଭୁତ କବିତା ପାଠ କରିବାକୁ ଲାଗିଲା । ତା'ର ଆବୃତ୍ତିରେ ମଧ୍ୟ ବିରାମ ନାହିଁ । ସୁଶୀଲାର ସେ କବିତା ଶୁଣିବାରେ ମଧ୍ୟ ଆଗ୍ରହର ଊଣା ନାହିଁ ।

ମୁରଳୀ ଦେଖି ଦେଖି ଦୀର୍ଘ ନିଃଶ୍ୱାସ ପକାଇ ଭାବିଲେ, ନାରୀ ପ୍ରେମିକା ନୁହେଁ, ଜନନୀ; ମୁଁ କବି ନୁହେଁ—କୁନ କବି ।

□□□

# ବୁଦ୍‌ବୁଦ

କୌଣସି ମସୃଣ ପଦାର୍ଥ ଉପରେ ସାମାନ୍ୟ ଟିକିଏ ବାଲିକଣା ପଡ଼ିଥିଲେ ଯେପରି ହାତକୁ ବାଧେ, ସେହିପରି ମୋର ବଡ଼ଭଉଣୀ ତାର ସୁଖ ଓ ସଫଳତାପୂର୍ଣ୍ଣ ଜୀବନ ଉପରେ ତାର ସ୍ମୃତିକୁ ଯେତେବେଳେ ବୁଲାଇ ଆଣେ, ସେତେବେଳେ ସେ କ୍ଷୁଦ୍ର ଘଟଣାଟି ଆଜି ପର୍ଯ୍ୟନ୍ତ, ଏ ବୃଦ୍ଧ ବୟସରେ ମଧ୍ୟ, ବ୍ୟଥା ଦିଏ । ବ୍ୟଥା! ମୁଁ ମଧ୍ୟ ପାଏ; କିନ୍ତୁ ତା ସହିତ ହସ ମଧ୍ୟ ମାଡ଼େ ।

ସେ ଘଟଣାଟି କହିବା ପୂର୍ବରୁ ଆମ ବଂଶର କିଞ୍ଚିତ ପରିଚୟ ଦେବା ଆବଶ୍ୟକ । ବଂଶ ପରିଚୟ ପଢ଼ି ମନେକରିବେ ନାହିଁ ଏହା ଅବାନ୍ତର ଆତ୍ମଶ୍ଳାଘା । ଘଟନାଟି ସହିତ ଏହାର ଉଲ୍ଲେଖର ପ୍ରୟୋଜନୀୟତା ମୁଁ ଏଇଥିପାଇଁ ମନେକରେ ଯେ, ଏପରି ପରିସ୍ଥିତିରେ ପଡ଼ି ଅନେକେ ନିଜକୁ ଘୋର ଅପମାନିତ ମନେକରି ହଠାତ୍ ବିଚଳିତ ହୋଇ କିଛି ଗୋଟାଏ କରି ବସିବାର ମୁଁ ଦେଖିଛି ଏବଂ ଅନେକ ଶୁଣିଛି ମଧ୍ୟ; କିନ୍ତୁ ଆମ ବଂଶର ପରମ୍ପରା ଏପରି ଯେ, ଏଥିରେ ମୁଁ ଓ ଭଉଣୀ କିଛି କରିବସିବା ତ ଦୂରେ ଥାଉ, ବିଚଳିତ ମଧ୍ୟ ହୋଇ ନ ଥିଲୁ । ମନେକରନ୍ତୁ ରାତିରେ ଆପଣ ସୁଖରେ ନିଦ୍ରା ଯାଉଛନ୍ତି । ହଠାତ୍ ଗୋଟାଏ ଶବ୍ଦ ଶୁଣି ଜାଗି ବସି ଦେଖିଲେ ଯେ ଘରେ ଚୋର । ସେତେବେଳେ ଆପଣ କଅଣ ଚୋରକୁ ଡାକି ଧୀର ଭାବରେ ତାର ମନସ୍ତତ୍ତ୍ୱ ବିଶ୍ଳେଷଣ କରି ତାକୁ ବୁଝାଇ ବସିବେ ଯେ ତାର ଚୌର ପ୍ରବୃତ୍ତିର କାରଣ କୌଣସି ଯୌନବିକୃତି ଏବଂ ତାହା ଚୋରିକଲେ ଯିବ ନାହିଁ, ଯିବ ଅନ୍ୟ ଉପାୟରେ ? କିମ୍ବା ଅର୍ଥନୀତି ବିଶ୍ଳେଷଣ କରି ତାକୁ ବୁଝାଇ ବସିବେ ଯେ, ଚୋରି କେବଳ ଜଣକର ନିତାନ୍ତ ସାମୟିକ ଭାବରେ ଅଭାବ ଦୂର କଲେହେଁ, ତାହା ସବୁ ସମୟ ପାଇଁ ଦେଶର ଅଭାବ ଦୂର କରେନାହିଁ । କରିବେ କି ? ତାକୁ ଗୀତା ବୁଝାଇ କହିପାରିବେ କି ଚୋରି ଆତ୍ମାର କି ଅନିଷ୍ଟ କରେ ? ଏହା ସ୍ୱାଭାବିକ ନୁହେଁ । ଅଧିକାଂଶ ଯାହା କରିବେ ତାହା, ଭୟରେ ଗୋଟାଏ ବିକଟ ଚିତ୍କାର କରିଉଠି ପୁଲିସ୍‌କୁ ଡାକପକାଇବେ ଓ ପାଟି କରି ପାହିଯାକ ଉଠାଇବେ ଏବଂ ଏହା ମଧ୍ୟରେ ଚୋର ଓ ତା ସହିତ ଆପଣଙ୍କର ଅନେକ ମୂଲ୍ୟବାନ୍ ପଦାର୍ଥ ଯାଇ ନିରାପଦ ଜାଗାରେ ପହଞ୍ଚିବା ଉପରେ । କିନ୍ତୁ ଆମ ବଂଶର ଶିକ୍ଷା ଏବଂ ପରମ୍ପରା ଅନ୍ୟରୂପ । ଏ ଘଟଣାଟି ହୃଦୟଙ୍ଗମ କରିବାପାଇଁ ଏ ଅବତାରଣାଟି ଆବଶ୍ୟକ ।

ଖୋରଧାର ଚୌଧୁରୀ ବଂଶକୁ ଅନେକେ ଜାଣନ୍ତି ନାହିଁ । ତାର କାରଣ ନୁହେଁ ଯେ ଏ ବଂଶରେ ଏପରି କୌଣସି କର୍ମ ନାହିଁ ଯେଉଁଥିପାଇଁ ସେ ଖ୍ୟାତ ରହିବ । ନ ଜାଣିବାର କାରଣ, ଏ ବଂଶ ନୀରବକର୍ମୀ । ପାଇକ ବିଦ୍ରୋହର ବହୁ ପୂର୍ବରୁ ଦେଶର ସ୍ୱାଧୀନତା ପାଇଁ ଏ ପରିବାର କେବଳ ଅର୍ଥ ନୁହେଁ, ପ୍ରାଣ ମଧ୍ୟ ବିସର୍ଜନ କରିଆସିଛି । ଏହା ମୁଁ ବର୍ତ୍ତମାନ

କହୁଚି ଏବଂ ତାହା ଗଳ୍ପ ଆକାରରେ ପ୍ରକାଶ ପାଉଚି ବୋଲି ଆପଣ ଯଦି ଅବିଶ୍ୱାସ କରନ୍ତି, ତେବେ ଦୟାକରି ମୋର କଟକ ମୁଣ୍ଡାହାଟ ବସାକୁ ଆସିଲେ, ମୁଁ ବହୁ ପୁରାତନ ଐତିହାସିକ ଦଲିଲ ଦେଖାଇ ଆପଣଙ୍କର ବିଶ୍ୱାସ ଜନ୍ମାଇବାରେ ସଫଳ ନିଶ୍ଚୟ ହେବି। ତଥାପି ଏ ପରିବାର ଯେ ଅଖ୍ୟାତ, ତାର କାରଣ ହେଉଚି ନିଜକୁ କୌଣସି ବିଷୟରେ ପ୍ରଚାର କରିବା ଆମ ବଂଶର ସ୍ୱଭାବବିରୁଦ୍ଧ।

ଭାବୁଚନ୍ତି, ତାହେଲେ ମୁଁ କାହିଁକି ବର୍ତ୍ତମାନ···? ତାର କାରଣ ହେଉଚି, ଏ ଘଟନାଟି ପ୍ରକାଶ କରିବାର ଲୋଭ ମୁଁ ସମ୍ବରଣ କରିପାରିଲିନାହିଁ।

ଆମେ ବଂଶାନୁକ୍ରମେ ବଡ଼ ଜମିଦାର; କିନ୍ତୁ ଜମିଦାରୀ ଉଚ୍ଛେଦପାଇଁ ଅନେକ ଜମିଦାର ବିରୋଧ କରିଥିଲେ ହେଁ ଆମେ ସ୍ୱାଗତ କରିଥିଲୁ। ଜମିଦାର ବୋଲି କେବେହେଁ ଆମର ଗର୍ବ ତ ଦୂରେ ଥାଉ ଆଳସ୍ୟ ବା ଋଚ୍ଛୃଙ୍ଖଳ ବ୍ୟକ୍ତିତ୍ୱର ଆଦୌ ନ ଥିଲା। ମୋ ମନେହୁଏ ଗୀତା ଯେ କହିଚି କର୍ମହିଁ କର୍ମର ଗ୍ରନ୍ଥିକୁ ଛେଦନ କରିପାରେ ତାହା ସମ୍ପୂର୍ଣ୍ଣ ସତ୍ୟ। ଯେ ନିରଳସ କର୍ମ କରି ଚାଲିଥାଏ, ସେ କର୍ମ ଫଳରେ ଆସକ୍ତ ହୁଏନାହିଁ। ନିଜେ ସୁଖରେ ରହିବା ପାଇଁ ଯିଏ ଲାଳାୟିତ, ଯିଏ ଥୋଡ଼ାଏ କର୍ମକରି ପୁଞ୍ଜି ବୃଦ୍ଧି କରି ଅଳସୁଆ ହୋଇଯାଏ। ସେ ହିଁ କେବଳ କର୍ମଫଳରେ ଆସକ୍ତ ହୁଏ ଏବଂ ତେଣୁ ନାନା ଅନ୍ୟାୟ ବ୍ୟକ୍ତିତ୍ୱର ନିଜେ କଲେହେଁ ପରକୁ ନୀତିବାକ୍ୟ ଶୁଣାଉଥାଏ।

ଆମ ବଂଶର ପ୍ରଥା ହେଉଚି, ସମସ୍ତେ ସମସ୍ତଙ୍କୁ ବାବୁ ଡାକନ୍ତି। ଯଥା ମୋ ନା' ବୁଲୁବାବୁ। ମୁଁ ବଡ଼ଭଉଣୀକୁ ଡାକେ ସୁମିବାବୁ—ତା ନା' ସୁମିତ୍ରା ଚୌଧୁରୀ। ବାପାଙ୍କୁ ଡାକେ ମୁଣ୍ଟୁବାବୁ—ବାପାଙ୍କ ନା' ବୀରପ୍ରତାପ ଚୌଧୁରୀ। ବାପା ମଧ୍ୟ ସେହିପରି ଡାକନ୍ତି। ଆମ ଘରେ ଦଶବର୍ଷରୁ ସମସ୍ତେ ସ୍ୱାଧୀନ। ମୁଣ୍ଟୁ ବାବୁଙ୍କର ମତ ଯେ, ସ୍ୱାଧୀନ କେବଳ ସେଇମାନେ ହିଁ ହେବା ଉଚିତ, ଯେଉଁମାନେ କାୟମନୋବାକ୍ୟରେ ସଂଯମୀ, ଅନ୍ତତଃ କାୟ ଓ ବାକ୍ୟରେ, କାରଣ ବାହ୍ୟିକ ସଂଯମ ବିନା ସ୍ୱାଧୀନତା କେବଳ ଉଚ୍ଛୃଙ୍ଖଳତା ଓ ବ୍ୟଭିଚାରରେ ପରିଣତ ହୁଏ। ପିଲାବେଳୁ ଆମର ଶିକ୍ଷା ଏପରି ଯେ, ପରର ସାମାନ୍ୟ ଟିକିଏ ଅସୁବିଧା ବା ଦୁଃଖର କାରଣ ଆମେ ହେବାକୁ ଘୃଣାକରୁ। ମୁଣ୍ଟୁବାବୁ ଆଭିଜାତ୍ୟର ଏହି ମୌଳିକ ଦିଗପ୍ରତି ବିଶେଷ ଦୃଷ୍ଟି ଦେଇଛନ୍ତି। ତେଣୁ ଆମେ ଅଳ୍ପ ବୟସରୁ ସ୍ୱାଧୀନ। "ପ୍ରାପ୍ତେତୁ ଷୋଡ଼ଶେ ବର୍ଷେ"···ଆମ ଘରେ ଖୁବ୍ ଚଳଣି। ଗୋଟାଏ ସାମାନ୍ୟ ଘଟଣା କହିଲେ ଆପଣ ବୁଝିପାରିବେ ଆମ ଘରେ ସ୍ୱାଧୀନତା ଏବଂ ପରସ୍ପର ବନ୍ଧୁଭାବ କିପରି ଚଳେ। ଅନେକେ ଏଟା ନାପସନ୍ଦ କରିପାରନ୍ତି; କିନ୍ତୁ ଏହାହିଁ ଆମ ବଂଶର ଚଳଣି। ଦିନେ କେତେକ ଦୂର ଗାଁ ପ୍ରଜା ପ୍ରାୟ ଦିନ ଦୁଇଟାବେଳେ ଆସିଥିଲେ ବାପାଙ୍କ ପାଖରେ ଗୁହାରି କରିବାକୁ। ସେମାନେ କାନ୍ଦି କାନ୍ଦି କହିଲେ, ହୁଜୁର, ଆପଣଙ୍କର କଅଣ ନାହିଁକି ? ହୁଜୁରଙ୍କର କଅଣ ଆମ ଘରୁ ଦି'ପଇସା ବା ଦି'ଛେଳି ନେଲେ ପେଟ ପୂରିବ କି ? ହୁଜୁରଙ୍କର ପ୍ରଜାମାନେ ପୁଅ ନୁହଁନ୍ତି କି ? ପୁଅ ଖାଇଗଲେ କଅଣ ହେଲା କି ? ଇତ୍ୟାଦି।

ଟିକଏ କଥାରେ ବାପାଙ୍କ ଆଖିରୁ ପାଣି ଆସେ । ଏହାର ସୁବିଧା ନେଇ ଅନେକେ ଆଜ୍ଞା ଧନୀ, ଆମେ ଆଜ୍ଞା ଦରିଦ୍ର; କିନ୍ତୁ ତା ବୋଲି ଆମ ମନରେ କାହାରି ହେଲେ ଟିକଏ କଷ୍ଟ ନାହିଁ କି ବାପାଙ୍କୁ କେହି ଧନେ ହେଲେ କିଛି କହିନ୍ତି । ସମ୍ପତ୍ତି ତାଙ୍କର, ସେ ଯେପରି ଇଚ୍ଛା ସେପରି ତାର ବ୍ୟବହାର କରିବେ—ଆମେ କାହିଁକି ତାଙ୍କର ମୁଖାପେକ୍ଷୀ ହୋଇ ରହିବୁ ? ଯାହାହେଉ, ତଥାପି ନିଜେ ବଞ୍ଚିବେ ବା କିପରି—ଯଦି ସମସ୍ତଙ୍କୁ ଏମିତି ଖଜଣା ଛାଡ଼ କରିଦିଆଯାଏ ? ବାପା ନିଜର ଜାଗ୍ରତ ଦସ୍ୟୁଭାବରେ ନିଜେ ବିରକ୍ତ ହୋଇ କହିଲେ, ମୁଁ ଆଉ ତୁମକୁ ବୁଝାଇ ପାରିବିନାହିଁ, କହିଲେ ବି ତୁମେ ସବୁ ବୁଝିବ ନାହିଁ । କେତେ କହିବି ? ତାପରେ ଅତି ବିରକ୍ତ ହୋଇ ମୋତେ ଡାକିଲେ—ବୁଲୁବାବୁ, ସେ ବାଉଁଶ ବାଡ଼ିଟା ଆଣିଲ ! ପ୍ରଜାମାନେ ଭୟରେ ଗୋଟାଏ କୋଣକୁ ଆଉଜିଗଲେ ।

ମୁଁ ଆସି କହିଲି—ମୁଣ୍ଟୁବାବୁ, ବାବୁ ମା' (ବୋଉ) ଡାକୁଚନ୍ତି, ଭାତ ବଢ଼ାହେଲାଣି । ବାଉଁଶ କଅଣ ହେବ ?

—ବୁଲୁବାବୁ, ତୁମେ ତର୍କ କରନା, ସେ ବାଉଁଶ ବାଡ଼ିଟା ଆଣ—ଜଲଦି ଆଣ—ଏମାନଙ୍କୁ ବୁଝାଇଦିଏ ଯେ ଖଜଣା ସେମାନଙ୍କୁ ଦେବାକୁହିଁ ହେବ ।

ବିରକ୍ତ ହୋଇ ମୁଁ ବାଉଁଶ ଆଣିଲି । ମଣିଷେ ଉଚର ଗୋଟାଏ ଖୁବ୍ ମୋଟା ପୋଲା ବାଉଁଶ । ରୋଜ ପ୍ରାୟ ଅଧସେର ଖାଣ୍ଟି ସୋରିଷ ତେଲ ଦିଆହୋଇ ମାସେ ହେବ ପାଚି ଲାଲ ହୋଇଚି । ଦେଖିଲେ ଭୟହୁଏ । ବାପା ପ୍ରାୟ ମାସେ ହେବ ପ୍ରଜାମାନଙ୍କୁ ବୁଝାଇବାର ଏ ଅଭିନବ ପନ୍ଥା ଧରିଚନ୍ତି । ବାଉଁଶଟା ଆଣି ବାପାଙ୍କ ହାତକୁ ବଢ଼ାଇଦେଲି । ପ୍ରଜାମାନଙ୍କ ଆଖି ଭୟରେ ବଡ଼ ବଡ଼ ହୋଇଗଲା । ବାପା ସେମାନଙ୍କ ପାଖକୁ ଯାଇ ଛିଡ଼ା ହେଲେ । ଆଖିରୁ ତାଙ୍କର ଦୁଇ ଟୋପା ଲୁହ ଝରିପଡ଼ିଲା । ବାଉଁଶଟି ଦେଖାଇ ସେ କହିଲେ—ବୁଝିଲ, ମୁଁ ଆଉ ବୁଝାଇ କହିପାରିବି ନାହିଁ ତୁମକୁ ବାରମ୍ବାର । ମୋର ଅବସ୍ଥା ଏଇଥିରୁ ବୁଝ ।

ପ୍ରଜାମାନେ ସଭୟେ କହିଲେ— ଆଜ୍ଞା, ଆପଣ ଯଦି ମାରିବେ ତ ମାରନ୍ତୁ···

ବାପା ଆଖି ପୋଛି କହିଲେ—ଛି, ମାରିବି କାହିଁକି ? ତୁମ ଇଚ୍ଛା । ମୁଁ କହୁଥିଲି ଯେ ଯେତେ ବାଉଁଶ ତାର ସେତେ ପୋଲ । ତୁମେ ଯଦି ମୋର ପ୍ରାପ୍ୟ ନ ଦିଅ ତ ଚଳେ କିପରି ? ସୁମିବାବୁ ଆସି ବାପାଙ୍କୁ ଧରି ଧୀରେ ଧୀରେ ଘୁଞ୍ଚିଗଲେ । ପ୍ରଜାମାନେ ହସିଲେ । ତା'ପରେ ଭୂରିଭୋଜନ କରି ବିଦାୟ ନେଲେ ।

କହୁଥିଲି, ଆମେ ଅବାଧ ସ୍ୱାଧୀନତାରେ ବଢ଼ିଚୁ । ବାପା କେବେହେଁ ତାଙ୍କ ମତ ଆମ ଉପରେ ଲଦିବାର ଚେଷ୍ଟା କରିନାହାନ୍ତି । ପରସ୍ପର ମତ ବିଷୟରେ ଅନେକ ଆଲୋଚନା ହୁଏ; କିନ୍ତୁ ଆଲୋଚନାରେ କେହି କାହାରିକୁ ନିଜ ମତ ଅନୁସରଣ କରାଇବାକୁ ଚେଷ୍ଟା କରନ୍ତି ନାହିଁ ।

ବର୍ତ୍ତମାନ ଘଟଣାଟି କୁହେଁ । ସେଦିନ ଥିଲା ବର୍ଷା ଦିନ । ମୋର ଠିକ୍ ମନେଅଛି, ରଥଯାତ୍ରାର ଠିକ୍ ଆଗ ଦିନ । କ୍ରମାଗତ ପ୍ରାୟ ଗୁରଦିନ ବର୍ଷା ହେବା ପରେ ସେଦିନ ସନ୍ଧ୍ୟା ବେଳକୁ ଆକାଶ ପରିଷ୍କାର ହୋଇଗଲା । ମୁଁ ଘାଇକଲ ଧରି ବାହାରିପଡ଼ିଲି ଜଣେ ବନ୍ଧୁ ଘରକୁ । ଅପାକୁ ଡାକି କହିଲେ—ସୁମିବାବୁ, ମୁଁ ଯାଉଚି, ଅଳ୍ପ ସମୟରେ ଫେରିବି । କେହି ଆସିଲେ ବସାଇବ ।

ଅଳ୍ପ ବାଟ ଯାଇଚି ହଠାତ୍ ବର୍ଷା ଆରମ୍ଭହେଲା । ମୁଁ ବିରକ୍ତ ହୋଇ ଫେରି ଆସି ମୋ ବସିବା ଘର ଖଟରେ ଶୋଇପଡ଼ିଲି । କିଛି ସମୟ ପରେ ଦପ୍ କରି ସବୁ ବିଜୁଳି ଆଲୁଅ ଲିଭିଗଲା । ଘରେ ଆଉ କେହି ନାହାନ୍ତି । ବାପା ଯାଇଛନ୍ତି ବାହାରକୁ । ଗୁକର ବାକର ଯାଇଛନ୍ତି ବଜାରକୁ । ମନଟା ହଠାତ୍ ଉଦାସ ହୋଇଗଲା । ଚୁପ୍ କରି ଖଟ ଉପରେ ପଡ଼ିରହିଲି ।

ଅଳ୍ପ ସମୟ ପରେ ବାହାରେ ଶୁଣାଗଲା—କେହେଚ୍ଚ, କେହେଚ୍ଚ ।

ମୁଁ ସେହିପରି ନୀରବରେ ପଡ଼ିରହିଲି । ସୁମିବାବୁ ଉପରୁ ଉତ୍ତର ଦେଲେ—କ୍ଷମା କରିବେ, ଟିକିଏ ବସନ୍ତୁ, ଯାଉଛି ।

ଭଦ୍ରଲୋକ କହିଲେ—ମିସ୍ ଚୌଧୁରୀ, ଟିକିଏ ଶୁଣିବେ କି ଦୟାକରି ?

ସୁମିବାବୁ ମୋ ଘର କବାଟ ଖୋଲି ଦେଇ ଭଦ୍ରଲୋକଙ୍କୁ କହିଲେ—ବସନ୍ତୁ, ଲାଇଟ୍ ଫେଲ୍ କରିଚି, ଗୋଟାଏ ଆଲୁଅ ଜଳାଇ ଆଣେ । ମୁଁ ସେହିପରି ନୀରବରେ ପଡ଼ିଥାଏ ।

ଅନ୍ଧାର ଭିତରେ ଅଣ୍ଡାଳି ଅଣ୍ଡାଳି ମୋ ଘରକୁ ଆସି ଗୋଟିଏ ଚୌକି ଉପରେ ବସି କହିଲେ—ନା, ନା, ଆଲୁଅର ଦରକାର ନାହିଁ । ମୋର ଯାହା ପ୍ରୟୋଜନ ଅଳ୍ପ ସମୟ ପାଇଁ, ତା ପାଇଁ ଅନ୍ଧାରର ହିଁ ପ୍ରୟୋଜନ ।

ସୁମିବାବୁ ନିଶ୍ଚୟ ଟିକିଏ ଅପ୍ରତିଭ ହେଲେ । ତାହା ତାଙ୍କର ଗଳାର ସ୍ୱରରୁ ଜାଣିଲି । ସେ କହିଲେ—କଅଣ ବାପାଙ୍କ ସହିତ—କିଛି···

ଭଦ୍ରଲୋକ ବାଧା ଦେଇ କହିଲେ—ନା, ନା, ଆପଣଙ୍କ ସହିତ ।

ଭୟ ଆମର ସ୍ୱଭାବ ବିରୁଦ୍ଧ ହେଲେହେଁ ସୁମିବାବୁ ଏଥର ଟିକିଏ ଭୟରେ ପଗ୍ଚରିଲେ—ମୋ ସହିତ ଯଦି ତେବେ ଅନ୍ଧାରର···

—ହିଁ, ଅନ୍ଧାର ପ୍ରୟୋଜନ ଅଛି, ଆପଣ ଭୟ କରନ୍ତୁ ନାହିଁ । ମୁଁ ଅଭଦ୍ର ନୁହିଁ, ନାରୀର ସମ୍ମାନ ରଖିଜାଣେ ।

ସୁମିବାବୁ କହିଲେ—ନା, ନା, ଭୟ ମୁଁ କାହାରିକୁ କରେନାହିଁ । ମୁଁ ମଧ୍ୟ ମୋର ସମ୍ମାନ ରଖି ଜାଣେ । କୁହନ୍ତୁ ଏଥର ।

—ଆପଣ ଆଗେ ବସନ୍ତୁ । …ବସିଲେ ମିସ୍ ଚୌଧୁରୀ ?

—ହଁ ।

—ମୋର ନାଁ', ମୋର ନାଁ' ଧରନ୍ତୁ ଧରନ୍ତୁ…କ ।

ମୋର ଏଥର କୌତୂହଳ ଜାତହେଲା । ଯଦିଚ ଏପରି ଲୁଚିକି ଶୁଣିବା ଭଦ୍ରତା ବିରୁଦ୍ଧ ତଥାପି ମୁଁ ନିଜକୁ ଭୁଲିଯାଇ କାନ ଡେରି ପଡ଼ିରହିଲି ।

ସୁମିତାବୁ କହିଲେ—ନା ନା, ସେ କ, ଖ, ଗ ଜ୍ୟାମିତି ବା ବୀଜଗଣିତରେ ସୁବିଧା ହୁଏ; କିନ୍ତୁ କୌଣସି ଅପରିଚିତ ଭଦ୍ରଲୋକ ସହିତ କଥା କହିବା ପୂର୍ବରୁ, ବିଶେଷତଃ ଏପରି ପରିସ୍ଥିତିରେ, ତାର ସବିଶେଷ ପରିଚୟ ପ୍ରଥମେ ପାଇବା ଉଚିତ ନୁହେଁ କି ?

—ଆପଣ ନିଶ୍ଚିନ୍ତ ରୁହନ୍ତୁ । ମୋ କଥା ଶୁଣି ସାରିବା ପରେ ଯଦି ମୋର ପରିଚୟ ଦେବା ଦରକାର ପଡ଼େ, ତେବେ ମୁଁ ନିଶ୍ଚୟ ଦେବି । ତେବେ ବର୍ତ୍ତମାନ ମୋ କଥା ମୁଁ କହେ ?

—ଆଚ୍ଛା, ଯଦି ଆପଣଙ୍କର ଅସୁବିଧା ଥାଏ ତେବେ ପରିଚୟ ଥାଉ, କହନ୍ତୁ କଥାଟା ।

—ମୋ କଥା କହିବା ପୂର୍ବରୁ ମୁଁ ଏତିକି କହିରଖେ ଯେ ଆପଣ ଚୌଧୁରୀ ବଂଶର ଝିଅ ବୋଲି ଏକଥା କହିବାକୁ ମୁଁ ସାହସ କରି ଆସିଛି, ନଚେତ୍ ମୋ ମନ କଥା ମନରେ ମାରି ମୁଁ ରହନ୍ତି ।

—ତା ମାନେ ?

—ତା ମାନେ, ଆପଣଙ୍କ ବଂଶର ଗୁଣ କିଏ ନ ଜାଣନ୍ତି ! ତେଣୁ ମୁଁ ଆଶା କରିଛି ଯେ ଉତ୍‌କ୍ଷିପ୍ତ ନ ହୋଇ ଆପଣ ଧୀରସ୍ଥିର ଭାବରେ ସବୁ ଶୁଣି ତା ପରେ ଯାହା ଯଥୋଚିତ ମନେକରିବେ କରିବେ ।

—କହନ୍ତୁ ! —ସୁମିତାବୁ ଟିକିଏ ଅଧୀର ଭାବରେ ପଚାରିଲେ ।

—କହୁଚି କହୁଚି, ଭଣିତା କରିବାକୁ ମୁଁ ଭଲପାଏ ନାହିଁ । ତେବେ ମୂଳ କଥାଟା କହିବା ପୂର୍ବରୁ କେତେକ କଥା ଆପଣଙ୍କୁ ଜଣାଇ ରଖିବା ନିହାତି ଦରକାର । ମୋର ବୟସ ବର୍ତ୍ତମାନ ତ୍ରିଶରି ପାଖାପାଖି । ଆପଣଙ୍କ ବୟସ ? କ୍ଷମା କରିବେ ଏଇଟା ଜାଣିବା ଦରକାର ପଡ଼ୁଚି ।

—ମୋର ବୟସ କହିବି, ଏଥିରେ କ୍ଷମା କରିବାର କଅଣ ରହିଲା ?

—କୌଣସି ଭଦ୍ରମହିଳାଙ୍କୁ ତାଙ୍କର ବୟସ ପଚାରିବା ଅଭଦ୍ରତା ବୋଲି ଶୁଣିଚି । ତେଣୁ…

—ମୁଁ ତା ମନେକରେନାହିଁ । ମୋର ବୟସ ପଚିଶ ।

—ବାଃ, ବଡ଼ ଚମତ୍କାର । ମୁଁ ବିବାହିତ, ଦୁଇଟି ସନ୍ତାନର ପିତା । ଆପଣ ମୁଁ ଅବିବାହିତା, ଜାଣେ ମୁଁ ।

—ହଁ ମୁଁ ଅବବାହିତା—ବର୍ତ୍ତମାନ ଏବଂ ଭବିଷ୍ୟତ ପାଇଁ ମଧ୍ୟ ।

—ଅହ୍ବା, ମୋର ମନେପଡ଼ୁଚ···ନହ ମାତା, ନହ କନ୍ୟା, ନହ ବଧୂ । ବର୍ତ୍ତମାନ ମୁଁ ମୋର କଥାଟି କୁହେ । ଆଉ ଗୋଟେ କଥା କହିରଖେ । ମୁଁ ବର୍ତ୍ତମାନ କବତାରୁ ପଦେ କହିଲି ସତ, କନ୍ତୁ କବଭାବ ମୋର ନାହିଁ । ଯେଉଁପରି ଭାବରେ କହିଲେ ମୋର ପ୍ରସ୍ତାବଟି ଆପଣଙ୍କର ହୃଦୟଗ୍ରାହ୍ୟ ହେବ, ତାହା ମୁଁ ଅନୁଭବ କଲେ ମଧ୍ୟ ପ୍ରକାଶ କରବାକୁ ଅକ୍ଷମ । ଅତଏବ ମୋର କଥାରେ କେଉଁଠି ଯଦ ରୂଢ଼ତା ପ୍ରକାଶପାଏ, ତେବେ ତାର ଦଣ୍ଡ ସାମୟିକ ଭାବରେ ବନ୍ଦକର କଥା ଶେଷରେ ଦେବେ । ମୁଁ ମୁଣ୍ଡପୋତ ତା ସ୍ୱୀକାର କରନେବ । ମୁଁ ଯେଉଁଦନ ଆପଣଙ୍କୁ ପ୍ରଥମ ଦେଖିଚ, ସେଇଦନ ଆପଣଙ୍କ ପ୍ରେମରେ ପଡ଼ିଚୁ···କ୍ଷମା କରବେ···

ଭାବଲ ଉଠି ଭଦ୍ରଲୋକଙ୍କୁ ବାହାର ଯିବାକୁ ଅନୁରୋଧ କରବ; କନ୍ତୁ ଏହାର ଶେଷ ପରଣତ ଦେଖିବାର କୌତୂହଳ ଦମନ କରପାରଲ ନାହିଁ ।

ଚଟି ଘୋଷାରବାର ଶବ୍ଦ ଶୁଣି ଭଦ୍ରଲୋକ କହିଲେ—ନା, ନା, ଏବ୍ଦକ୍ଷଣି ଚଟି ମାରନ୍ତୁ ନାହିଁ—ମୋ କଥା ଆଗେ ମୁଁ ଶେଷକରେ । ତା'ପରେ ଯଦ ଚାହାନ୍ତି, ସେ ସୁବଧା ମୁଁ ଆପଣଙ୍କୁ ଦେବ । ହଁ, ଯେଉଁଦନ ଆପଣଙ୍କୁ ମୁଁ ପ୍ରଥମ ଦେଖିଲି, ସେଇଦନ ମୁଁ ପ୍ରେମରେ ପଡ଼ିଲି । ଏତେ ଦନ ପ୍ରେମ କଣ ମୁଁ ଜାଣି ନ ଥିଲି, ଥିଲି ଗୋଟାଏ ନଶାରେ । ନଜର ପ୍ରବଳ ଆଶା ଆକାଂକ୍ଷାର ତାଡ଼ନାରେ ଗ୍ରୁଲଥିଲି । କପର ଧନୀ ଓ ମାନୀ ହେବ, ଏହାହିଁ ଥିଲି ମୋର ଉଦ୍ଦେଶ୍ୟ । ପ୍ରେମରେ ପଡ଼ି ବୁଝିଲି ଯେ ଏ ବେଦନା ସବୁଠୁ ଆନନ୍ଦ-ଦାୟକ । ମୋର ଦନ ରାତ ଚନ୍ତାହେଲା କପର ଆପଣଙ୍କୁ ପାଇବ । ଏଇ ଚନ୍ତାରେ ମୁଁ ସବୁ ତ୍ୟାଗକଲି । କ୍ରମେ କ୍ରମେ ଏହା ଅସହ୍ୟ ହେବାରୁ ଆପଣଙ୍କ ପାଖକୁ ଆସିଚ । ପ୍ରେମ ଯେ କେତେ ମଧୁର ମୁଁ ବର୍ତ୍ତମାନ ତାହା ବୁଝିଚ । ସବୁ ମୋତେ ସୁନ୍ଦର, ସବୁ ନୂଆ ଲାଗୁଚ । କନ୍ତୁ ତଥାପି ମୁଁ ସ୍ୱୀକାର କରୁଚ ଏହା ସହିତ କାମଭାବ ଅନେକ ମିଶିଚ । କ୍ଷତି କଅଣ ?

ସୁମିବାବୁ ଅବଚଳିତ ଭାବରେ କହିଲେ—ବୁଝିଲେ 'କ' ବାବୁ—ଆପଣଙ୍କ ନାଁ' ଜାଣିବାକୁ ବର୍ତ୍ତମାନ ମୋର ଆଗ୍ରହ ନାହିଁ—ବୁଝିଲେ, ନଦୀ ଯେତେବେଳେ ବୋହି ଯାଉଥାଏ, ସେତେବେଳେ କେତେ ବୁଦ୍‌ବୁଦ ସୃଷ୍ଟି ହୁଏ; ସୂର୍ଯ୍ୟକରଣ ପ୍ରତଫଳିତ ହୋଇ କେତେ ସୁନ୍ଦର ଦଶେ ! କନ୍ତୁ ଏହି ବୁଦ୍‌ବୁଦ ସୃଷ୍ଟି କରବା କଅଣ ନଦୀର ଉଦ୍ଦେଶ୍ୟ ?

—ନା, କଦାପି ନୁହେଁ; କନ୍ତୁ ଆପଣ ଏହା ମଧ୍ୟ ସ୍ୱୀକାର କରବେ ଯେ କାମ ଯେପର ଗୋଟାଏ ଆଦମ ଆବେଗ, ସାରତତ୍ତ୍ୱ ଜାଣିବା ମଧ୍ୟ ଗୋଟାଏ ସେହିପର ଆବେଗ । ଏ ଦୁଇଟାର ସଂଘର୍ଷରେ ବୋଧହୁଏ ଯେତେ ସୁଗୁଣ ଦୁର୍ଗୁଣ ଜନ୍ମେ । ତେଣୁ ମୁଁ ଏହି ପ୍ରବୃତ୍ତିକୁ ଆଗେ ଚରତାର୍ଥ କର ମାରଦେବାକୁ ଚାହେଁ । ଏଥିରେ ମାତ୍ର ପଦରଟି ବର୍ଷ ଦେଇପାରବ । ଜୀବନର ବାକ ସମସ୍ତ ମୁଁ ସତ୍ୟର ଅନୁସନ୍ଧାନରେ ଦେବ ବୋଲି ସ୍ଥିର

କରିଚ । ମୁଁ ଆପଣଙ୍କୁ ପାଇବାର ଇଚ୍ଛା କୌଣସି ପ୍ରକାରରେ ଦମନ କରିପାରିଲି ନାହିଁ । ତେଣୁ···ମୋତେ କ୍ଷମା କରିବେ ଏବଂ ମୋ ପ୍ରତି କୃପା କରି···

ସୁମିବାବୁ ହସି କହିଲେ—ପ୍ରେମ ନିବେଦନ କରି ଆସିଚନ୍ତି ଆପଣ ? ଆପଣ ଦୁଇଟି ସନ୍ତାନର ପିତା । ଆପଣଙ୍କ ସ୍ତ୍ରୀ ନିଶ୍ଚୟ ଆପଣଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖି ସୁଖରେ ସଂସାରର ସବୁ ଜଞ୍ଜାଳ ବରଣ କରିନେଇ ଆନନ୍ଦରେ ଅଛନ୍ତି । ଟିକିଏ ବାଧିଲିନାହିଁ ଆସିବାକୁ ଆପଣଙ୍କୁ ?

—ବାଧିଚ ମିସ୍ ଚୌଧୁରୀ । ସେଇଠି ମୁଁ କିଛି ଠିକ୍ କରିପାରିନାହିଁ । ସ୍ତ୍ରୀ ପାଖରୁ ମୋର ଅନୁମତି ନେବା ଉଚିତ ଥିଲା; କିନ୍ତୁ ପାରିଲିନାହିଁ । ମୋର ମନେହୁଏ ପ୍ରତ୍ୟେକ ପୁରୁଷର ଦୁଇଟି ନାରୀ ଦରକାର—ଜଣେ ସ୍ତ୍ରୀ ଆଉ ଜଣେ ପ୍ରେମିକା । ପ୍ରଜନନ ଓ ସନ୍ତାନ ପାଳନ ପ୍ରବୃତ୍ତି ପାଇଁ ସ୍ତ୍ରୀ ଏବଂ ଅନ୍ୟ ପ୍ରବୃତ୍ତି ପାଇଁ ପ୍ରେମିକା ।

ଆମ ବଂଶର ଧୀରସ୍ୱଭାବ ସୁମିବାବୁ ସବୁ ପାଇଚନ୍ତି । ସେ ସେହିପରି ଧୀର ସ୍ଥିରଭାବରେ ଟିକିଏ ହସି କହିଲେ—ଆପଣଙ୍କ ଯୁକ୍ତି ଦୋଷମୁକ୍ତ । ପ୍ରଥମତଃ ଆପଣଙ୍କ ମତରେ ତେବେ ପୃଥିବୀରେ ସବୁବେଳେ ନାରୀର ସଂଖ୍ୟା ପୁରୁଷର ଦୁଇଗୁଣ ରହିବ । ଦ୍ୱିତୀୟତଃ, ପ୍ରେମିକାକୁ ବନ୍ଧ୍ୟା କରିଦିଆଯିବ । ତୃତୀୟତଃ ବାଦବିବାଦ, ହଣାକଟା ବନ୍ଦ କରିବା ପାଇଁ ପ୍ରେମିକା-କଣ୍ଟ୍ରୋଲ ଆଇନ ପାସ୍‌ହେବ । ଅଧିକନ୍ତୁ ଅନେକ ଅସୁବିଧା ହେବ । ଆପଣଙ୍କର ପ୍ରସ୍ତାବ କଅଣ ସମ୍ଭବ ? ଆପଣ ନିଜର କାମନାକୁ ଗୋଟିଏ ଆଦର୍ଶ କରିବାକୁ ଯାଇ ତାକୁ ସର୍ବସାଧାରଣ ଇଚ୍ଛା ବୋଲି ପ୍ରକାଶ କରିବାକୁ ଚେଷ୍ଟାକରୁଛନ୍ତି । ଆଜିକାଲିକାର ମନ ସମୀକ୍ଷା ଆପଣଙ୍କୁ ଯୋଗାଉଚି ନୈତିକ ସାହାଯ୍ୟ ।

ଭଦ୍ରଲୋକ ଟିକିଏ ନୀରବ ରହି କହିଲେ—ସ୍ୱୀକାର କରୁଚି ମୋର ପ୍ରସ୍ତାବ ମୂଳରେ ଅଛି ମୋର ଲାଳସା ଏବଂ ମୋର ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ଅସମ୍ଭବ । ତଥାପି ଏ ଅଦମ୍ୟ ଇଚ୍ଛା ମୁଁ ରୋଧ କରିପାରୁନାହିଁ । ତେବେ ଏହାର ସମାଧାନ କଅଣ ? ଏହାର ସମାଧାନ ମୋର ମନେହୁଏ ଅବାଧ ଯୌନ ସ୍ୱାଧୀନତା । ତା ନହେଲେ ତ ମଣିଷ ଏ ଇଚ୍ଛାକୁ ଦମନ କରି ନ ପାରି ଚିର ଜୀବନ ଏଇଥିରେ ମାତି ରହିବ । ତେଣୁ ମୁଁ ଅନୁରୋଧ କରୁଚି ମୋର ମୁକ୍ତି ପାଇଁ ଅନ୍ତତଃ ଆପଣ···

ସୁମିବାବୁ ପୂର୍ବପରି ଧୀର ଭାବରେ କହିଲେ—ତେବେ କଅଣ ଆପଣ ଚାହାନ୍ତି ଯେ ଯେଉଁ ପନ୍ଦର ବର୍ଷ ପାଇଁ ଆପଣ ମୋତେ ପ୍ରେମ କରିବାକୁ କହିଲେ, ସେ ପନ୍ଦର ବର୍ଷ ମୁଁ ଅବିବାହିତା ରହି ଆପଣଙ୍କ ସହିତ ଗୁପ୍ତ ସମ୍ପର୍କ ରଖିଥିବି ?

—ଆପଣ ଯାହା କହିଲେ ସେ କଥା ମଧ୍ୟ ମୁ ଭାବିଚି । ଏହା ମଧ୍ୟ ଭାବିଚି ଯେ ଆପଣ ଯେତେବେଳେ ଯୁବତୀ, ସେତେବେଳେ ମୋ ପରି ପ୍ରେମିକ ପାଇଁ ଜାଗର ଜାଳି ବସିବେ ନାହିଁ ବା ବସିନାହାନ୍ତି । ନିଶ୍ଚୟ କାହାରିକୁ ଭଲପାଉଥିବେ ବା ପରେ ପାଇବେ ।

—ନଷ୍ଟସ୍ପ କାହିଁକି ? ନ କଲେ ଭାରତୀୟ ପେନାଲ୍ କୋଡ଼ରେ କୌଣସି ଦଣ୍ଡ ବିଧି ଅଛି ?

—ନା, ତା ନାହିଁ । ମୌଳିକ ପ୍ରବୃତ୍ତିଗୁଡ଼ିକ ଏତେ ଦୁର୍ବାର ଯେ ସେମାନେ ବ୍ୟବସ୍ଥାସଭାର ଆଇନକୁ ଅପେକ୍ଷା କରନ୍ତି ନାହିଁ । ଯଦି କାହାରିକୁ ପ୍ରେମ ଦେଇନାହାନ୍ତି, ଶୀଘ୍ର ଦେବାକୁ ଚେଷ୍ଟାକରନ୍ତୁ । ନ ହେଲେ ଅଶେଷ ମାନସିକ ଯନ୍ତ୍ରଣା ପାଇବେ । ମୁଁ କହୁଥିଲି ମୋତେ—ମୋତେ ତ ଆପଣ ଯଦି ଘୃଣାକରି ମାରି ତଡ଼ିଦିଅନ୍ତି ତେବେ ତ ମୁଁ ବର୍ତ୍ତମାନ ମନେକରୁଛି, ନିସ୍ତାର ପାଆନ୍ତି । ମୁଁ କହୁଥିଲି ଆପଣ ଯଦି ଅନ୍ୟ କାହାରିକୁ ଭଲପାଇସାରିଛନ୍ତି, ତେବେ...ତଥାପି...ତଥାପି...''

ସୁମିବାବୁ ପରିହାସ ଛଳରେ କହିଲେ—ଥାପିରେ କହି ତଥାପିରେ...। ଭଦ୍ରଲୋକ ମଧ୍ୟ ହସି ଗାଇଲେ, ଥିବ କି ଯିବ ଏ ପ୍ରା...ଆ...ଆ...ଣ...ଅ...ଅ । ମୁଁ କହୁଥିଲି, ଯଦି ଆପଣ ମୋତେ ଭଲପାଆନ୍ତି, ଯେପରି ମୁଁ ଆପଣଙ୍କୁ ଭଲପାଉଛି, ତେବେ ଆମର ମିଳନ ଘଟାଇବା ଆମର ଜନ୍ମଗତ ଅଧିକାର ବୋଲି ସ୍ୱୀକାର କରିବେ କି ନା ?

—ହଁ ସ୍ୱୀକାର କରିବି, ଯେମିତି ମୁଁ ସ୍ୱୀକାର କରିବାକୁ ବାଧ୍ୟ ଯେ ଘୁଷୁରିର ଉଡ଼ିବା ଜନ୍ମଗତ ଅଧିକାର । ସେ ଯଦି ଉଡ଼ିବାକୁ ଚାହେଁ, ତାକୁ କାହାରି ବାଧାଦେବାର ଅଧିକାର ନାହିଁ ।

—ତେବେ ମୋର ଅବସ୍ଥାର ଲୋକ ପ୍ରତି ଆପଣଙ୍କର ଉପଦେଶ କଅଣ ?

—ଉପଦେଶ କଅଣ ମୋତେହିଁ ଦେବାକୁ ଉପଯୁକ୍ତ ମନେକଲେ ? ଆପଣ ଜଣେ ବରିଷ୍ଠବୈଜ୍ଞାନିକ, ମୁହଁରେ ବଡ଼ ବଡ଼ କଥା...ପେଟରେ...କ୍ଷମା କରିବେ ।

—ମୁହଁର ବଡ଼ ବଡ଼ କଥାକୁ ଏକଦମ୍ ଖରାପ ଭାବବେ ନାହିଁ, ମିସ୍ ଚୌଧୁରୀ ! ମନର ଉଦ୍ଦାମ ପ୍ରବୃତ୍ତିଗୁଡ଼ିକୁ ସଂଯମରେ ରଖିବାକୁ ଏହା ନିଷ୍ଟସ୍ପ କିଛି ସାହାଯ୍ୟ କରେ ।

—ଏ ସମସ୍ୟାର ସମାଧାନ ଆପଣ କଅଣ ଭାବିଚନ୍ତି ?

—ଏହାର ଏକମାତ୍ର ଉପାୟ ମୁଁ କହୁଚି, ଆପଣଙ୍କ ସହିତ ମୋର...ମୋର... ସମ୍ପର୍କ ।

ସୁମିବାବୁ ନୀରବ ରହି ପୁଣି ଚଟି ଦୋହଲାଇଲେ । ଭଦ୍ରଲୋକ କହିଲେ—ତେବେ ଆପଣ ଶେଷରେ ଚଟି ମାରିବାକୁ ସ୍ଥିରକଲେ । କେଉଁଠି ମାରିବେ—ପିଠିରେ ନା ଗାଲରେ ? ଅନ୍ଧାରରେ ହାତ ଧରି ଦେଖାଇ ନ ଦେଲେ ଆପଣ ଠିକ୍ ଲକ୍ଷ୍ୟ କରିପାରିବେ ନାହିଁ ।

ସୁମିବାବୁ ଗମ୍ଭୀର ଭାବରେ କହିଲେ—ଗାଲରେ ।

—ତେବେ ଦେଖି ନିଅନ୍ତୁ ପ୍ରଥମେ । ଏଇଟି ମୋର ଡାହାଣ ଗାଲ । ହାୟ, ହାୟ, ଯେଉଁଠି ମୁଁ କଅଣ ପାଇବାକୁ ଆଶା କରିଥିଲି, କଅଣ ପାଇବାକୁ ଯାଉଚି ! ଟିକିଏ ଆସ୍ତେ ମାରିବେ ।

ସୁମିବାବୁ ଆସ୍ତେ ମାଗଲେ ।

ଭଦ୍ରଲୋକ କହିଲେ—ଆଚ୍ଛା, ନମସ୍କାର, ଆସୁଚି । ମୋର ପରିଚୟ ଜାଣିବା ଆଉ ଦରକାର ନାହିଁ ନିଶ୍ଚୟ ।

ଭଦ୍ରଲୋକ ଚାଲିଗଲେ । ସୁମିବାବୁ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ମୋ ଖଟିଉପରେ ବସିପଡ଼ିଲେ ।

ହଠାତ୍ ଆଲୁଅ ଜଳିଉଠିଲା । ମୋତେ ଦେଖି ସେ ସେମିତି ଧୀର ଭାବରେ କହିଲେ—ମନରେ ଏତେ କାମନା; କିନ୍ତୁ ବାହାରେ ଏତେ ଧୈର୍ଯ୍ୟ ! ସେ ଯିଏ ହୁଅନ୍ତୁ, ବଡ଼ ଅଦ୍ଭୁତ ଲୋକ ତ !

— ମୁଁ ଭାବୁଚି ଏ ବୁଦ୍‌ବୁଦ୍ ନା ନିର୍ଦ୍ଦମାର ଭୁଡ଼ଭୁଡ଼ି ?—ମୁଁ ପଚାରିଲି ।

—ସାବୁନ୍ ଫେଣର ବର୍ଣ୍ଣିଲ ବୁଦ୍‌ବୁଦ୍ । —ସୁମିବାବୁ କହିଲେ ।

ଆଜି ପର୍ଯ୍ୟନ୍ତ ଆମେ ଜାଣିପାରିନାହୁଁ ସେ କିଏ ।

□□□

# ଶ୍ରୀରାଧା

ମନୋହାରିଣୀ ରାତ୍ରି । ସୁନିର୍ମଳ ସୁନୀଳ ଆକାଶ । ପୂନେଇ ଚନ୍ଦ୍ରର ରୂପେଲି କିରଣ । କଳକଳନାଦିନୀ ସ୍ରୋତସ୍ୱିନୀ ନାଳମାନରେ କୁରଙ୍ଗୀ ନୟନକୁ ଜିଣିଚି । ଦୂରେ, ବହୁଦୂରେ ନୀଳ ଚକ୍ରବାଳ । ଚାରିଆଡ଼ ନୀରବ, ନିଥର । କେବଳ ମଝିରେ ମଝିରେ ମୃଦୁ ମନ୍ଦ ସମୀରଣ ଝଲକାଏ ଝଲକାଏ ବଣମଲ୍ଲିର ସୁବାସ ପରିବେଷଣ କରିଯାଉଚି । ରାତ୍ରି ପ୍ରାୟ ବାରଟା । ମଧୁକର ଏକା ନଈକୂଳରେ ବସିଚନ୍ତି । କେତେଗୁଡ଼ିଏ ବଣମଲ୍ଲି ଏବଂ ଗୋଟିଏ ବଂଶୀ ପାଖରେ ଥୁଆହୋଇଚି ।

ମଧୁକର ଚାରିଆଡ଼କୁ ଥରେ ଚାହିଁଲେ । ନୀଳବର୍ଣ୍ଣର ଏକ ଅପୂର୍ବ ସମାବେଶ । କି ସୁନ୍ଦର ଉଜ୍ଜ୍ୱଳ ନୀଳବର୍ଣ୍ଣ ! ଆଃ, କି ସୁନ୍ଦର ଲାଗୁଛି ଆଖିକୁ, ଆଉ ମନକୁ ବି ! ମଧୁକର ଭାବିବାକୁ ଲାଗିଲେ···

ଏଇ ଲାଗିବାରେ ମୋର କାହିଁକି ତୃପ୍ତି ଆସୁଚି ? ଏ ତୃପ୍ତି ତ ଇନ୍ଦ୍ରିୟଜନିତ । ତେବେ ଇନ୍ଦ୍ରିୟର ଦୁଆର ରୁଦ୍ଧ କରିଦେବାକୁ କାହିଁକି ନିର୍ଦ୍ଦେଶ ? ମୁଁ ଯେ ଛନ୍ଦାକୁ ଭଲପାଏ, ମୁଁ ଯେ ରସଗୋଲା ଖାଇବାକୁ ଭଲପାଏ, ସେଥିପାଇଁ କାହିଁକି ଏତେ ସାବଧାନ ବାଣୀ ? ହେଲା ବା ଏସବୁ ଅନିତ୍ୟ, ଭଙ୍ଗୁର, କ୍ଷୀଣସ୍ଥାୟୀ । ଯେତେବେଳେ ପର୍ଯ୍ୟନ୍ତ ମୁଁ ଏ

ସବୁର ଆନନ୍ଦ ପାଉଚ, କାହିଁକି ସେ ସବୁକୁ ମୁଁ ପରିତ୍ୟାଗ କରିବି ? ପରିତ୍ୟାଗ କରି କଅଣ ପାଇବି ତା ପରିବର୍ତ୍ତିରେ ?

...ଏ ସବୁରୁ ତୁମେ ଆନନ୍ଦ ପାଉନା, ସୁଖ ପାଉଚ ସତ, କିନ୍ତୁ ଏ ସୁଖ ନିର୍ଭର କରୁଚି ଅନ୍ୟ ଉପରେ । ତେଣୁ ତୁମେ ସର୍ବଦା ଶଙ୍କିତ, କାଳେ ସେ ସୁଖ ହରାଇ ବସିବ । ମଧୁକର ନିଜେ ନିଜକୁ ଉତ୍ତରଦେଲେ ।

ପୁଣି ନିଜେ ତାର ପାଲଟା ଉତ୍ତର ଦେଲେ—ବାଃ, ସୁଖ ପାଇବାର ଇଚ୍ଛା ତେବେ କଅଣ ଖରାପ ?

...ନା; କିନ୍ତୁ ସୁଖଠାରୁ ଆନନ୍ଦ ଆହୁରି ଭିନ୍ନ । ସେ ଆନନ୍ଦର ଉତ୍ସ ଥାଏ ନିଜ ଭିତରେ ! ସେ ଆନନ୍ଦର ଉତ୍ସକୁ କେହି ଅବରୋଧ କରିପାରେନା । ସେ ଉତ୍ସ ଚିରନ୍ତନ । ନିଜକୁ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ସେ ଅନ୍ୟକୁ ମଧ୍ୟ ଆନନ୍ଦ ଦିଏ; କିନ୍ତୁ ତୁମର ଏ ସୁଖ ସୃଷ୍ଟି କରେ ଜଟିଳତା, କ୍ରୂରତା, ସନ୍ଦେହ, ହିଂସା ।

—ଯାହା କହୁଚ ସତ ହୋଇପାରେ; କିନ୍ତୁ ଧର, ମୋର ଟଙ୍କାଟିଏ ବଳକା ଅଛି । ସେଥିରେ ମୁଁ ରସଗୋଲା କିଣି ରସଗୋଲା ଖାଇବାର ସୁଖ ପାଇବାକୁ ଚାହେଁ । ସେଥିରେ ତୁମେ କାହିଁକି ଆପତ୍ତି ଉଠାଇବ ?

...ନା, ଆପତ୍ତି କରିବାର କିଛି ନ ଥା'ନ୍ତା, ଯଦି ସେ ସୁଖ ସେଇଥିରେ ଶେଷ ହୋଇ ଯାଆନ୍ତା । ଯଦି ନିଜକୁ ଦୁଇଭାଗ କରି ସେ ସୁଖ ପାଇ ପାରନ୍ତ, ଗୋଟିଏ ଭାଗ ତୁମର ହୁଅନ୍ତା, ଦାର୍ଶନିକ ଦ୍ରଷ୍ଟା—ଯାହାକୁ କୌଣସି ସୁଖ ବା ଦୁଃଖ ସ୍ପର୍ଶ କରେନାହିଁ । ଆଉ ଗୋଟିଏ ଭାଗ ହୁଅନ୍ତା ଯେ ଇନ୍ଦ୍ରିୟ ସୁଖ ପାଇବାକୁ ଚାହେଁ । ରସଗୋଲା ଦୋକାନ ଦୁଆର ମୁହଁରେ ତୁମେ ନିଜକୁ ସେହିପରି ଦୁଇ ଭାଗ କରିଦେଇ ସୁଖାଭିଳାଷୀ ଭାଗଟିକୁ ଦୋକାନ ଭିତରକୁ ପଠାଇଲ ରସଗୋଲା ଖାଇବାର ସୁଖ ଅନୁଭବ କରିବାକୁ । ଦ୍ରଷ୍ଟା ଭାଗଟି ବାହାରେ ଛିଡ଼ାହୋଇ ଅନ୍ୟ ଭାଗର ସୁଖ ଦେଖି ଆନନ୍ଦ ପାଇବାକୁ ଲାଗିଲା । ରସଗୋଲା ଖାଇବାର ସୁଖ ପାଇବା ପରେ ପୁଣି ତୁମେ ତାକୁ ଦ୍ରଷ୍ଟା ଭାଗ ସହିତ ମିଶାଇଦେଇ ଚାଲିଲ । ସୁଖ ଓ ଆନନ୍ଦ ଦୁଇଟିଯାକ ପାଇଲ । ତାହାହେଲେ ସେ ସୁଖ ଆଉ ଜଟିଳତା ସୃଷ୍ଟି କରିବନାହିଁ । ତା ଯଦି କରିନପାର, ତେବେ ଆଜି ଗୋଟିଏ ରସଗୋଲା ଖାଇଚ, କାଲି ଚାରୋଟି ଖାଇବାକୁ ଚେଷ୍ଟାକରିବ । ଯେତେ ଲିପ୍‌ସା ବଢ଼ି ଚାଲିବ, ସେତେ ଜଟିଳତା, ସନ୍ଦେହ, ଦୁଷ୍ଟବୁଦ୍ଧି ବଢ଼ି ଚାଲିବ । ଆନନ୍ଦ ପରିବର୍ତ୍ତିରେ ତୁମେ ପାଇବ ଯାତନା, କାରଣ ତୁମର ମନ ସର୍ବଦା ରହିବ ଶଙ୍କିତ । ମନର ପରିସର ବଢ଼ିପାରିବ ନାହିଁ ।

ମଧୁକର ଆହୁରି ଥୋଡ଼ାଏ ବଣମଲ୍ଲି ତୋଳି ଆଣି ପାଖରେ ରଖିଲେ ଏବଂ ପୁଣି ଥରେ ଚାରିଆଡ଼େ ଚାହିଁଲେ । ନିକଟରେ ଗଛ ଡାଳରେ କୋଇଲି ରାବ ଉଠିଲା—କୁହୁ, କୁହୁ, କୁହୁ...ଉହୁ । ଆଉ ଗୋଟିଏ ଚଢ଼େଇ ହଠାତ୍ ନିଦ୍ରାରୁ ଉଠି ଅବିରତ କହିଚାଲିଲା—ପ୍ରିୟ ହେ, ପ୍ରିୟ ହେ, ପ୍ରିୟ ହେ ।

ମଧୁକର ମନରେ ଏକ ଅପୂର୍ବ ଆବେଗ ଜାତ ହେଲା ।
ଏ ହୃଦୟ ଯେପରି ପୁଷ୍ପ, ଏ ବେଦନା ଯେପରି ତାର ସୁବାସ ।
...କାହା ପାଖରେ ଏ ପୁଷ୍ପ ମୁଁ ଅଜାଡ଼ିବ !!

ମଧୁକର ଚାହିଁଲେ ଆକାଶକୁ ଏବଂ ମନେ ମନେ କହିଲେ—କୋଟି ସୂର୍ଯ୍ୟ ଜଗତଂ, ଜୀର୍ଣ୍ଣଂ କସ୍ତୁରୀ ତିଳକଂ, ପଦ୍ମନାଭଂ ସୁନ୍ଦରମ୍...ଆହା, ମୁଁ ଯଦି ଉପନିଷଦ୍‌ର ଋଷିଭଳି କହିପାରନ୍ତି, "ବେଦାହମ୍ ଏତମ୍ ପୁରୁଷମ୍, ମହାନ୍ତମ୍, ଆଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍ । ତମେବ ବିଦିତ୍ୱାତି ମୃତ୍ୟୁମେତି ନାନ୍ୟପନ୍ଥା ବିଦ୍ୟତେ ଅୟନାୟ ।" ସେଇ ମହାନ୍ ପୁରୁଷଙ୍କୁ ଜାଣିପାରିଲେ ଅମୃତର ସନ୍ଧାନ ମିଳେ ।

...ମୁଁ ଯଦି କହିପାରନ୍ତି ସେଇ ବେଦନାର ସହିତ—"ସର୍ବେ ସୁଖୀନଃ ଭବନ୍ତୁ, ସର୍ବେ ସନ୍ତୁ ନିରାମୟା, ସର୍ବେ ଭଦ୍ରାଣି ପଶ୍ୟନ୍ତୁ..."

...ମୁଁ ଯଦି କହି ପାରନ୍ତି—"ବେଦାହମ୍ ଏତମ୍ ଅଜରଂ ପୁରାଣମ୍ ସର୍ବାତ୍ମାନଂ ସର୍ବଗତଂ ବିଭୁତ୍ୱାତ୍ ।"

ଏକ ଅପୂର୍ବ ଶାନ୍ତିରେ ମଧୁକରର ଆଖି ଛଳ ଛଳ ହୋଇଗଲା । ସେ ମନେ ମନେ କହିଲେ, "ହେ ସୁନ୍ଦର, ତୁମର ମୋହନବଂଶୀ ବଜାଅ, ମୁଁ ଏ ପରାଧୀନତାରୁ ମୁକ୍ତ ହୋଇ ଛୁଟି ଚାଲେ ତୁମର ମିଳନ ପାଇଁ । ମୁଁ ଭୁଲିଯାଏ ଯେ ମୁଁ ଜଣେ ଧନୀର ସନ୍ତାନ, ମୁଁ ଜଣେ ଉଚ୍ଚପଦସ୍ଥ ଚାକିରିଆ । ମୁଁ ଭୁଲିଯାଏ ଯେ ଆମ ଘରେ ଦୁଇଟି ମୋଟର ଗାଡ଼ି ଅଛି, ମୁଁ ଭୁଲିଯାଏ ଯେ ଅପୂର୍ବ ଲାବଣ୍ୟବତୀ ଛନ୍ଦାର ମୁଁ ପ୍ରେମିକ । ମୁଁ ଏ ସବୁ କିଛି ନୁହେଁ । ଏଇ ସ୍ୱାଧୀନତାର ଆନନ୍ଦ ମୋତେ ତୁମେ ଦିଅ ।"

ମଧୁକର ନିଜର ବଂଶୀଟି ଉଠାଇ ବଜାଇବାକୁ ଲାଗିଲେ ବେହାଗ ରାଗିଣୀ । ବଂଶୀର ସ୍ୱରରେ ସେ ଢାଳିଦେଲେ ହୃଦୟର ସମସ୍ତ ଆବେଗ । ସୁରର ମୂର୍ଚ୍ଛନା ମିଳାଇଗଲା ଅନନ୍ତ ନୀଳିମାରେ ।

ମଧୁକରର ସମସ୍ତ ଇନ୍ଦ୍ରିୟ କେନ୍ଦ୍ରୀଭୂତ ହୋଇ ଉପଭୋଗ କରିବାକୁ ଲାଗିଲା ବଂଶୀସ୍ୱନର କରୁଣ ମୂର୍ଚ୍ଛନା । କେତେବେଳ ପର୍ଯ୍ୟନ୍ତ ସେ ବଜାଇଚନ୍ତି ତାଙ୍କୁ ଜଣା ନାହିଁ ।

ହଠାତ୍ ପ୍ରବଳ ଗୋଳମାଳରେ ତାଙ୍କର ସ୍ୱପ୍ନଭଙ୍ଗ ହେଲା,...ବାବୁ ସାପ, ସାପ !!!

ମଧୁକର ବଂଶୀ ବଜାଇ ବସିଛନ୍ତି । ତାଙ୍କ ଗୋଡ଼ ନିକଟରେ ଗୋଟିଏ ନାଗସାପ ଫଣା ଟେକି ନିବିଷ୍ଟ ମନରେ ଶୁଣୁଚି, ତାର ଯେପରି ବାହ୍ୟଜ୍ଞାନ ନାହିଁ । ତାକୁ ମାରିବାକୁ ନିକଟରେ ଏତେ ଲୋକ ଯେ ରୁଣ୍ଡ ହେଲେଣି ତାକୁ ଜଣାନାହିଁ ।

—ବାବୁ, ଆପଣ ଆସ୍ତେ ଗୋଡ଼ଟା ଟେକି ଦିଅନ୍ତୁ । କିଛି ଡରନ୍ତୁ ନାହିଁ । ଏହି ବାଡ଼ିରେ ଗୋଟିଏ ପାହାରକେ ସାବାଡ଼ କରିଦେବି । ଆପଣ ବଇଁଶୀ ବଜାଇବା ବନ୍ଦ କରନ୍ତୁ ନାହିଁ—ଶଳା ପଳେଇବ ।

ମଧୁକର ଲୋକମାନଙ୍କୁ ମାରିବାକୁ ମନା କରିବାପାଇଁ ବଂଶୀ ବଜାଇବା ବନ୍ଦକଲେ । ସାପଟି କିଛିକ୍ଷଣ ଅନାଇଁ ରହି ଫେରିଲା ତାର ଗାତ ଆଡ଼େ ; କିନ୍ତୁ ବେଶି ଦୂର ଯାଇପାରିଲା ନାହିଁ—ଗୋଟିଏ ପାହାରକେ ଲେଟିପଡ଼ିଲା । ତା'ପରେ ହେଲା ଠେଲା ବୃଷ୍ଟି ତା ଉପରେ । କିଛିକ୍ଷଣ ଛଟପଟ ହୋଇ ନିଶ୍ଚଳ ହୋଇଗଲା ସେ । ପାଟିବାଟେ ତାର ରକ୍ତ ବୋହିବାକୁ ଲାଗିଲା ।

ଗଙ୍ଗାର ସନ୍ନିହିତ ଘାତକ କହିଲା—ଜୀବନ ମୂଲେ ସର୍ପ ଆଇ, ପ୍ରାଣୀ ତା ଜାଣି ନ ପାରଇ । ବାବୁ, ଆପଣ ତ ବଜେଇ ଗ୍ଲେଲଚନ୍ଦ୍ର । ଏ ରସିକ ଆମ ବାଉଣ ସାହିରୁ ବାହାରିଲା ଗୀତ ଶୁଣି । କଥନ୍ ରସିକ କ ଏମାନେ ! ସୁନ୍ଦର ଗୀତ, ସୁଗନ୍ଧ ଏଙ୍କର ଭାରି ପସନ୍ଦ ନା । ଯାଆନ୍ତୁ, ଯାଆନ୍ତୁ, ରାତିରେ କେବେ ଏମିତି ବଣରୁଦା ଜାଗାରେ ବଇଁଶୀ ବଜେଇବେ ନାହିଁ ।

ମଧୁକର ଦୀର୍ଘନିଃଶ୍ୱାସ ପକାଇ ଉଠିଲେ ।

□□□

# ପୁଲିସ୍ ଓ ପ୍ରାର୍ଥନା

[O. Henryଙ୍କର The Cop and the Anthemର ଅନୁବାଦ]

ମ୍ୟାଡ଼ିସନ୍ ସ୍କୋୟାର୍‌ର ବେଞ୍ଚ ଉପରେ ସୋପି ଝୁଣ୍ଟି ଭାବରେ ହାଲ୍‌ଚାଲ୍ ହେଲା । ଯଦି ଦେଖିବ ଯେ ରାତିରେ ମରାଳମାଳା କଁକ୍ କଁକ୍ ଡାକଦେଇ ବହୁ ଉଚ୍ଚରେ ଉଡ଼ି ଯାଉଛନ୍ତି, ବା ଯେଉଁ ଭାର୍ଯ୍ୟାମାନଙ୍କର ସୁନ୍ଦର ଗରମ ପୋଷାକ ନାହିଁ, ସେମାନେ ସେମାନଙ୍କର ସ୍ୱାମୀମାନଙ୍କ ପ୍ରତି ସଦୟ ବ୍ୟବହାର କରିବାକୁ ଲାଗିଲେଣି କିମ୍ବା ଯେତେବେଳେ ଦେଖିବ ଯେ ସୋପି ତାହାର ବେଞ୍ଚ ଉପରେ ଅଶାନ୍ତି ଅନୁଭବ କରି ହାଲଚାଲ ହେବାକୁ ଲାଗିଲାଣି, ସେତେବେଳେ ନିଶ୍ଚୟ ଜାଣିବ ଯେ ଶୀତ ଋତୁ ଆସିଯିବାରେ ଆଉ ବିଳମ୍ବ ନାହିଁ ।

ଗୋଟାଏ ଶୁଖିଲା ପତର ସୋପିର କୋଳରେ ପଡ଼ିଲା । ଶୀତବାବୁଙ୍କର ସେ ଆଗମନ ବାର୍ତ୍ତାବହ ଚିଠାଉ । ମ୍ୟାଡ଼ିସନ୍ ସ୍କୋୟାର ଉଦ୍ୟାନରେ ଯେଉଁମାନେ ବରାବର ଶୁଅନ୍ତି, ଶୀତବାବୁ ସେମାନଙ୍କ ପ୍ରତି ସଦା ଦୟା ରଖି ପ୍ରତ୍ୟେକ ବର୍ଷ ଆସିବା ପୂର୍ବରୁ ସେମିତି ସାବଧାନ କରାଇ ଦିଅନ୍ତି । ସବୁ ବାସହୀନମାନଙ୍କର ଦୂତ ହେଉଛି ଉତ୍ତରାପବନ । ଶୀତବାବୁ ରାସ୍ତା ମୋଡ଼ ପାଖରୁ ଉତ୍ତରାପବନ ହାତରେ ସେ ଚିଠାଉ ପଠାଇ ଦିଅନ୍ତି ଏବଂ ତାହା ପାଇ ମ୍ୟାଡ଼ିସନ୍ ସ୍କୋୟାରର ବାସିନ୍ଦାମାନେ ଶୀତ ପାଇଁ ପ୍ରସ୍ତୁତ ହୁଅନ୍ତି ।

ସୋପି ହୃଦୟଙ୍ଗମ କଲା ଯେ ଆସନ୍ନ ଶୀତର ଦାଉରୁ ନିଜକୁ ରକ୍ଷା କରିବା ସକାଶେ ଉପାୟ ଓ ପନ୍ଥା ନିର୍ଦ୍ଧାରଣ ପାଇଁ ନିଜକୁ ନେଇ ଗୋଟିଏ ଜଣିକିଆ କମିଟି ଗଠନ କରିବାର ବେଳ ଆସିଗଲା । ସେଇଥିପାଇଁ ସୋପି ତାହାର ନେଞ୍ଚ ଉପରେ ଅସ୍ଥିରି ଅନୁଭବ କରି ହଲଚଲ ହେଲା ।

ନିଜକୁ ଛାପ ଦେବାର ସେଉଁ ଯୋଜନା ସୋପି କଲା, ତାହା ଖୁବ୍ ଗୋଟାଏ ବଡ଼ ଉଚ୍ଚ ଯୋଜନା କୁହାଯିବ ନାହିଁ । କାରଣ, ସେଥିରେ ଭୂମଧ୍ୟସାଗର ଭ୍ରମଣ ନାହିଁ, କି କୌଣସି ଦକ୍ଷିଣାଞ୍ଚଳରେ ଉଷ୍ଣବାୟୁ ସେବନ ନାହିଁ, କି ଭେସୁଭିୟାନ୍ ଉପସାଗରକୁ ଯିବା ମଧ୍ୟ ନାହିଁ । ତା'ର ଆତ୍ମା ଲୁବ୍ଧ ଥିଲା କେବଳ ଶୀତ ତିନିମାସ ଜେଲ ଭିତରେ ରହିବାକୁ । ତିନୋଟି ମାସ ପାଇଁ ଖାଦ୍ୟ ଓ ଶୀତବସ୍ତ୍ର ଚିନ୍ତାରୁ ମୁକ୍ତ ଏବଂ ଧନୀମାନଙ୍କ ସଂସ୍ରବଠାରୁ ଦୂରତ୍ୱ, ଏହା ହିଁ ତା'ର ମନେହେଲା ସବୁଠାରୁ ପ୍ରିୟ ।

ଆଜିକୁ ବହୁ ବର୍ଷ ଯାବତ୍ ସେ ପ୍ରତି ଶୀତ ଋତୁରେ ଜେଲଖାନାର ସ୍ନେହମୟ କୋଡ଼ରେ ସ୍ଥାନ ପାଇଆସିଛି । ପ୍ରତ୍ୟେକ ଶୀତ ଋତୁରେ ଯେମିତି ନିଉୟର୍କର ଧନିକଶ୍ରେଣୀ ପାମ୍‌ବିଚ୍ ବା ରିଭିୟେରାକୁ ଟିକଟ କାଟନ୍ତି, ସୋପି ସେମିତି ଜେଲଖାନାକୁ ଯିବାର ଯୋଗାଡ଼ କରେ । ବର୍ତ୍ତମାନ ସେଇ ବେଳ ଆସିଗଲାଣି । ଗତ ରାତିରେ ସୋପି କେତେଗୁଡ଼ିଏ ଖବରକାଗଜ ତଳେ ବସ୍ତିଇ ଓ ଘୋଡ଼ିହୋଇ ଉଦ୍ୟାନର ଝରଣା ପାଖରେ ଶୋଇଥିଲା । କିନ୍ତୁ ଖବରକାଗଜଗୁଡ଼ିକ ତାକୁ ଶୀତର ଦାଉରୁ ରକ୍ଷା କରିପାରିଲେ ନାହିଁ । ତେଣୁ ଜେଲଖାନା କଥା ତାକୁ ଆକୃଷ୍ଟ କଲା । ସେ ଦାତବ୍ୟ ଅନୁଷ୍ଠାନଗୁଡ଼ିକ ପାଖରୁ ସାହାଯ୍ୟ ନେବାକୁ ଘୃଣା କରେ । ତା' ମତରେ ଦାତବ୍ୟ ଅନୁଷ୍ଠାନଗୁଡ଼ିକଠାରୁ ଆଇନ୍ ଅଧିକ ମଙ୍ଗଳକାରୀ । ସହରରେ ଅନେକଗୁଡ଼ିଏ ଦାତବ୍ୟ ଅନୁଷ୍ଠାନ ଅଛି ଏବଂ ସେମାନଙ୍କ ଭିତରୁ ଯେ କୌଣସିଟିରୁ ସୋପି ବାସସ୍ଥାନ ଓ ଖାଦ୍ୟ ପାଇ ପାରିଥାଆନ୍ତା; କିନ୍ତୁ ତା ମତରେ ଆତ୍ମମର୍ଯ୍ୟାଦାସମ୍ପନ୍ନ ଲୋକ ପକ୍ଷରେ ଦାନ ଗ୍ରହଣ କରିବା ଉଚିତ ନୁହେଁ । ପ୍ରତ୍ୟେକ ଦାନ ପାଇଁ ପ୍ରତିଦାନରେ ଅର୍ଥ ଦେବାକୁ ପଡୁ ନ ଥିଲେ ମଧ୍ୟ ଆତ୍ମମର୍ଯ୍ୟାଦା ତ୍ୟାଗ କରିବାକୁ ପଡ଼େ । ଯେମିତି ବ୍ରୁଟସ୍ ସିଜରଙ୍କଦ୍ୱାରା ଗଢ଼ାହୋଇ ମଧ୍ୟ ସିଜରଙ୍କୁ ହତ୍ୟା କରିଥିଲେ, ସେମିତି ଦାନ ପରବର୍ତ୍ତିକରେ ଦାତା ଗ୍ରହୀତାର ଆତ୍ମମର୍ଯ୍ୟାଦାକୁ ହତ୍ୟାକରି ତାକୁ କ୍ରୀତଦାସ କରେ । ଯଦିଚ ସରକାରଙ୍କ ଅତିଥି ହେବାକୁ ହେଲେ ଅନେକ ଆଇନ କାନୁନ୍ ଭିତର ଦେଇ ଯିବାକୁ ହେବ, ତଥାପି ସେଥିରେ ଆତ୍ମମର୍ଯ୍ୟାଦାରେ ହସ୍ତକ୍ଷେପ ନ ଥିବାରୁ ତାହା ବରଣୀୟ ।

ଜେଲଖାନା ଯିବା ହିଁ ସବୁଠାରୁ ଭଲ, ଏ ସିଦ୍ଧାନ୍ତ କଲାପରେ ସୋପି ସାଙ୍ଗେ ସାଙ୍ଗେ ତାହା କାର୍ଯ୍ୟକାରୀ କରିବାକୁ ବାହାରିପଡ଼ିଲା । ଜେଲଖାନାକୁ ଯିବା ପାଇଁ ଅନେକ ସହଜ ପନ୍ଥା ଅଛି; କିନ୍ତୁ ସବୁଠାରୁ ଆନନ୍ଦଦାୟକ ପନ୍ଥା ହେଉଛି, ଗୋଟିଏ ହୋଟେଲରେ ଖୁବ୍ ପେଟେ ସୁସ୍ୱାଦୁ ଖାଦ୍ୟ ଖାଇବା ପରେ କହିବ ଯେ ତୁମେ ସମ୍ବଳହୀନ । ତା'ପରେ ବିନା

ଆପତ୍ତିରେ ପୁଲିସ ଆଡ଼କୁ ଠେଲିଦେବ ପସ୍ତୁରି । ଏହାପରେ ସ୍ୱବଶ୍ରାହୀ ମ୍ୟାଜିଷ୍ଟ୍ରେଟ୍ ତାର ଅଭ ଯାର୍ଥା କରିବାର କରିଦେବେ ।

ସୋପି ଉଦ୍ୟାନ ଛାଡ଼ି ଆଗେଇ ଚାଲିଲା । ସହରର ପ୍ରାସାଦସମୂହ ଭିତର ଦେଇ ଯାଇ ଯାଇ ସେ ପହଞ୍ଚିଲା, ଯେଉଁଠି ବ୍ରଡ୍‌ୱେ ଓ ଫିଫ୍‌ଥ୍ ଆଭିନ୍ୟୁ ମିଳିତ ହୋଇଛନ୍ତି । ବ୍ରଡ୍‌ୱେ ବାଟେ ଯାଇ ଯାଇ ସେ ଗୋଟିଏ ଖୁବ୍ ବଡ଼ ଆଲୋକମାଳା-ସଜ୍ଜିତ ହୋଟେଲ୍ ସାମନାରେ ଛିଡ଼ାହେଲା । ପ୍ରତ୍ୟେକ ରାତ୍ରିରେ ଏଇ ହୋଟେଲରେ ଗଦା, ଦ୍ରାକ୍ଷା, ସିଲ୍‌କ୍‌ପୋକ ଓ ଭ୍ରୁଣରୁ ଜାତହୋଇଥିବା ବହୁମୂଲ୍ୟ ପାନୀୟ, ବସ୍ତ୍ର ଓ ପ୍ରାଣୀ-ସକଳ ।

ସୋପିର ନଜ କୋଟ୍‌ର ସବା ତଳ ବୋତାମଠାରୁ ଉପର ଅଂଶ ଉପରେ ବିଶ୍ୱାସ ଥିଲା । ନିଖୁଣ ଭାବରେ ସେ ସ୍ଥିର ହୋଇଥାଏ ଏବଂ ତା'ର କୋଟ୍‌ଟି ମଧ୍ୟ ସୁନ୍ଦର । ଗୋଟିକରେ ଗୁଡ଼େଟି କସମର ନେକଟାଇଟି ବି ଅଛି । ଗତ ପର୍ବରେ ଜଣେ ଦାନଶୀଳା ମହିଳା ତାକୁ ଉପହାର ଦେଇଥିଲେ । ଅତଏବ ଯଦି କାହାର ସନ୍ଦେହ ଉଦ୍ରେକ ନ କରି ସେ ଭିତରକୁ ଯାଇ ଗୋଟିଏ ଟେବୁଲ ପାଖରେ ବସିଯାଇପାରେ, ତେବେ ସଫଳତା ତାହାର ହାତମୁଠା ଭିତରେ । ତାହାର ଶରୀରର ଯେଉଁ ଭାଗ ଟେବୁଲ ଉପରିକୁ ଦିଶିବ ସେଥିରେ କୌଣସି ହୋଟେଲ କର୍ମଚାରୀର ସନ୍ଦେହ ଜାଗ୍ରତ ହେବନାହିଁ । ଗୋଟିଏ ହଂସ-ରୋଷ୍ଟ ଓ ତା' ସାଙ୍ଗକୁ ବୋତଲେ ବହୁମୂଲ୍ୟ ମଦ ଓ ତା'ପରେ ଗୋଟିଏ ଏକଡଲାର ଦାମ୍‌ର ସିଗାର ଯଥେଷ୍ଟ ହେବ । ସେ ସବୁର ଦାମ୍ ଏମିତି କିଛି ବେଶି ହବନାହିଁ ଯେଉଁଥିରେ କି ହୋଟେଲ-ମାଲିକ କ୍ରୋଧରେ କାଣ୍ଡଜ୍ଞାନ ହରାଇ ତାକୁ ହତ୍ୟା କରିବେ; ଅଥଚ ପୂରା ପେଟର ଆନନ୍ଦ ନେଇ ସେ ଯିବ ତାହାର ଇପ୍‌ସିତ ଶୀତନିବାସକୁ ।

କିନ୍ତୁ ସୋପି ହୋଟେଲର ପ୍ରବେଶ ଦ୍ୱାରରେ ପାଦ ଦେବା ମାତ୍ରକେ ପ୍ରଧାନ ଦରଓ୍ୱାନର ଦୃଷ୍ଟି ସୋପିର ଛିଣ୍ଡା ପେଣ୍ଟ୍ ଓ ଛିଣ୍ଡା ଜୋତା ଉପରେ ପଡ଼ିଲା । ବିନା ବାକ୍ୟବ୍ୟୟରେ ଦରଓ୍ୱାନ୍ ସୋପିକୁ ଧକ୍‌କା ମାରି ତଡ଼ିଦେଲା ଏବଂ ହଂସ-ରୋଷ୍ଟକୁ ତା'ର ଅବାଞ୍ଛିତ ଖାଦକଠାରୁ ରକ୍ଷାକଲା ।

ସୋପି ବ୍ରଡ୍‌ୱେ ଛାଡ଼ିଲା । ସେ ବୁଝିପାରିଲା ଯେ ତା'ର ଜେଲଖାନାକୁ ଯିବା ଶୁଦ୍ଧାକାଂକ୍ଷା ପନ୍ଥାରେ ହେବନାହିଁ; ଏବଂ ତେଣୁ ଅନ୍ୟ ପନ୍ଥା ଉଦ୍ଭାବନ କରିବାକୁ ପଡ଼ିବ ।

ସିକ୍‌ସ୍‌ଥ୍ ଆଭିନ୍ୟୁ କୋଣରେ ଗୋଟିଏ ଦୋକାନର କାଚକବାଟ ତା'ର ଦୃଷ୍ଟି ଆକର୍ଷଣ କଲା । ସୋପି ଗୋଟିଏ ପଥର ଉଠାଇ ସେ କାଚ କବାଟକୁ ଫୋପାଡ଼ି ଦେଲା । ଲୋକମାନେ ଦୌଡ଼ି ଆସିଲେ । ସେମାନଙ୍କ ଆଗରେ ଜଣେ ପୁଲିସ୍ ମଧ୍ୟ । ସୋପି ନିଶ୍ଚଳ ଭାବରେ ତା'ର ପକେଟ ଭିତରେ ହାତ ପୁରାଇ ଛିଡ଼ାହୋଇ ରହିଲା । ପୁଲିସ୍ ଦେଖି ମନରେ ତାହାର ଆଶାର ସଞ୍ଚାର ହେବାରୁ ମୁହଁରେ ଆନନ୍ଦ ଫୁଟିଉଠିଲା ।

—"କାହିଁ ଗଲା ସେ ପାଜି ?" ପୁଲିସ୍ ଉତ୍ତେଜିତ ଭାବରେ ପଚାରିଲା ।

ସୋପି ଉତ୍ତର ଦେଲା, "ଆପଣ କଅଣ ଅନ୍ଦାଜ କରିପାରୁନାହାନ୍ତି ଯେ ମୁଁ ସେ କରିଥାଇପାରେ ?" ସୋପିର ଉତ୍ତରରେ ପ୍ରକାଶ ପାଇଲା ବିଦ୍ରୂପ ନୁହଁ, ସୌଭାଗ୍ୟ ସୂଚନାରେ ଆନନ୍ଦ ।

କିନ୍ତୁ ପୁଲିସ୍ ସୋପିକୁ ଦୁର୍ବୃତ୍ତରୂପେ ଗ୍ରହଣ କରିବାକୁ ନାରାଜ ! ଯିଏ ଦୋକାନର କାଚ ଏମିତି ଭାଙ୍ଗେ ସେ ଶାନ୍ତିରକ୍ଷକ ସହିତ ଏପରି ଶାନ୍ତ ଭାବରେ କଥାବାର୍ତ୍ତା କରିପାରେ ! ସେ ଦୌଡ଼ି ପଳାଏ । ଏହି ସମୟରେ ପୁଲିସ୍‌ଟି ଦେଖିଲା ଅଦୂରରେ ଜଣେ ମଟରବସ୍ ଧରିବାକୁ ଦୌଡ଼ୁଛି । ଲଠି ଘୁରାଇ ଘୁରାଇ ପୁଲିସ୍ ଦୌଡ଼ିଲା ସେ ଲୋକ ପଛରେ । ସୋପି ବ୍ୟର୍ଥ ଭାବ ଗ୍ଲାନିରେ ପାଦକୁ ଓଟାରି ଓଟାରି ଆଗେଇ ଚାଲିଲା ।

ରାସ୍ତାର ଅପର ପାଖରେ ସେ ଦେଖିଲା ଆଉ ଗୋଟିଏ ହୋଟେଲ । ଯେଉଁମାନଙ୍କ କ୍ଷୁଧା ଅନେକ ଅଥଚ ପଇସା କମ୍ ସେଇମାନଙ୍କ ପାଇଁ ଏ ହୋଟେଲ । ଏହାର ବାସନପତ୍ର ଯେତିକି ମୋଟ, ତରକାରି ଝୋଳ ସେତିକି ପାତଳ । ଏହା ଭିତରକୁ ସୋପି ତାହାର ଅବସ୍ଥାର ପ୍ରମାଣ ଦେଉଥିବା ଚିରଣ୍ଡା ପେଣ୍ଟ୍ ଓ ଯୋତା ନେଇ ଯେତେବେଳେ ପ୍ରବେଶକଲା କେହି ବାଧା ଦେଲେ ନାହିଁ । ଗୋଟିଏ ଟେବୁଲ ପାଖରେ ବସି ଇସ୍ପାଟ୍, ସିଆଡ୍ ପ୍ରଭୃତି ଖାଇବା ପରେ ହୋଟେଲ କର୍ମଚାରୀକୁ ଜଣାଇଲା ବନ୍ଧୁଧନ ହେବ ଗୋଟିଏ ପାହୁଲା ସହିତ ବି ତା'ର ପରିଚୟ ହୋଇନାହିଁ । ତା'ପରେ ସେ ଅନୁରୋଧ କରି କହିଲା, "ବର୍ତ୍ତମାନ ଦୟାକରି ପୁଲିସ୍ ଡାକ, ଭଦ୍ରଲୋକଙ୍କୁ ଅପେକ୍ଷାରେ ରଖିବା ଉଚିତ ନୁହେଁ ।"

"ହ୍ୟାପ୍, ଆମେ ପୁଲିସ୍ ଡାକୁନା", କର୍ମଚାରୀ କହିଲା ଓ ତା'ର ସାଙ୍ଗ କର୍ମଚାରୀକୁ ଡାକିଲା, "ଆବେ କନ୍ , ଇସ୍ତାଡ୍ରେ ଆ ।"

କିଛି କ୍ଷଣ ପରେ ସେ ଦୁଇଜଣ କର୍ମଚାରୀ ସୋପିକୁ ରାସ୍ତାରେ ଶୁଆଇଦେଇ ଆସିଲେ । ସୋପି କିଛି କ୍ଷଣ ପଡ଼ିରହି ଆଲୋ ଅଲୋ ଉଠିଲା । ଆଣ୍ଠୁ ଗଣ୍ଠି ତା'ର ସବୁସ ହୋଇ-ଯାଇଛି ମାଡ଼ରେ । ପେଣ୍ଟ୍ କୋଟ୍‌ରୁ ଧୂଳି ଝାଡ଼ି ସେ ଛିଡ଼ାହେଲା । ଜେଲ ଯିବା ତା ପକ୍ଷରେ ବର୍ତ୍ତମାନ ସ୍ୱପ୍ନ ଭଳି ମନେ ହେଲା । ଗୋଟିଏ ପୁଲିସ୍ ତାକୁ ଚାହିଁ ମୁରୁକି ହସି ଚାଲିଗଲା ।

ସୋପି ବ୍ୟର୍ଥମନୋରଥ ହୋଇ କିଛି କ୍ଷଣ ଚାଲିଲାପରେ ପୁଣି ଥରେ ପୁଲିସ୍‌ଦ୍ୱାରା ଧରାହେବାର ଚେଷ୍ଟା କରିବାପାଇଁ ତା'ର ପ୍ରେରଣା ଫେରିଆସିଲା । ନିକଟରେ ମଧ୍ୟ ଯାହା ଦେଖିଲା ତାହା ଅପୂର୍ବ ସୁଯୋଗ ବୋଲି ମନେହେଲା । ଗୋଟିଏ ସୁନ୍ଦରୀ ଯୁବତୀ ଗୋଟିଏ ଦୋକାନର କାଚ ଆଲମାରୀ ପାଖରେ ଛିଡ଼ାହୋଇ ତା ଭିତରେ ସଜାହୋଇ ରଖା ହୋଇଥିବା ଦାଢ଼ି କମେଇବା ସରଞ୍ଜାମ ଓ ଦୁଆତଦାନୀ ସବୁ ନିରୀକ୍ଷଣ କରି ଦେଖୁଥିଲା । ନିକଟରେ ମଧ୍ୟ ଗୋଟିଏ ଖ୍ୟାପଣଦର୍ଶନ ପୁଲିସ୍ ।

ସୋପି ସ୍ଥିର କରିନେଲା ଯେ ସେ ଯଦି ଯୁବତୀଟି ସହିତ ବଜାଟଗିରି କରେ, ତେବେ ନିଶ୍ଚୟ ତା'ର ଉଦ୍ଦେଶ୍ୟ ସଫଳ ହେବ । ଗୋଟିଏ ପୁଲିସ୍ ସାମନାରେ ଏପରି ଗୋଟିଏ

ସ୍ପୃଶ୍ୟ ବଜାଇବା ଯୁବତୀ ସହିତ ବଜାରଗିରି କରି ଯଦି ସେ ତା'ର ଇପ୍‌ସିତ ଶୀତନିବାସକୁ ଯାଇନପାରେ, ତେବେ ଆଉ କେଉଁ ଉପାୟରେ ତା' ସିଦ୍ଧହେବ ?

ସୋପି ତା'ର ନେକ୍‌ଟାଇ ସଜାଡ଼ି ଦେଇ, ଟୋପିକୁ ବଜାରଙ୍କ ଭଳି ଟେଢ଼ା କରି ପିନ୍ଧି ଆଗେଇଗଲା ଯୁବତୀ ଆଡ଼େ । ନିକଟକୁ ଯାଇ ସେ ଆଖିଠାରିଲା ଯୁବତୀଟିକୁ ଓ ଖଣ୍ଡି କାଶ ଦେଲା । କଣେଇ ଚାହିଁ ଦେଖିଲା ଯେ ପୁଲିସର ଦୃଷ୍ଟି ସେ ଆକର୍ଷଣ କରିପାରିଛି । ଯୁବତୀଟି କିଛି ବାଟ ଘୁଞ୍ଚିଯାଇ ଛିଡ଼ାହେଲା । ସୋପି ତା'ପାଖକୁ ଲାଗିଯାଇ ଟୋପିଟି ଉଠାଇ ଗାଲରେ 'ହାମାରେ ଗଲ୍ ଆଇଓ...'

ପୁଲିସ୍‌ର ଦୃଷ୍ଟି ସୋପି ଉପରେ ନିବଦ୍ଧ, ଯୁବତୀଟି ପୁଲିସକୁ ସଙ୍କେତ ଦେବା ମାତ୍ରକେ ସୋପିର ଶୀତନିବାସକୁ ଯିବା ନିଶ୍ଚିତ ହୋଇଯିବ । ସୋପି କଳ୍ପନାରେ ଜେଲ୍-ଖାନାର ଉଷ୍ମକୋଠରିର ପରଶ ଅନୁଭବ କଲା । ଯୁବତୀଟି କିନ୍ତୁ ସୋପିର ହାତ ଧରି କହିଲା, "ସେ ପୁଲିସ୍‌ଟା ଚାହିଁଥିଲା, ତେଣୁ ମୁଁ କଡ଼ାକୁ ଘୁଞ୍ଚିଆସିଲି । ଯିବି ତୋ ସାଙ୍ଗରେ—ମୋତେ ଆଗେ ପେଟେ ଖୋଇଲ୍‌, ଚାଲ୍‌"

ସୋପି ଯୁବତୀର ହାତ ଧରି ଅତି ଦୁଃଖରେ ପୁଲିସ୍‌କୁ ଅତିକ୍ରମ କରି ଚାଲିଗଲା ଓ ମନେ ମନେ ଭାବିଲା, ମୋର ଏ ସ୍ୱାଧୀନତା ଅଭିଶପ୍ତ ।

କିଛି ବାଟ ଗଲା ପରେ ଗଳି ମୋଡ଼ରେ ସେ ଯୁବତୀର ହାତ ଛଡ଼ାଇ ନେଇ ଦଉଡ଼ି ପଳାଇଗଲା । ଦୌଡ଼ି ଦୌଡ଼ି ସେ ସହରର ଏମିତି ଗୋଟାଏ ବସ୍ତିରେ ପହଞ୍ଚିଲା, ଯେଉଁଠି ରାସ୍ତାଗୁଡ଼ିକ ଜନବହୁଳ ଏବଂ ଲୋକଗୁଡ଼ିକ ମଧ୍ୟ ହାଲୁକା ହୃଦୟର । ସେ ଅଞ୍ଚଳରେ ଯୁବକ ବା ଯୁବତୀମାନେ ଆନନ୍ଦରେ ବୁଲୁଥାନ୍ତି । ସେଠି ପହଞ୍ଚିଲାକ୍ଷଣି ସୋପିର ଭୟହେଲା, ବୋଧେ କୌଣସି ଦୁଷ୍ଟ ଦେବୀ ତାକୁ ଏମିତି କରିଦେଇଚି ଯେ ପୁଲିସ୍ ତାକୁ ଛୁଇଁବନାହିଁ । ଏ ଭୟ ଜାତ ହେବା ମାତ୍ରକେ ସେ ବିମର୍ଷ ହୋଇପଡ଼ିଲା । ସେଇ ସମୟରେ ଗୋଟିଏ ପୁଲିସ ଯାଉଥାଏ । ସୋପି ସ୍ଥିର କରିନେଲା ଯେ ସେ ମାତାଲଙ୍କ ଭଳି ଆଚରଣ କରିବ ।

ସୋପି ଛିଡ଼ାହୋଇ ମାତାଲଙ୍କ ଭଳି ନାଚିଲା କୁଦିଲା ଓ ଯାହା ତାକୁ ବକିବାକୁ ଲାଗିଲା । ପୁଲିସ୍‌ଟି ତା'ର ବାଡ଼ିଟି କାଖରେ ଜାକି ଆଉ ଜଣେ ବାଟୋଇକୁ କହିଲା—ଭୟ ନାହିଁ । ଏମାନେ କଲେଜ ପିଲା । କଲେଜର ଗୋଟାଏ ପର୍ବ ପାଳୁଛନ୍ତି ଆନନ୍ଦରେ । ତାଙ୍କୁ କିଛି କହିବାକୁ ଆମକୁ ମନା ଅଛି ।

ବ୍ୟର୍ଥ ! ଏଠି ବି ବ୍ୟର୍ଥ ! କୌଣସି ପୁଲିସ୍ ମୋତେ କଅଣ ଭୁଲରେ ବି ଧରିବ ନାହିଁ ? ହାୟ, ଶୀତଦିନରେ ଜେଲ୍ ଖାନାର ଉଷ୍ମ କୋଣଟି ଆଜ ସୁଦୂରପରାହତ । ସୋପି ପୁଣି ଆଗେଇ ଚାଲିଲା ।

ଗୋଟିଏ ସିଗାରେଟ୍ ଦୋକାନ ପାଖରେ ଛିଡ଼ାହୋଇ ସୋପି ଦେଖିଲା ଯେ ଜଣେ ବହୁମୂଲ୍ୟ ପରିଚ୍ଛଦ ପରିହିତ ଭଦ୍ରଲୋକ ବହୁମୂଲ୍ୟ ଛତାଟି ତେରିଦେଇ ସିଗାରେଟ ଲଗାଉଛି । ସୋପି ଛତାଟି ଉଠାଇନେଇ ଆଗେଇ ଚାଲିଲା । ଭଦ୍ରଲୋକ ସୋପିକୁ ଗୋଡ଼ାଇଲେ ।

"ସେ ମୋର ଛତା"—ଭଦ୍ରଲୋକ ରାଗିଯାଇ କହିଲେ ।

"ସତେ କି ?" ସୋଫି ସ୍ୱରର ମୃଦୁ ହାଣ ଭଙ୍ଗୀରେ କହିଲା, "ତାହେଲେ ପୁଲିସ ଡାକନ୍ତୁ । ହେଇଟି ସେଠି ପୁଲିସ୍ ଛିଡ଼ାହୋଇଛି, ଡାକନ୍ତୁ ନା ।"

ଭଦ୍ରଲୋକଟି ଥମକିଗଲେ । ସୋଫି ମଧ୍ୟ ଛିଡ଼ାହେଲା । ମନରେ କିନ୍ତୁ ତା'ର ଭୟ—ଏଥର ମଧ୍ୟ ବ୍ୟର୍ଥ ହେବ ତା'ର ଚେଷ୍ଟା । ପୁଲିସ୍ ସେ ଦୁଇଜଣଙ୍କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁରହିଲା ।

ଭଦ୍ରଲୋକଟି କହିଲେ, ଅବଶ୍ୟ, ଅବଶ୍ୟ···ଆଜ୍ଞା···ଆପଣ ତ···ଜାଣନ୍ତି···ଛତା ଅନେକ ସମୟରେ ଭୁଲ ହୋଇଯାଏ···ଯଦି···ଯଦି ଆପଣଙ୍କର···ମୋତେ କ୍ଷମା କରିବେ ···ମୁଁ ଆଜି ସକାଳେ···କିଛି ମନେ କରିବେ ନାହିଁ....ଭୁଲରେ ଗୋଟିଏ ଛତା··· ହୋଟେଲରୁ ଉଠାଇ ଆଣିଥିଲି···ଆପଣ···ନିଅନ୍ତୁ···ନିଅନ୍ତୁ···

"ନିଶ୍ଚୟ ମୋର ଛତା," ସୋଫି କ୍ଷୋଭରେ ଜର୍ଜରିତ ହୋଇ କହିଲା ।

ଭଦ୍ରଲୋକଟି ଚାଲିଗଲେ । ପୁଲିସ୍‌ଟି ଦୌଡ଼ିଗଲା ଜଣେ ଯୁବତୀଙ୍କ କୋଟ୍ ପିନ୍ଧିବାରେ ସାହାଯ୍ୟ କରିବାକୁ । ସୋଫି ସମସ୍ତ ପୁଲିସ୍ କାଉଣ୍ଟାକୁ ମନେ ମନେ ଅଭିଶାପ ଦେଇ କହିଲା, "ମୁଁ ଧରାଦେବାକୁ ଆଗ୍ରହୀ ବୋଲି ହ୍ୟାପେ ବୋକାମାନେ ମୋତେ ଭାବୁଛନ୍ତି ମୁଁ ରଜା, ତେଣୁ ଦୋଷ କରିପାରେନା ।"

କିଛି ବାଟ ଗଲା ପରେ ସୋଫି ଗୋଟିଏ ଗୀର୍ଜା ପାଖରେ ଛିଡ଼ାହେଲା । ଗୀର୍ଜାର ଗୋଟିଏ ଗବାକ୍ଷରୁ ଝରି ଆସୁଛି ଗୋଟିଏ ହାଲୁକା ଆଲୋକର ସ୍ରୋତ । କେହି ଜଣେ ଗୀର୍ଜା ଭିତରେ ଜଣାଣ ଗାଉଛି ।

ଆକାଶରେ ଚନ୍ଦ୍ରର ଶାନ୍ତ ସ୍ନିଗ୍ଧ କିରଣ ପୃଥିବୀରେ ଶୁଭାଶୀର୍ବାଦ ଭଳି ବିସ୍ତାରି ପଡ଼ୁଛି । ଗୀର୍ଜାର ପ୍ରାଙ୍ଗଣଟି ନିର୍ଜନ ନିଥର । ଜଣାଣଟି ଶୁଣି ସୋଫି ନିଶ୍ଚଳ ଭାବରେ ଛିଡ଼ା-ହୋଇ ରହିଲା । ଯେତେବେଳେ ତା'ର ପିତାମାତା ଥିଲେ, ଧରଣୀ ବନ୍ଧୁ ଥିଲେ ଓ ଜୀବନରେ ଥିଲା ଆଶା, ସୋଫି ସେ ଜଣାଣଟି ଶୁଣିଥିଲା ।

ସୋଫିର ହଠାତ୍ ଭାବାନ୍ତର ଜାତହେଲା । ପାପର ଯେଉଁ ଗଭୀର ଅନ୍ଧକାର ଗର୍ଭକୁ ସେ ଧୀରେ ଧୀରେ ଆଗେଇଯାଉଥିଲା, ତାହା ସଭୟେ ଦେଖିଲା ।

ଯୁଗପତ୍ ତା' ହୃଦୟରେ ଏକ ଅପୂର୍ବ ରୋମାଞ୍ଚ ଜାତହେଲା । ଭାଗ୍ୟ ସହିତ ଯୁଦ୍ଧ କରିବାକୁ ନୂତନ ସାହସ ତା' ମନରେ ସଞ୍ଚାରିତ ହେଲା । ଜଣାଣଟି ତା' ମନରେ ସୃଷ୍ଟି କଲା ଅପୂର୍ବ ବିପ୍ଳବ । ଯେତେ କ୍ରେଷ୍ଟ ଚାକିରି ହେଉନା କାହିଁକି, ଚାକିରି କରି ସାଧୁ ଭାବରେ ଜୀବନ କଟାଇବାର ପ୍ରେରଣା ସେ ପାଇଲା ତା' ଅନ୍ତର ଭିତରୁ···ନିଶ୍ଚୟ ମୁଁ ସଚ୍ଚୋଟ ହେବି···ନିଶ୍ଚୟ···ନିଶ୍ଚୟ ।

କାନ୍ଧରେ କାହାର ସ୍ପର୍ଶ ପାଇ ସୋଫି ଚମକି ଚାହିଁ ଦେଖିଲା ପୁଲିସ୍ ।

"ଏଠି କଅଣ କରୁଛ ?" ପୁଲିସ୍ ପଚାରିଲା ।

"କିଛି ନାହିଁ"—ସୋପି କହିଲା ।
"ତା'ହେଲେ ମୋ ସହିତ ଆସ"—ପୁଲିସ୍ କହିଲା ।
ତିନିମାସ ଜେଲ—ମ୍ୟାଜିଷ୍ଟ୍ରେଟ ବିଚାର କରି ରାୟଦେଲେ ।

□□□

# ବାବା ଉହରିନନ୍ଦଙ୍କ ବିବାହ ବୃତ୍ତାନ୍ତ

ପୂର୍ବକାଳରେ ମୁଁ, ମଦନ, ସ୍ୱପ୍ନେଶ୍ୱର ଓ ତ୍ରିଲୋଚନ ଋଷିଗଣ ନୈମିଷାରଣ୍ୟରେ (ତ୍ରିଲୋଚନ ଯେଉଁ ଅଟ୍ଟାଳିକା ଗଢ଼ିଚନ୍ତି ତା'ର ନାଁ'ଟି 'ନୈମିଷାରଣ୍ୟ' କାହିଁକି ରଖିଚନ୍ତି ତାହା ମନସ୍ତତ୍ତ୍ୱବିତ୍‌ମାନଙ୍କର ଗବେଷଣାର ଉପଯୁକ୍ତ ବିଷୟ ହୋଇପାରେ) ସୁସ୍ୱାଦୁ ଖାଦ୍ୟ ଓ ପାନୀୟ କାମନାରେ (ସେ ଦୁଇର ଅଧିଷ୍ଠାତ୍ରୀ ଦେବୀ ତ୍ରିଲୋଚନଙ୍କ ଅର୍ଦ୍ଧାଙ୍ଗିନୀ ଅନ୍ନପୂର୍ଣ୍ଣା—ଆମେ କହୁ ଅରଣାଦେବୀ) ପ୍ରତ୍ୟେକ ରବିବାର ସକାଳୁ ଦଶ ଏକ ଘଣ୍ଟା ପର୍ଯ୍ୟନ୍ତ ଆଲୋଚନା କର୍ମରେ ବ୍ୟାପୃତ ହେଉଥିଲୁ ।

ଏକ ରବିବାର ପ୍ରାତଃକାଳରେ ଆମ୍ଭେ ଋଷିଗଣ ନିତ୍ୟନୈମିତ୍ତିକ କର୍ମ ଆରମ୍ଭ କରି ଉପବେଶନ କରିଅଛୁଁ, ଏହିପରି ସମୟରେ ଅରଣାଦେବୀଙ୍କ ବିଶ୍ୱସ୍ତ ଭୃତ୍ୟ, ତେଣୁ ତ୍ରିଲୋଚନଙ୍କର ମଧ୍ୟ ପ୍ରଭୁ, ମହାତ୍ମା ଉଗ୍ରଶ୍ରବା ଉପସ୍ଥିତ ହୋଇ ଯାହା ଘୋଷଣା କଲେ—ଭାଗବତୀୟ ଭାଷାରେ ତାହା ଏହିରୂପ—ହେ ହେ ରସବିଶେଷ ଭାବନା-ଚତୁର ଭାବୁକବୃନ୍ଦ, ଶୃଣ୍ୱନ୍ତୁ ଶୃଣ୍ୱନ୍ତୁ ! ଗୃହାଭ୍ୟନ୍ତରରୁ ମାତାଙ୍କର ଆଦେଶ ଶ୍ରବଣ କରନ୍ତୁ । ସମ୍ମୁଖରେ ଦାରୁଣ କଳିକାଳ ଉପସ୍ଥିତ ଦେଖି ଆପଣମାନେ ବ୍ୟଗ୍ର ଓ ଚିନ୍ତିତ ହୋଇ ଦୀର୍ଘ ବାକ୍‌ଯଜ୍ଞ ଆରମ୍ଭ କରିଛନ୍ତି । ତେଣୁ ଆପଣମାନଙ୍କର ପ୍ରଚୁର ଅବକାଶ ଅଛି । ଏ ଦଗ୍‌ଧ କଳିକାଳରେ ଜିହ୍ୱା ହିଁ ସମସ୍ତପ୍ରକାର ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଉତ୍ପାତର କାରଣ ଏଥିରେ ସନ୍ଦେହ ନାହିଁ । ଭାଗବତରେ ଅଛି କଳିକାଳରେ ବହୁକଥନ ହିଁ ପାଣ୍ଡିତ୍ୟର ପରିଚାୟକ ଓ ବାଗ୍‌ଛଳତା ହିଁ ସତ୍ୟତାର ପ୍ରତିପାଦକ ହେବ । ଅତଏବ କି ଉପାୟ ଅବଲମ୍ବନ କଲେ ଜିହ୍ୱାର କିମ୍ବା ସଂଯତ ହେବ ତାହାର ଉପାୟ ଆଜି ଉଦ୍ଭାବନ କରନ୍ତୁ, ନଚେତ୍...

ଆମ୍ଭ ଋଷିଗଣଙ୍କର ବୁଦ୍ଧି ଅତି ସୂକ୍ଷ୍ମ ଓ ତୀକ୍ଷ୍‌ଣ ଥିବାରୁ 'ନଚେତ୍' ପରେ ଭୃତ୍ୟ-ପୁଙ୍ଗବ ଉଗ୍ରଶ୍ରବା ତଥ୍ୟ ମାତା ଓ ଆମ୍ଭମାନଙ୍କର ନିତ୍ୟ ଭୀତିଉତ୍ପାଦନକାରିଣୀ ଅରଣା ଦେବୀଙ୍କର କି ଆଦେଶ ଘୋଷଣା କରିବେ ତାହା ନିମିଷକେ ବୁଝିପାରି ବିଶେଷ ଭୟାତୁର ହେଲୁ । ତେଣୁ ସେ ଘୋଷଣା ସ୍ଥଗିତ କରିବା ମାନସରେ ଆମ୍ଭେ ଋଷିଗଣ ଘୋଷଣା

ଶୁଣିବାର ଆଗରୁ ଛଳନା କରି ସମବେତ କଣ୍ଠରେ ଚାରିଆଡ଼ରେ ପ୍ରଶ୍ନ କଲୁ, ନଚେତ୍ ? ନଚେତ୍ ?

ମହାତ୍ମା ଉଗ୍ରଶ୍ରବା ଆମ୍ଭମାନଙ୍କର ଶରତ୍ତରଙ୍ଗ ସଂଗ୍ରହ କରି ତାଙ୍କ କର୍ଣ୍ଣଗହ୍ୱରକୁ ସ୍ଥଳିତ କରିବା ମାନସରେ ତାଙ୍କର ଦୁଇକର୍ଣ୍ଣର ପଶ୍ଚାଦ୍ଦେଶରେ ଦୁଇହସ୍ତ ସ୍ଥାପନ କରି ପଚାରିଲେ, ଓ ଓଁ ଓ ଓଁ, କଅଣ କହୁଚ ? ଆମ୍ଭେମାନେ ନୀରବ ରହିଲୁ । ତତ୍ପରେ ସେ ଅବଜ୍ଞାସୂଚକ ଭଙ୍ଗୀରେ ଆମ୍ଭମାନଙ୍କୁ ତାଙ୍କର ବରିଷ୍ଠ ପୃଷ୍ଠ ଦର୍ଶାଇଲେ ।

ହତାଶାରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଆମ୍ଭେମାନେ କିଛିକ୍ଷଣ ନୀରବ ରହିବା ପରେ ମଦନ ତ୍ରିଲୋଚନଙ୍କ ଆଡ଼େ କ୍ରୂର ଦୃଷ୍ଟି ନିକ୍ଷେପ କରି କହିଲେ—ବ୍ୟାପ, କିଏ କୁହେବେ ନାରୀ ଅବଳା, କୋମଳା, ଦୟାଳୁ ? କିଏ କୁହେବେ ?

ଆମ୍ଭେମାନେ ସେପରି କେବେ କହି ନଥିବାରୁ ନୀରବତାଦ୍ୱାରା ସେ ପ୍ରଶ୍ନର ଉତ୍ତର ଦେଲୁ । ମଦନଙ୍କ କ୍ରୋଧ ତଦ୍ଦ୍ୱାରା ବୃଦ୍ଧିପ୍ରାପ୍ତ ହେଲା । ସ୍ୱପ୍ନେଶ୍ୱର କହିଲେ, ପ୍ରକୃତିର ନିୟମ ଅନୁସାରେ ଯିଏ ଅନ୍ତରରେ ଯେତେ କ୍ରୂର ତାହାର ବାହ୍ୟ ଆବରଣ ସେତେ କୋମଳ ଓ ମନୋଲୋଭା, ଏବଂ ଯିଏ ଅନ୍ତରରେ ଯେତେ କୋମଳ ତାହାର ବାହ୍ୟ ଆବରଣ ସେତେ କଠିନ···

ତ୍ରିଲୋଚନ ଏଥର ଅଟକେଇ ଅଟକେଇ କହିଲେ, ତା' ଯଦି ହୋଇଥାଏ ତେବେ ସେ ପ୍ରକୃତିର ନିୟମ । ଏଥିରେ କ୍ଷୁବ୍ଧ ହେବାର କଅଣ ଅଛି ?

ମଦନ ଏଥର ଚିତ୍କାର କରି ଟେବୁଲ ଉପରେ ବିଧାମାରି କହିଲେ, ତୁ ଚୁପ୍ କର ବ୍ୟାପ୍ ।

ମଣିଷର ଆଶା ଯେତେବେଳେ ସଫଳ ହୁଏ ନାହିଁ ବା ସଫଳ କରିବାର କ୍ଷମତା ଥାଏ ନାହିଁ, ସେତେବେଳେ ମାନସିକ ଯନ୍ତ୍ରଣାରୁ ଉଦ୍ଧାର ପାଇ ଶାନ୍ତି ପାଇବାପାଇଁ ସେ ବିଫଳତାର ଉପଯୁକ୍ତ କାରଣ ଅନୁସନ୍ଧାନ କରେ ଏବଂ କାରଣ ପାଇଗଲେ ଶାନ୍ତି ପାଏ । ଅଥବା କିଛି କାରଣ ନ ପାଇଲେ ଭାଗ୍ୟ ଭଗବାନ ଆଦିଙ୍କ ଉପରେ ଦୋଷ ଲଦିଦେଇ ଶାନ୍ତିପାଏ । ମୁଁ କହିଲି, ଆଜିକାଲି ଯେଉଁ ଦୁର୍ମୂଲ୍ୟ ଓ ଟିକସର ଯୁଗ ସେଥିରେ ପ୍ରତ୍ୟେକ ରବିବାର ଆମ୍ଭ ବୃଦ୍ଧିଗଣଙ୍କପାଇଁ ଖାଦ୍ୟପେୟରେ ପାଞ୍ଚଟଙ୍କା ବ୍ୟୟ କରିବା ଅସମ୍ଭବ ନୁହେଁ କି ? ଅର୍ଥ ହିଁ ଆମ୍ଭମାନଙ୍କ ଆଚାର ବ୍ୟବହାର ନିୟନ୍ତ୍ରଣ କରେ ।

ମଦନ ହାତ ହଲାଇ କହିଲେ, ସେ କଥା ତୁମ୍ଭର ମାର୍କସ୍ ଋଷି କେବଳ କହି ନାହାନ୍ତି, ଭାଗବତରେ ମଧ୍ୟ ଲେଖାଅଛି—କଳିକାଳରେ ଧନହିଁ ମାନବସମାଜର ଜନ୍ମ, ଆଚାର, ଗୁଣ ପ୍ରଭୃତିର ନିର୍ଦ୍ଧାରକ ହେବ ଏବଂ ଧର୍ମ ନ୍ୟାୟନିରୂପଣର ମୂଳ ହେବ ।

ତ୍ରିଲୋଚନ ଏଥର ସାହସ ପାଇ କହିଲେ, ସତେ ଭାଇ ! ରାମରାଜ୍ୟ କହିଲେ ଚଳେ ! ପୁରାଣରେ ଲେଖାଅଛି ରାମଚନ୍ଦ୍ରଙ୍କ ରାଜତ୍ୱ କାଳରେ ଲୋକମାନଙ୍କ ଘର ସବୁ ହୀରା ମୋତି ମାଣିକ୍ୟରେ ଓ ରାସ୍ତାସବୁ ରୁପାରେ ତିଆରି ହୋଇଥିଲା । ଲୋକେ ବଜାରକୁ ସଉଦା

କିଣିବାକୁ ଗଲେ ପାଛୁଆ ପାଛୁଆ ନୋଟ ମାଣିକ୍ୟ ନେଇ ଯାଉଥିଲେ । ଶାଗ କିଣିବାବେଳେ ଶାଗବାଲାକୁ କହୁଥିଲେ, ନୋଟ ପାଛୁଆଏ ନେ, ଶାଗ ପାଛୁଆଏ ଦେ ! ସେ ରାମରାଜ୍ୟ ଆସି ଗଲାଣି । ଆମେ ବି ଦିନେ କହିବୁ, ଟଙ୍କା ପାଛୁଆଏ ନେ, ପୋଇଖଡ଼ା ଗୁଡ଼ାଖଣ୍ଡେ ଦେ, ସେଥିରୁ ପତର ଦୁ'ଟା କାଢ଼ିନେବୁ ତ ନେ । ଏହାର କାରଣ କମ୍ ଉତ୍ପାଦନ ନୁହେଁ, ଅସାଧୁତା ।

ମୁଁ କହିଲି, ଚମତ୍କାର ! ସମସ୍ତେ ଆଗେ ଥୋଡ଼ା ଧନ ଅସାଧୁ ଉପାୟରେ ସଞ୍ଚୟ କର ତା'ପରେ ଅନ୍ୟମାନଙ୍କୁ ଉପଦେଶ ଦେଉଛନ୍ତି, ଭାଇମାନେ ସାଧୁ ହୁଅ !

ଧିପେନ୍ଦ୍ରଶ୍ୱର କହିଲେ, ଆରେ ନା ନା, ସରକାର ଯେତେ ଯୋଜନା କଲେଣି ଅଉ ଅଳ୍ପ କେଇଟା ଦିନ କଷ୍ଟ ସହିଗଲେ ଆବସ୍ଥା ଓଲଟିଯିବ । ଲୋକେ କହୁଛନ୍ତି ଯେ ଯୋଜନାରେ ଯେତେ ଖର୍ଚ୍ଚ ହେଉଛି ସେଥିରୁ ଶତକଡ଼ା ସତୁରି କାମରେ ଲାଗୁନାହିଁ । ମୁଁ କହେ, ବାକି ତିରିଶ ତ କାମରେ ଲାଗୁଛି, ସେତିକି କଅଣ କମ୍ !!

ମଦନ କହିଲେ, ଠିକ୍ କଥା, ଯେତେ ଟଙ୍କାର କାମ ହେଲା ତା'ର ହିସାବ ରହୁଛି ଓ ଆଖିକି ଦିଶୁଛି; କିନ୍ତୁ ବାକି ଟଙ୍କା ଆମର କେତେ ନୈତିକ ଅବନତି ଆଣିଲା ତା'ର ହିସାବ ? କିଏ ରଖୁଛି ତା'ର ହିସାବ ଶୁଣେ ? ଏ ବସ୍ତୁବାଦ ଯୁଗରେ ସରକାର ମନୁଷ୍ୟ-ମନରେ ନାନା ପ୍ରକାର ଇଚ୍ଛା ଆକାଂକ୍ଷା ଉଦ୍ରେକ କରାଉଛନ୍ତି—ଅଣ୍ଡା ଖାଅ, ଦୁଧ ଖାଅ, ଭଲ ଘରେ ରହ ଇତ୍ୟାଦି । ଆକାଙ୍‌କ୍ଷାକୁ ଖାପଖୁଆଇ ଉତ୍ପାଦନ କୌଣସି ଯୁଗରେ ହୋଇ-ପାରିବ ନାହିଁ । ଆକାଙ୍‌କ୍ଷା ଶହେଗୁଣ ହେବାବେଳକୁ ଉତ୍ପାଦନ ହେବ ହୁଏତ ଏକଗୁଣ । ଅତଏବ ଉତ୍ପାଦନର ଫଳ ଭୋଗ କରିବେ ଅଳ୍ପ କେତେକ ଚତୁର ଲୋକେ । ଅନ୍ୟମାନଙ୍କର ବିଫଳ ଆକାଙ୍‌କ୍ଷା କି ବିକୃତି ସୃଷ୍ଟି କରିବ, କି ହିଂସା ଦ୍ୱେଷ ସୃଷ୍ଟି କରିବ ତା'ର ହିସାବ ରଖୁଛି କିଏ ? ଏଇଥିପାଇଁ ତ ପୂର୍ବକାଳରେ ଧର୍ମ ଓ ଦର୍ଶନଦ୍ୱାରା ଆକାଙ୍‌କ୍ଷାକୁ ସଂଯମ କରିବାର ପ୍ରୟାସ ଥିଲା । ଆଜିକାଲି ତ ଧର୍ମ, ଦର୍ଶନ ଭଗବାନଙ୍କୁ ମୂଳରୁ ଉଡ଼ାଇଦେଲେଣି । ଭାଗବତରେ ତେଣୁ ଲେଖାଅଛି କଳିକାଳରେ ଅନଭିଜ୍ଞ ଓ ଅସାଧୁ ଲୋକେ ଉତ୍ତମ ବ୍ୟକ୍ତିର ଆସନ ଗ୍ରହଣ କରିବେ ।

ଏହି ସମୟରେ ଦୈବବାଣୀ ଭଳି ବାଣୀ ଶୁଣାଗଲା, ଭୋ ଭୋ ଋଷିଗଣ ! ତୁମ୍ଭେ-ମାନେ ବୃଥା ତର୍କରୁ କ୍ଷାନ୍ତ ହୁଅ; କାରଣ ଭଗବାନ ନାରାୟଣଙ୍କ ଏହା ହିଁ ଇଚ୍ଛା ଯେ ମନୁଷ୍ୟଗଣ ଆପଣା ଆପଣାକୁ ପାଳନ କରିବେ ଓ କ୍ରମେ କ୍ରମେ ଶାସକମାନେ ସ୍ୱାର୍ଥାନ୍ଧ ହୋଇ ପାଳନ କାର୍ଯ୍ୟରେ ଅସାଧୁ ଓ ଅସଂଯମୀ ହେବାରୁ ହିଂସା ଓ ଦ୍ୱେଷ ବୃଦ୍ଧି ପାଇବ ଓ ମନୁଷ୍ୟମାନେ ପରସ୍ପରକୁ ବିନାଶ କରିବାରେ ବ୍ୟାପୃତ ହେବେ ଓ ଫଳରେ ସୃଷ୍ଟି ଲୋପ ପାଇବ !!

ଆମ୍ଭେମାନେ ଆନନ୍ଦରେ ଚିତ୍କାର କରିଉଠିଲୁ, ଆରେ ! ବାବା ଉଦ୍ଧବାନନ୍ଦ ଯେ ! ଆସନ୍ତୁ, ଆସନ୍ତୁ, ଆସ ଆସ, ଆବ୍‌ବେ !!

ବାବା ଉଦ୍ଧବାନନ୍ଦ ଆଶୀର୍ବାଦ ମୁଦ୍ରା ସହ ହସ୍ତ ଉତ୍ତୋଳନ କରି ପ୍ରବେଶ କଲେ । ପୁଣି ତାଙ୍କର ଯେଉଁ ଜଟାଧାରୀ ସନ୍ନ୍ୟାସୀବେଶ ଦେଖି ଆମ୍ଭେ ଆଶ୍ଚର୍ଯ୍ୟ ହେଲୁ ।

ମଦନ ପଚାରିଲେ, କିନ୍ତୁ ବାବା, ଏ କି ହତାଶର ବାଣୀ ଶୁଣାଉଛନ୍ତି ଆପଣ ବେଃ !

ବିସ୍ମ ମଦନାନନ୍ଦ ମୋଦକ, ବାବା କହିଲେ, ଶ୍ରୀ ଶ୍ରୀମଦ୍ଭାଗବତ ପ୍ରଥମ ସ୍କନ୍ଧ ପଞ୍ଚଦଶ ଅଧ୍ୟାୟ ୨୧-୨୭ ଶ୍ଳୋକ ଦେଖ ।

ସୁପ୍ରେଶ୍ୱର ପଚାରିଲେ, କିନ୍ତୁ ବାବା, ଆପଣ ଏପରି ତେଜୋଭ୍ରଷ୍ଟ ଦେଖାଯାଉଛନ୍ତି କାହିଁକି ? କୌଣସି ବନ୍ଧୁଙ୍କ ଗୃହରେ ବହୁକାଳ ବାସ କରିଥିଲ ବୋଲି କିଅଣ ବନ୍ଧୁପତ୍ନୀ ଦୁର୍ବ୍ୟବହାର କଲେ ? ତୁମ୍ଭେ କି କୌଣସି ଅଗମ୍ୟା ନାରୀ ନିକଟକୁ ଗମନ କରିଥିଲ ? ଅଥବା କୌଣସି ଗମ୍ୟା ନାରୀକୁ ଦରିଦ୍ର ବୋଲି ତ୍ୟାଗ କରିଅଛ ? ଅଥବା କର୍ମକ୍ଷେତ୍ରରେ ତୁମ୍ଭର ସମାନ ବା ତୁମ୍ଭଠାରୁ କୌଣସି ନିକୃଷ୍ଟ ବ୍ୟକ୍ତି କିଅଣ ତୁମ୍ଭ ଉପରକୁ ଉଠାଇ ଦିଆ-ହୋଇଛି ? ତୁମ୍ଭେ ଏ ପାଞ୍ଚବର୍ଷ ଯାବତ୍ କୁଆଡ଼େ ଥିଲ ?

ବାବା ଉଦ୍ଧବାନନ୍ଦ ଆନନ୍ଦରେ ହସି ହସି ଗଡ଼ିଯାଇ କହିଲେ, ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ତୁମ୍ଭେ ମଧ୍ୟ ଭାଗବତ ପଢ଼ିଅଛ । ଏ ପ୍ରଶ୍ନଗୁଡ଼ିକ ପ୍ରଥମ ସ୍କନ୍ଧର ଚତୁର୍ଦ୍ଦଶ ଅଧ୍ୟାୟରେ ଯୁଧିଷ୍ଠିର ଅର୍ଜ୍ଜୁନଙ୍କୁ ପଚାରିଥିଲେ । ସେ ପ୍ରଶ୍ନଗୁଡ଼ିକର ଉତ୍ତରରେ ହିଁ ମୋର ଏ ପାଞ୍ଚବର୍ଷର ବିଚିତ୍ର ଅଭିଜ୍ଞତା-ଜଡ଼ିତ ଇତିହାସ ଅଛି ।

ଏହି ସମୟରେ ମହାତ୍ମା ଉଗ୍ରଶ୍ରବା ପ୍ରଚୁର ଜଳଖିଆ ଓ ସୁରା ଧରି ଦ୍ୱାରଦେଶରେ ଆବିର୍ଭୂତ ହୋଇ ପଚାରିଲେ—ଓ ଓ ଓ ଓ, କିଅଣ କହିଲେ ?

ଆମ୍ଭେମାନେ ସେ ମହାତ୍ମାଙ୍କର ହସ୍ତ ପାଦରେ ଧାରଣ କରି ଟାଣିଆଣିଲୁ ଏବଂ ନାରୀ ବିଷୟରେ ଆମ୍ଭର ପୂର୍ବମତ ବଦଳାଇଦେଲୁ ।

ଖାଉ ଖାଉ ବାବା ଉଦ୍ଧବାନନ୍ଦ ଆରମ୍ଭ କଲେ···

ମୁଁ ପାଞ୍ଚବର୍ଷ ଯାବତ ଚକ୍ରବନ୍ଧଭାବରେ ବମ୍ବେରେ ଥିଲି । ଅଦ୍ଭୁତ ଚକ୍ର । ସେ ଚକ୍ରରୁ ମୁକ୍ତ ପରେ ମୁଁ ପୁଣି ସନ୍ନ୍ୟାସଧର୍ମ ଅବଲମ୍ବନ କରିଅଛି ଓ ପ୍ରବ୍ରଜ୍ୟା ବ୍ରତ ପାଳନ କରୁଅଛି । ଜୟ ରାଧେ, ଜୟ ରାଧେ ।

ରସବତୀ ବାସୁଣୀଦ୍ୱାରା ଘାଉଲା ହେବାପରେ ମନର ଘା ଶୁଖାଇବାକୁ ହିମାଳୟ ହିମାଳୟରେ କିଛି କାଳ ବୁଲି ପହଞ୍ଚିଲି ବମ୍ବେରେ । ବମ୍ବେରେ ମୋର ମନ ପୁଣି ସଂସାର ପ୍ରତି ଆକୃଷ୍ଟ ହେଲା । ଅଦ୍ଭୁତ ମନର ଗତି ! ବମ୍ବେରେ ମୁଁ ପୁଣି ଚାକିରି କଲି । ଗୋଟାଏ କୋମ୍ପାନୀରେ ଫୋରମ୍ୟାନ ଚାକିରି ପାଇଲି । ମାସିକ ବେତନ ଦୁଇଶହ ଟଙ୍କା । ସାନ କୋମ୍ପାନୀଟିଏ ।

କାମରେ ଯୋଗଦେବାର କିଛି ଦିନ ପରେ ମୁଁ ଗୋଟାଏ ଭାରି ଆଶ୍ଚର୍ଯ୍ୟ ଓ ମନୋମୁଗ୍ଧକର ଦୃଶ୍ୟ ଦେଖିଲି । କମ୍ପାନୀ ଗୋଟିଏ ନଳକୂପ ଖୋଳାଉଥାଏ । ଇଞ୍ଜିନିୟରୁ

ଲୋକ ମେସିନ୍‌ର ଦୁଇ ପାଖରୁ ଯନ୍ତ୍ର ତଳ ଉପର କରୁଥାଆନ୍ତି । ଜଣେ ମହିଳା ବୋଲୁଥାଏ—

ଚନ୍ଦ୍ରବଦନୀ···ହେଇଁ ଯବାନ
ହୋଇଚ ଠିଆ···ହେଇଁ ଯବାନ
ପର୍ବତ ତୋଡ଼ି ହେଇଁ ଯବାନ
ଚଲ ଇନ୍‌ଜିନ···ହେଇଁ ଯବାନ
ପାତାଳ ପାଣି···ହେଇଁ ଯବାନ
ଆଣେରେ ଟାଣି···ହେଇଁ ଯବାନ

ସ୍ତ୍ରୀଲୋକ ଏ କାମ କରିବାର ମୁଁ କେବେ ଦେଖି ନ ଥିଲି । ପ୍ରଥମେ ଦୃଷ୍ଟିକଟୁ ହେଲା ସତ, କିନ୍ତୁ ସେଇଥିପାଇଁ ବୋଧହୁଏ ମୁଁ ତାଙ୍କପ୍ରତି ଆକୃଷ୍ଟ ହେଲି ।

ତାଙ୍କ ନାଁଟି ହେଉଛି, ପରେ ବୁଝିଲି, କଳାବତୀ । ଖଣ୍ଡେ ଦାମସ୍କାର୍ଫ ଖୁବ ଭଲ ସୁନ୍ଦର । ସେମିତ କ୍ଷୀଣକାୟ, ଶୁଭ୍ରବର୍ଣ୍ଣା, ସତେଜା । ଇଞ୍ଜିନିୟରିଂ ପାଶ୍ କରିବା ପରେ କିଛିଦିନ କଣ୍ଟ୍ରାକ୍‌ଟରି କରି ବେଶ୍ ଦୁ'ପଇସା ରୋଜଗାର କରିଥିଲେ; କିନ୍ତୁ କ୍ୟାଡ଼େଲରେ ସବୁ ହରାଇ କମ୍ପାନୀରେ ଚାକିରି ନେଇଥାଆନ୍ତି, ମାତ୍ର ଦୁଇଦିନ ଆଗେ । ମୁଁ ସେତେବେଳକୁ ପ୍ରାୟ ବର୍ଷେ ହେବ କମ୍ପାନୀରେ ଚାକିରି କଲିଣି ।

ଆଉଦିନେ ଦେଖିଲି ସେ କମ୍ପାନୀର ନାରୀ-କର୍ମଚାରୀମାନଙ୍କ ସଭାରେ ବକ୍ତୃତା ଦେଉଥାଆନ୍ତି । କହୁଥାଆନ୍ତି, ହେ ନାରୀ, ତୁମ୍ଭେ ଜାଗ, ଆଉ ପୁରୁଷତଳେ ପଡ଼ି ରହନା । ସମାନ ସ୍ତରକୁ ଆସ । କୌଣସି ଦେଶର ପ୍ରଗତିର ପରିଚୟ ସେଠା ମହିଳାମାନଙ୍କ ଥିବା ସ୍ତରରୁ ଜଣାପଡ଼ିଯାଏ । ଅନ୍ୟାନ୍ୟ ଦେଶରେ ମହିଳାମାନେ ପୁରୁଷମାନଙ୍କ ସମାନ ସ୍ତରକୁ ଆସିବା ପାଇଁ ଆନ୍ଦୋଳନ କରୁଥିବାସ୍ଥଳେ ଆମ ସମ୍ବିଧାନ ସେ ଅଧିକାର ଦେଇସାରିଛି । ସେ ଅଧିକାରକୁ ଆମେ କେବଳ କାର୍ଯ୍ୟକାରୀ କରିବୁ ।

ମଦନ ପଚାରିଲେ, ଇଏତ କି କଥା—ତଳେ ନ ରହିଲେ ନାହିଁ, ଉପରକୁ ଯାଆନ୍ତୁ ସମାନ ସ୍ତରରେ ରହିଲେ ଅସୁବିଧା ସୃଷ୍ଟି ହେବନାହିଁ କି ? ଉଦାହରଣସ୍ୱରୂପ, ପୁରୁଷମାନଙ୍କ ପାଇଁ ତ ଯଥେଷ୍ଟ କାମ ନଥିବାରୁ ବେକାର ସମସ୍ୟା ବଢ଼ୁଚି । ସେଥିରେ ପୁଣି ମହିଳାମାନେ ଯୋଗଦେଲେ ବେକାରସମସ୍ୟା ଉତ୍‌କଟତର ହେବ ନାହିଁ କି ? ତା ଛଡ଼ା, ଗୃହ, ପରିବାର ଏ ସବୁର ତ ଉଚ୍ଛେଦ ହେବ । ହୋଟେଲ ହିଁ ଆମର ଗୃହ ହେବ, କ୍ଲବ୍ ଆମର ବିଶ୍ରାମ ସ୍ଥାନ ଏବଂ ଡାକ୍ତରଖାନା ହେବ ଆମର ସେବାଗୃହ ! ମୋ ମତରେ ମହିଳାମାନେ ସମାନ ସ୍ତରକୁ ଆସିଲେ କାମ ଭଲ ଚାଲିବ ନାହିଁ ।

ବସ୍ତ୍ର ମଦନାନନ୍ଦ ମୋଦକ, ଉହାରିନନ୍ଦ କହିଲେ, ସଂବିଧାନ ସେମାନଙ୍କୁ ସମାନ ଅଧିକାର ଦେଇଚି । ଆଇନ ଅନୁସାରେ ତୁମେ ମାନିବାକୁ ବାଧ ଯେ ଆମର ନିର୍ବାଚିତ ପ୍ରତିନିଧିମାନେ ଯେଉଁ ସଂବିଧାନ ପ୍ରଣୟନ କରିଛନ୍ତି ସେଥିରେ ନିଶ୍ଚୟ ଆମର ମଙ୍ଗଳ ହେବ ।

ଅତଏବ ଯେ ବିଷୟରେ ପ୍ରଶ୍ନ ଉଠାଇବା ସଂବିଧାନବିରୋଧୀ ଅପରାଧ । ଅତଏବ ମହିଳା-ମାନଙ୍କର ପୁରୁଷମାନଙ୍କ ତଳେ ବା ଉପର ସ୍ତରରେ ରହିବା କଥା ଉଠିପାରେନା । ଯଦି ଭବିଷ୍ୟତରେ କେବେ ପୁରୁଷମାନେ ଦେଖନ୍ତି ଯେ ନାରୀମାନେ ଉପରସ୍ତରକୁ ଉଠିଗଲେଣି, ସେମାନେ ତଳେ ପଡ଼ିଛନ୍ତି, ତେବେ ସଂବିଧାନ ଅନୁଯାୟୀ ପୁରୁଷମାନେ ସମାନ ଅଧିକାର ଦାବୀ କରିବେ । ସେ ସମୟ ପୁରୁଷମାନଙ୍କୁ ନାରୀମାନଙ୍କ ସ୍ତରକୁ ଉଠାଇ ଦେଉ ବା ନାରୀମାନଙ୍କୁ ପୁରୁଷମାନଙ୍କ ସ୍ତରକୁ ଖସାଇ ଦେଉ, ଯାହା ସରକାର ବିଚାର କରିବେ । ସେ କଥା ଗୌଣ ।

କଅଣ କହୁଥିଲି ? ବନ୍ଧୁ ମଦନାନନ୍ଦ, ତୁମେ ଆଉ କଥା ମଝିରେ ସୂକ୍ଷ୍ମତତ୍ତ୍ୱ ଉଠାଇ ରସଭଙ୍ଗ କରନ ନାହିଁ । କଅଣ କହୁଥିଲିଟି ?

ମୁଁ ମନେ ପକାଇ ଦେଲି, କଳାବତୀ ନାରୀମାନଙ୍କ ସଭାରେ ବକ୍ତୃତା ଦେଉଥିଲେ ଯେ···

ହଁ, ଉଦ୍ଧବାନନ୍ଦ ପୁଣି ଆରମ୍ଭ କଲେ, ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଲି । ମୋ ସୌଭାଗ୍ୟକୁ, ସେତେବେଳେ ସୌଭାଗ୍ୟ ମଣିଥିଲି, ଅଳ୍ପଦିନ ପରେ ସେ ମୋର ତଳେ ସହକାରୀ ଫୋରମ୍ୟାନ୍ ଚାକିରି ପାଇଲେ । ତାଙ୍କର ପଦୋନ୍ନତି ହେଲା । ଆହୁରି ସୌଭାଗ୍ୟର କଥା ଯେ ସେ ମୋର ଘର ପାଖ ଘରେ ରହିଲେ ।

ଫୋରମ୍ୟାନ ସ୍ତ୍ରୀ-ଲୋକ ? ମଦନ ଆଶ୍ଚର୍ଯ୍ୟାନ୍ୱିତ ହେଲେ ।

ସ୍ୱପ୍ନେଶ୍ୱର ମନ୍ତବ୍ୟ କଲେ, ଯେକୌଣସି କ୍ଷେତ୍ରରେ ସୃଷ୍ଟିର ଦୁଇଟି ନିୟମ କାର୍ଯ୍ୟ କରୁଚି, ରକ୍ଷଣଶୀଳତା ଓ ପରିବର୍ତ୍ତନଶୀଳତା । ସାମାଜିକ ଜୀବନରେ ମଧ୍ୟ ସେହି ଦୁଇ ନିୟମ କାର୍ଯ୍ୟ କରୁଚି । ସମାଜ ଯଦି ଖାଲି ପରିବର୍ତ୍ତନଶୀଳ ହୁଏ, ତେବେ ବିଶୃଙ୍ଖଳ ହୋଇଯିବ । ଖାଲି ରକ୍ଷଣଶୀଳ ହେଲେ ମଧ୍ୟ ତଦ୍ରୂପ । ଚିନ୍ତାଶୀଳ ଓ ଦୂରଦୃଷ୍ଟିସମ୍ପନ୍ନ ଶାସକପକ୍ଷରେ ଏ ଦୁଇର ସମନ୍ୱୟ ସୃଷ୍ଟି କରିବା ଉଚିତ । ରେଳଗାଡ଼ି ଚାଲୁଚି । ପ୍ରତ୍ୟେକ ମୁହୂର୍ତ୍ତରେ ପରିବର୍ତ୍ତନ ହେଉଚି ସତ କିନ୍ତୁ ରେଳଗାଡ଼ି ରେଳଗାଡ଼ି ରହୁଚି ।

ଉଦ୍ଧବାନନ୍ଦ ଧମକ ଦେଇ କହିଲେ, ବନ୍ଧୁ ସ୍ୱପ୍ନେଶ୍ୱର ! ପୁଣି ତୁମର ଦୋଷ ହେଲା । କଥାରେ ବାଧା ଦିଅନା । ହଁ··ତା'ପରେ···

···ସେ ସକାଳୁ ଚାଲିଯାଆନ୍ତି ସାଇକେଲରେ ଖାକି ପେଣ୍ଟ ଓ ଖାକି କମିଜ ପିନ୍ଧି ହୁଇସିଲ୍ ମାରୁ ମାରୁ । ମୁଣ୍ଡ ପଛବାଳ ଏକଦମ୍ ମୁଣ୍ଡ ତାଳୁପର୍ଯ୍ୟନ୍ତ କ୍ଷୁରରେ ଚଞ୍ଛାହେବା ଭଳି ପତଳା ହୋଇ କଟା ଓ ସାମନାରେ ସାମାନ୍ୟ ବାଳ । ଆଃ, କି ସୁନ୍ଦର ଦିଶେ ତାଙ୍କୁ ସେ ବେଶରେ···

ଆବେ ଉଦ୍ଧବ, ଶ—, ତୋ'ର ମୁଣ୍ଡ ଖରାପ ହୋଇଗଲାଣି କି ? ନା ତୁ ଏକଦମ୍ ଲଫଙ୍ଗା ବମ୍ବେଇ ବଜାରି ହୋଇଗଲୁଣି ? ମଦନ ଘୃଣାଭରି କହିଲେ ।

ବନ୍ଧୁ ମଦନାନନ୍ଦ, ତତ୍ତ୍ୱବିଦ୍ ଧ୍ୟାନଗମ୍ଭୀର ସ୍ୱରରେ କହିଲେ, ମୋର ରୁଚି ସମ୍ବିଧାନ ଓ ଆଧୁନିକ ରୁଚିସମ୍ପନ୍ନ, ଆଉ ତୋର ରୁଚି, ହ୍ୟାପ ଛୁ, ସମ୍ବିଧାନବିରୋଧୀ ଓ ନିତାନ୍ତ ପୁରୁଣା-କାଳିଆ । ମୁଁ ଚାହୁଁଛି ଯେ ପୁରୁଷ ଓ ନାରୀ ଦୁହେଁ ସମାନ କାର୍ଯ୍ୟକ୍ଷମ ହେବେ, ସମାନ ରୋଜଗାର କରିବେ, ସମାନ ଅଧିକାର ପାଇବେ । ତାହା ହେଉଛି ଓ ହେବ, କେହି ରୋଧ କରିପାରିବେ ନାହିଁ । ଅତଏବ ବର୍ତ୍ତମାନ ରୁଚି ବଦଳିବ, ଯୌନ ଆକର୍ଷଣ ବଦଳିବ, କବିତା ଓ ସାହିତ୍ୟ ବଦଳିବ । ବଦଳୁଛି ଅନ୍ୟାନ୍ୟ ଦେଶମାନଙ୍କର ଏବଂ ସେ ଦେଶମାନେ ଉନ୍ନତି ପଥରେ ଆଗେଇ ଚାଲିଛନ୍ତି । ଆମ ଦେଶରେ ହେବ ଓ ମୋର ହୋଇସାରିଛି । ବୁଝିଲୁ ବନ୍ଧୁ ! ଚୁପ୍ କର ।···ତା'ପରେ···

···ବଏଲର୍ ତାପ କମିଆସିଲେ ସେ ଯେତେବେଳେ ତାପମାନ ଯନ୍ତ୍ରରେ ଛୁଞ୍ଚିର ଅବସ୍ଥିତି ଦେଖି ବଏଲର ଅଗ୍ନ୍ୟୁଦ୍‌ଗାରୀ ମୁହଁ ମେଲକରିଦେଇ ପ୍ରକାଣ୍ଡ ଫାଉଡ଼ାରେ କୋଇଲା ନିକ୍ଷେପ କରନ୍ତି ବା ମଜୁରିଆମାନେ କିଛି ଗୋଟାଏ ଭାରି ଲୁହା ଠେଲି ଦେଉ-ଥିବାବେଳେ ସେ ଯେତେବେଳେ 'ଖବରଦାର' ବୋଲି ଚିତ୍କାର କରନ୍ତି, ସେତେବେଳେ ମୁଗ୍‌ଧ ହୋଇ ମୁଁ ଦେଖୁଥାଏ ।

ଥରେ ସେ କାରଖାନାର ଅବସର ସମୟରେ ହୋଟେଲରେ ବସି—ସେ ଦୁଇବେଳା ହୋଟେଲରେ ହିଁ ଖାଆନ୍ତି—ଦୁଇଟି କୁକୁଡ଼ା ରୋଷ୍ଟ ଗ୍ରହଣ କରୁଥାଆନ୍ତି । ଆଃ, କି ସୁନ୍ଦର ସେ ଦିଶୁଥାନ୍ତି ସେତେବେଳେ । ମୁଁ ଯାଇ ତାଙ୍କ ପାଖରେ ବସିଲି ।

ହଠାତ୍ ରଗିଯାଇ ସେ ପାଟିକରି ଉଠିଲେ, ହଟୋ ହିଁୟାସେ, ଏ ଜାୟଗା ଔରତ୍‌କେ ଲିୟେ···

ମଦନ ଗୋଟାଏ ପ୍ରଚଣ୍ଡ ତାଳିମାରି କହିଲେ, ବାଃ ବାଃ, ଏକଦମ୍ ମିଳିଯାଉଛି ସବୁ କଥା । ଆଚ୍ଛା, ସେ କଅଣ ଖୁବ୍ ବାଙ୍ଗର ।

ହଁ, ତତ୍ତ୍ୱାନନ୍ଦ କହିଲେ, ତାକୁ ଚିହ୍ନୁ ନା କଅଣ ?

—ନା, କିନ୍ତୁ ବ୍ୟାସଦେବ ଚିହ୍ନନ୍ତି । ସେ ଭାଗବତରେ କହିଛନ୍ତି—କଳିକାଳରେ ନାରୀମାନେ ଖର୍ବକାୟା, ଅଧିକ ଭୋଜନପ୍ରିୟା, କଟୁଭାଷିଣୀ, ଛଳନାପଟୁ ଓ ଯଥେଷ୍ଟ ସାହସୀ ହେବେ । ଆଉ ପୁରୁଷମାନେ ସ୍ତ୍ରୈଣ ହେବେ । ନାରୀମାନଙ୍କ ସବୁ ଭାବ ପ୍ରେମମୂଳକ ନ ହୋଇ ସୁରତମୂଳକ ହେବେ । ଆଚ୍ଛା, ସେ କାରଖାନା ମାଲିକ କଅଣ କଳାପୋତେଇ ବ୍ୟବସାୟ କରେ ?

ତତ୍ତ୍ୱାନନ୍ଦ କହିଲେ, ଆରେ ବାଃ ପାକିସ୍ତାନକୁ ଚୋରା ରପ୍ତାନି କରି ଓ ବିଦେଶରୁ ସୁନା ଚୋରା ଆମଦାନୀ କରି ତ ସେ ଆଜି କୋଡ଼ପତି । ସେଇ ତ ତାର ଅସଲ ବ୍ୟବସାୟ । ଏ କାରଖାନାଟା ଖାଲି ନାମକୁ ମାତ୍ର, ବା'କୁ ବତା । ବା ବି କାହିଁ !

ମଦନ ଅଧିକ ଆନନ୍ଦରେ କହିଲେ, ବାସ୍ ବାସ୍ । ଏକଦମ୍ ମିଳିଗଲା । ବ୍ୟାସଦେବ କହିଛନ୍ତି କଳିରେ ମାତୃଶାସ୍ତ୍ର ପ୍ରବଞ୍ଚକ ବଣିକମାନେ କ୍ରୟ-ବିକ୍ରୟ କରିବେ । ହ୍ୟାପ, ସବୁ

ଲକ୍ଷଣ ଜୁଟିଗଲା ଏକା ଜାଗାରେ । ଏଥର ଭଗବାନ ନକେ ଅବତୀର୍ଣ୍ଣ ହେବେ ।
"ଯଦାଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ..."

ରଖ୍ ତୋ ବ୍ୟାସଦେବ, ବୃଦ୍ଧଦେବ, ତନ୍ମୟାନନ୍ଦ ରାଗିଯାଇ କହିଲେ, ହ୍ୟାପ ସେ ନିଗୁଡ଼ାକ ଧରି ଆଉ ରଗାଅନା ମୋତେ । ମୁଁ ଅଉ କହିବ ନାହିଁ । ଯାଃ, ବନ୍ଦ କଲି ମୋ କଥା ।

ଆମେ ସମସ୍ତେ ଅନୁନୟ ବିନୟ କଲୁ । ତ୍ରିଲୋଚନ ଛିଡ଼ାହୋଇ ହାତ ଯୋଡ଼ି କହିଲେ—ଗୁରୁଦେବ, କହନ୍ତୁ ଆପଣ, ଆମେମାନେ ଆପଣଙ୍କ ଅପୂର୍ବ ଜ୍ଞାନପୂର୍ଣ୍ଣ ବୃତ୍ତାନ୍ତ ଶୁଣି ସାତିଶୟ ଆନନ୍ଦିତ ହେବୁନାହିଁ କେବଳ, ଆମ୍ଭମାନଙ୍କର ସମସ୍ତ ପାପ ସୂର୍ଯ୍ୟୋଦୟେ କୁହେଳିକାବତ୍ ଦୂରୀଭୂତ ହେବ । ନରାଧମ ମଦନାନନ୍ଦର ମୂର୍ଖ କଥା ଆପଣଙ୍କ ଭଳି ବଜ୍ର ବ୍ୟକ୍ତିଙ୍କୁ ବିଚଳିତ କରିପାରେ କି ? ଆମେ ସମସ୍ତେ ସମସ୍ୱରରେ କହିଲୁ, "ନୈବ ଚ ନୈବଚ ।" ତନ୍ମୟାନନ୍ଦ ପ୍ରସନ୍ନ ବଦନରେ ପଚାରିଲେ— ହଁ, କଅଣ କହୁଥିଲି କି ?

ମୁଁ କଥାର ଖିଅ ଧରାଇଦେଲି, କଳାବନ୍ତୀ ଦୁଇଟି କୁକୁଡ଼ା ଶ୍ରେଷ୍ଠ ଚର୍ବଣ କରୁଥିଲେ, ଆଉ...

ହଁ ହଁ, ତନ୍ମୟାନନ୍ଦ ପୁଣି ଆରମ୍ଭ କଲେ, ସେ ମୋତେ ଉଠିଯିବାକୁ କହିଲେ । ମୁଁ ବି କହିଲି, ହାମ୍ ନେହିଁ ଉଠେଙ୍ଗେ କଭି । ଏଠି ବସିବାକୁ ମୋର ସମାନ ଅଧିକାର ଅଛି ।

ଏତିକି କହିବା ଆଉ ଯାଏ କୁଆଡ଼େ ? କଳାବନ୍ତୀ ଯେ ବକ୍ସିଂରେ କେତେଥର ପ୍ରଥମ ପୁରସ୍କାର ପାଇଚନ୍ତି ମୋତେ କଅଣ ସେ କଥା ଜଣାଥିଲା । ଠିକ୍ ମୋ ନାକ ଉପରେ ଦେଲେ ଥୋଇ ଏକ ବାଇଶିପଲିଆ ମୁଥ । ମଥା ମୋର ଘୁରିଗଲା, ଆଖିରୁ ସୋରିଷ ଫୁଲ ବାହାରିଗଲା, ଚାରିଆଡ଼େ ଅନ୍ଧାର ଦିଶିଲା; କିନ୍ତୁ ମୁଁ ସମ୍ଭାଳି ନେଲି । ଗୁଞ୍ଜିଲି ଏକ ମୁଥ ତାଙ୍କ ନାକକୁ ଲକ୍ଷ୍ୟକରି । ଅଦ୍ଭୁତ ଦକ୍ଷତା ଓ କ୍ଷିପ୍ରତା ସହ ମୁଣ୍ଡ ଘୁଞ୍ଚାଇନେଇ ସେ ଥୋଇଦେଲେ ଆଉ ଏକ ମୁଥ ମୋ ନାକ ଉପରେ । ଗୋଟାଏ ଲୁହା ମୁଦ୍‌ଗର ଯେମିତି ପଡ଼ିଲା ମୋ ନାକ ଉପରେ । ଦରଦର କରି ରକ୍ତ ବାହାରିଲା ନାକରୁ । ମୁଁ ନଥିକନା ବସି ପଡ଼ିଲି । ସାଙ୍ଗେ ସାଙ୍ଗେ ଗ୍ରୀବା ଉପରେ ଏକ ପ୍ରଚଣ୍ଡ ଗୋଇଠା । ଏଥର ଚିତ୍ପଟାଙ୍ଗ ହୋଇ ପଡ଼ିଗଲି । ଯେତେବେଳେ ମୁଁ ପ୍ରାୟ ହତଜ୍ଞାନ । ସେ ଆଉ ଗୋଟାଏ ଗୋଇଠା ଦେବାକୁ ଯାଉଥିଲେ, ଅନ୍ୟାନ୍ୟ ଲୋକେ ତାଙ୍କୁ କୁଣ୍ଢାଇ ଧରି କହିଲେ, ଗ୍ରେଡ଼ଏ ଗ୍ରେଡ଼ଏ, ନାଦାନ ବଚ୍ଚା ହେସ୍ । ହାତ ଝାଡ଼ିଝୁଡ଼ି ଦେଇ ସେ ମୁଷ୍ଟିକଯୁଦ୍ଧୀ ବୀର ଭଳି ପଦକ୍ଷେପ କରି ନିଜ ଜାଗାରେ ବସି ଅର୍ଦ୍ଧଭୁକ୍ତ କୁକୁଡ଼ା ଖାଇବାକୁ ଲାଗିଲେ ।

ମୋତେ ପ୍ରଥମେ ଭାରି ଲଜ୍ଜା ଲାଗିଲା । ଅନ୍ୟ ପୁରୁଷମାନଙ୍କୁ ଚାହିଁଲି କରୁଣଭାବରେ, ପୁରୁଷ ଜାତି ପ୍ରତି ଏ ଅପମାନର ପ୍ରତିଶୋଧ ନେବାକୁ; କିନ୍ତୁ ଦେଖିଲି ସମସ୍ତେ ଅମ୍ଳାନ ବଦନରେ ଖାଇବାରେ ଲାଗିଚନ୍ତି, ଯେମିତି କିଛି ଘଟିନାହିଁ, ମୋ ଆଡ଼କୁ ଚାହିଁ ବି

ନ'ହାନ୍ତି କ ତାହାଙ୍କ ମୁହଁରେ ଅପମାନର କୌଣସି ଚିହ୍ନ ନାହିଁ । ମୁଁ ବି ଖାଇବାକୁ ବସିଲି ଅନ୍ୟ ଜାଗାରେ । ଖାଇପାରିଲି ନାହିଁ ।

କିନ୍ତୁ ଅଦ୍ଭୁତ କଥା—ଅଦ୍ଭୁତ କାହିଁକି, ଯୁଗ ଅନୁସାରେ ଏହା ସ୍ୱାଭାବିକ—ତା' ପରେ ମୁଁ ତାଙ୍କ ପ୍ରତି ଆହୁରି ଆକୃଷ୍ଟ ହେଲି । ହେଲେ ଆଉ ଆଗେଇବାକୁ ସାହସ କଲିନାହିଁ, କେବଳ ଅସହାୟ ଭାବରେ ଥରେ ଥରେ ତାଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରିବାଛଡ଼ା ।

ଏମିତି ଥାଏ । କିଛି ଦିନ ଗଲା । ଏହି ସମୟରେ ଆସିଗଲା ନିର୍ବାଚନ । କଳାବନ୍ତୀ ଥାଆନ୍ତି ନେତୃସ୍ଥାନୀୟା, ସେ ଛିଡ଼ାହେଲେ । ବାପ୍‌ରେ, କି କାର୍ଯ୍ୟଦକ୍ଷତା ତାଙ୍କର ! ଖଣ୍ଡେ ଜିପ୍ ଗାଡ଼ି ଚଳାଇ ସେ ଚରକି ପରି ବୁଲୁଥାଆନ୍ତି ତାଙ୍କ ମଣ୍ଡଳୀର ଏ ମୁଣ୍ଡରୁ ସେ ମୁଣ୍ଡ ଦିନକେ କୋଡ଼ିଏରୁ ତିରିଶ ଦୀର୍ଘ ବକ୍ତୃତାମାନ ଦେଇ । ଆମ ନେତାଙ୍କୁ ବି ସେ ବଳି-ଗଲେ । ସବୁଠି ହଜାର ହଜାର ଜନତା ଏକସ୍ୱରରେ କହୁଥାଆନ୍ତି, କଳାବନ୍ତୀର ଜୟ, ସମସ୍ତେ ଜାଣିଲେ ତାଙ୍କର ବିଜୟ ନିଶ୍ଚିତ ।

ଦିନେ ସେ ପ୍ରଚାର କାର୍ଯ୍ୟରେ ଯାଉଥାଆନ୍ତି ଖୁବ୍ ଜୋର୍‌ରେ ଜିପ୍‌ଗାଡ଼ି ଚଳାଇ । ମୁଁ ଆସୁଥାଏ ବିପରୀତ ଦିଗରୁ । ଅନେକ ଦିନ ଆଗରୁ ତାଙ୍କର ଦର୍ଶନ ମୁଁ ପାଇ ନ ଥାଏ, ହଠାତ୍ ଦେଖି ମୁଁ ମୁଗ୍‌ଧ ହୋଇ ଛିଡ଼ାହୋଇଗଲି ରାସ୍ତାକଡ଼ରେ । ଜିପ୍‌ଗାଡ଼ି କିନ୍ତୁ ମୋ ଆଡ଼କୁ ମାଡ଼ିଆସିଲା । ବହୁବାରହାର ସ୍ୱାଭାବିକ ପ୍ରବୃତ୍ତି ମୋତେ ରାସ୍ତା ବାହାରକୁ ଠେଲି ଦେଲା ସତ, କିନ୍ତୁ ତଥାପି ମୋ ଗୋଡ଼ ଉପରେ ଗୋଟାଏ ଚକ ମାଡ଼ିଗଲା । ମୋର କିଛି ସେମିତି ହେଲା ନାହିଁ, ତଳେ କଚାଡ଼ି ପଡ଼ିଗଲି ମାତ୍ର, ମୁଣ୍ଡ ଟିକିଏ ଖଣ୍ଡିଆ ହୋଇଗଲା । ଗୋଡ଼ର କିଛି ହେଲାନାହିଁ ସୌଭାଗ୍ୟକୁ ।

ଏତେ ଜୋର୍‌ରେ ଜିପ୍ ସେ ଚଳାଉଥିଲେ ଯେ ଖୁବ୍ ଜୋର୍‌ରେ ବ୍ରେକ୍ ଦେବାସତ୍ତ୍ୱେ ଗାଡ଼ି ଅନେକ ଦୂରରେ ଯାଇ ଅଟକିଲା । ସେ ଓହ୍ଲାଇ ଆସି ମୋ ହାତଧରି ଉଠାଇ ଦେଲେ । ସେଇ ମୁହୂର୍ତ୍ତରେ ମୋର ସବୁ ବ୍ୟଥା ଦୂର ହୋଇଗଲା । ହୃଦୟର ନିଭୃତ ଗହ୍ୱରରୁ ଏକ ଅପୂର୍ବ ବେଦନାମୟ ଆନନ୍ଦ ଉପରକୁ ଉଠିଆସି ମୋର ବାକ୍‌ରୋଧ କରିଦେଲା । ନୟନରୁ ମୋର ନୀର ବୋହିବାକୁ ଲାଗିଲା ।

'ଫୁଃ ଫୁଃ' ଫୁତ୍କାର ଦେଇ ସେ ପୁଣି ଜିପ୍ ଚଳାଇ ଚାଲିଗଲେ । ଗଲାବେଳେ ହାତ ହଲାଇ କହିଗଲେ ଟା ଟା ।

କିନ୍ତୁ ସେଇଦିନ ସନ୍ଧ୍ୟାବେଳେ ଯେ ମୋ ଘରକୁ ଝଡ଼ପରି ପଶିଆସିଲେ । ମନେହେଲା ସେ ଭାରି ବିଚଳିତ । ମୋତେ ଦେଖି ସେ କହିଲେ, ହ୍ୟାଲୋ, ଶୁଣିଚ, ପୁଲିସ୍ ଥାନାରେ କିଏ ମୋ ନାମରେ କହିଦେଇଚି ଯେ ମୁଁ ତୁମ ଉପରେ ଜିପ୍ ମଡ଼ାଇଦେଇଚି ଅସାବଧାନ ଭାବରେ ଜିପ୍ ଚଳାଉଥିବାରୁ । ତୁମେ ନିଶ୍ଚୟ ମୋତେ ଏତେବେଳେ ବିପଦରେ ପକାଇବ ନାହିଁ ଜାଣେ । ତୁମେ ମୋତେ ବିବାହ କରିବାକୁ ଚାହଁ ଜାଣେ । ଆସ ବିବାହ

କରିବା । ଖବର ନାହିଁ ଯେ ଏଟା କୂଟନୈତିକ ବିବାହ । ମୁଁ ଅନେକ ଦିନରୁ ତୁମର ମୋ ପ୍ରତି ଭାବ ଲକ୍ଷ୍ୟ କରିଛି । ମୁଁ ରାଜି, ଆସ କିନ୍ତୁ ଗୋଟିଏ ସର୍ତ୍ତରେ ବିବାହ କରିବାକୁ ମୁଁ ରାଜି । ତୁମେ ମୋର କୌଣସି ସ୍ୱାଧୀନତାରେ ବାଧା ଦେବନାହିଁ ଏବଂ ମୁଁ ଭିନ୍ନ ଘରେ ବାସ କରିବ । ରାଜି ?

ଯନ୍ତ୍ରଚାଳିତବତ୍ କହିଲି, ରାଜି ।

ତେବେ ମୋ ସହିତ ଆସ, ସେ କହି ଆଗେଇ ଚାଲିଲେ ।

ଯନ୍ତ୍ରଚାଳିତବତ୍ ତାଙ୍କ ପଛେ ପଛେ ଗଲି । ସେ ଜିପ୍ ଗାଡ଼ିରେ ଷ୍ଟିଅରିଂ ଧରି ବସି ମୋତେ ତାଙ୍କ କଡ଼ରେ ବସିବାକୁ ସଙ୍କେତ ଦେଲେ । ବସିଲି, ଜିପ୍‌ଗାଡ଼ି ଚାଲିଲା । କେଉଁଆଡ଼େ ଗଲା ମୁଁ କହିପାରିବି ନାହିଁ । ମୁଁ କେବେ ସେ ନିର୍ଜନ ଅଞ୍ଚଳ ଦେଖି ନଥିଲି । ଜିପ୍ ରହିଲା ଗୋଟାଏ ନିର୍ଜନ ଘର ସାମନାରେ । ସେ ସେହି ଘରଭିତରକୁ ଗଲେ । ତାଙ୍କ ପଛେ ପଛେ ମୁଁ ବି ଗଲି । ସଙ୍ଗେ ସଙ୍ଗେ ପ୍ରବେଶ କଲେ ଏକ ଅଦ୍ଭୁତ ପୋଷାକପିନ୍ଧା ଲମ୍ବା ପୁରୁଷ । ସେ ଆମକୁ ଦେଖି ଟିକିଏ ହସି ଅଭିବାଦନ କରି ଅଦ୍ଭୁତ ଭାଷାରେ କଅଣ ଅଳ୍ପ କହିଲେ । ତା'ପରେ ସେ କଳାବନ୍ତୀକୁ କହିଲେ, ତୁମର ସହକର୍ମୀକୁ ମାର ଏକ ପ୍ରଚଣ୍ଡ ଥାପଡ଼ । ଏହାହିଁ ଏ ବିବାହର ପଦ୍ଧତି । ସାଙ୍ଗେ ସାଙ୍ଗେ କଳାବନ୍ତୀ ମାରିଲେ ଏକ ଥାପଡ଼ । ସମ୍ଭାଳିନେଲି, କାଟିଲା ନାହିଁ ମୋଟେ । ତା'ପରେ ସେ ଅଦ୍ଭୁତ ପୁରୋହିତ ମୋତେ କହିଲେ, ତୁମେ ବି ତୁମର ସହକର୍ମୀକୁ ସେମିତି ଏକ ଥାପଡ଼ ମାର ।

ମୁଁ ହାତ ଉଠାଇଲି ମାରିବାକୁ, କିନ୍ତୁ ମୁଗ୍ଧ ଭାବରେ ଅନାଇ ରହିଲି ତାଙ୍କୁ । ହାତ ମୋର ଉଠିଲାନାହିଁ । କହିଲି, ନା ପାରିବି ନାହିଁ ।

ପୁରୋହିତ କହିଲେ, ଆଚ୍ଛା, କିଛି କ୍ଷତି ନାହିଁ । ଏ ଗୋଟାଏ ପଦ୍ଧତି ମାତ୍ର । ଯାଅ ତୁମ୍ଭେମାନେ, ଆଜିଠାରୁ ତୁମ୍ଭେ ଦୁହେଁ ଚୁକ୍ତିବଦ୍ଧ ସହକର୍ମୀ, ଯାହାକୁ ଅନେକେ କୁସଂସ୍କାରରେ ପଡ଼ି କହନ୍ତି ସ୍ୱାମୀ-ସ୍ତ୍ରୀ ।

ମଦନ ପୁଣି ଏକ ପ୍ରଚଣ୍ଡ ତାଳିମାରି କହିଲେ, ବ୍ୟାସଦେବ କହିଛନ୍ତି କଳିକାଳରେ ବିବାହ ଚୁକ୍ତି ଅନୁସାରେ ହେବ । ତେଣୁ···

ରଖ୍ ତୋ ବ୍ୟାସ, ଚୁପ, ବୁଦ୍ଧୁ—ତତ୍ତ୍ୱଜ୍ଞାନନ୍ଦ ଧମକ ଦେବାରୁ ମଦନ ଚୁପ୍‌କରି-ଗଲେ ।

···ନିର୍ବାଚନ ଥାଏ ଅନେକ ଦିନ । ଏହି ସମୟରେ କାରଖାନାରେ ମୋ' ଉପର ଚାକିରି ଖାଲିପଡ଼ିଲା । ମୁଁ କଳାବନ୍ତୀଠାରୁ ଚାକିରିରେ ବେଶିଦିନ ଥିବାରୁ ମୋର ପାଇବା କଥା ସେ ଚାକିରି, କିନ୍ତୁ କଳାବନ୍ତୀ ଦରଖାସ୍ତ କରିବସିଲେ ଯୋଗ୍ୟତା ଅନୁସାରେ ସେ ସେହି ଚାକିରିପାଇଁ ହକଦାର ।

ସେ ଦରଖାସ୍ତ ମୁଁ ପଢ଼ିଲି । ଅବଶ୍ୟ ସେ ମୋତେ କେବେହେଁ ପଢ଼ିବାକୁ ଦେଇ-ନଥିଲେ, କି ସେ ବିଷୟରେ ମୋ ସହିତ କେବେ ଆଲୋଚନା କରିନଥିଲେ । ମୁଁ ଅଫିସରେ ତାଙ୍କ ଦରଖାସ୍ତ ଦେଖି ଚମକି ଥିଲି । ହଠାତ୍ ମାହାସ ଭରି ତାଙ୍କୁ କହିଲି, ଶୁଣୁଚ, ତୁମର ମୋ ବିରୁଦ୍ଧରେ ଦରଖାସ୍ତ କରିବା ଓ ସେଥିରେ ମୋର ବଦ୍‌ଗୁଣ ସବୁ ଲେଖିବା କଅଣ ··

ସେ ଶ୍ଲେଷକଷାୟିତ ନୟନରେ ମୋତେ ଚାହିଁ କହିଲେ, ଖବରଦାର, ମୋର ମଧ୍ୟ ସେ ଚାକିରିପାଇଁ ସମାନ ଅଧିକାର ଅଛି । ମୋ ଅଧିକାର ହାସଲ କରିବାରେ ତୁମେ ମୋର ସହକର୍ମୀ ହିସାବରେ ବାଧା ଦେଇପାରିବ ନାହିଁ । ସ୍ୱାମୀତ୍ୱ ମୁଁ ସ୍ୱୀକାର କରେନାହିଁ । ମୁଁ ଶିକ୍ଷିତା କାର୍ଯ୍ୟଦକ୍ଷା ନାରୀ, ତୁମର ପଦାନତା ସ୍ତ୍ରୀ ନୁହେଁ ।

ଏ ସମାନ ଅଧିକାର ମୋତେ ମହାଦ୍ୱନ୍ଦ୍ୱରେ ପକାଇଲା । ଏ କଥା ସତ ଯେ, ସେ ଯଦି ମୋର ସ୍ତ୍ରୀ ନ ହୋଇ ଜଣେ ପୁରୁଷ ହୋଇଥାନ୍ତେ, ତେବେ ମୋ ସହିତ ପ୍ରତିଯୋଗିତା କରିବାର ତାଙ୍କର ସମାନ ଅଧିକାର ଥାଆନ୍ତା; କିନ୍ତୁ ସାମାଜିକ କ୍ଷେତ୍ରରେ ସ୍ତ୍ରୀ ଓ କର୍ମକ୍ଷେତ୍ରରେ ସହକର୍ମୀ ଏପରି ଦୁଇ କ୍ଷେତ୍ରରେ ସମ୍ପୂର୍ଣ୍ଣ ବିରୋଧାତ୍ମକ ଭାବ ସହଜଭାବରେ ପୋଷଣ କରିବାକୁ ମୁଁ ସମ୍ପୂର୍ଣ୍ଣ ଅକ୍ଷମ ହେଲି । ହୁଏତ ଏହା ମୋର ବିଂଶ ଯୁଗର ସଂସ୍କାର ଥିବାରୁ ଦୁହିଁଙ୍କୁ ଏକାମନରେ ସ୍ଥାନ ଦେଇପାରୁନାହିଁ । ହୁଏତ କିଛି ବର୍ଷ ପରେ ଏହା ସହଜ ହୋଇଯିବ; କିନ୍ତୁ ତଥାପି···ତଥାପି···ଗୁଡ଼ ସେ ଗହନ ତତ୍ତ୍ୱକଥା ।

କାରଖାନାର ଜେନେରାଲ୍ ମେନେଜର ମୋ ବିରୁଦ୍ଧରେ ବିଚାର କରି ମୋ ସ୍ତ୍ରୀକୁ କର୍ମକ୍ଷେତ୍ରରେ ମୋ ଉପରକୁ ଉଠାଇଦେଲେ । ବଡ଼ ଆଘାତ ପାଇଲି ମନରେ । କାମରେ ଆଉ ମନ ଲାଗିଲାନାହିଁ । ଘରେ ସେ ମୋ ସହିତ ବେଶ୍ ଭଲ ବ୍ୟବହାର କରନ୍ତି; କିନ୍ତୁ କାରଖାନାରେ ମୁଁ ଡେରିକରି ଗଲେ ବା ଭୁଲ୍ କଲେ ସେ ମୋତେ ନିର୍ମମ ଭାବରେ ଗାଳି ଦିଅନ୍ତି । ଏମିତି କି ଜେନେରାଲ୍ ମେନେଜରଙ୍କୁ ରିପୋର୍ଟ କରି ଥରେ ମୋର ଦିନିକର ଦରମା ବି କଟାଇଦେଲେ ।

ଅସହ୍ୟ ହେଲା । ମର୍ମେ ମର୍ମେ ମୁଁ ମରିଯାଉଥାଏ ଅସହ୍ୟ ବେଦନାରେ । ଆଉ ପାରିଲି ନାହିଁ । ଚାକିରି ଛାଡ଼ିଦେଲି । ହନାକେତେ ବୁଲିଲି ଏଣେତେଣେ ବମ୍ବେଇରେ । ମୁଁ କୁଆଡ଼େ ଗଲି, କଅଣ ମୋ ମନକଷ୍ଟ ଥରେ ସେ ଖବର ବି ନେଲେନାହିଁ ।

ତା'ପରେ ଗଲି ହିମାଳୟ, ଗୋପୀସାଧନା କରିବାକୁ । ସାଧନା ସାରି ସିଧା ତୁମ ପାଖକୁ ଆସିଲି । ରାହା ଦିଅ—ଜୟ ରାଧେ, ଜୟ ରାଧେ !

□□□

# ଲଡ଼୍ଡ଼ୁ

ଚୌଧୁରୀବଜାରର ଡେଉଁଠିବା ମାତ୍ରକେ ପରେଶବାବୁ ଆଉ ବାଁ ଆଡ଼କୁ ମୁହଁ କରନ୍ତି ନାହିଁ । ବଜାରଥିଲାକି ଜୋରରେ ଚଲେଇ ବେଗେ ବେଗେ ପାଦୁଣ୍ଡ ପକାଇ ଡାହାଣ ଆଡ଼କୁ ଅନେଇ ଅନେଇ ଚାଲିଯାଆନ୍ତି । ଦେଖିଲେ ମନେହୁଏ ବାଁ ପାଖରେ ବୋଧହୁଏ ରକ୍ତ ପଡ଼ିଚି ! ମ୍ୟୁନିସିପାଲିଟି ବଜାର ନିକଟ ହେଲେ ଯାଇ ସେ ମୁହଁ ଫେରାନ୍ତି । ଆଜି କିନ୍ତୁ ଗୋଟାଏ ଗରୁ ଶିଙ୍ଗ ବାଗେଇ ହଠାତ୍ ମାଡ଼ିଆସିବାରୁ ସେ ଚମକପଡ଼ି ଚାହିଁଛନ୍ତି କି ନାହିଁ, ଗୋଟାଏ ପ୍ରକାଣ୍ଡ ଷଣ୍ଢ ଫଁ-ଫଁ କରି ମାଡ଼ିଆସିଲା । ପରେଶବାବୁ ପ୍ରାଣଭୟରେ ସେହି ଦୋକାନ ଉପରକୁ ଉଠିଗଲେ, ଉଠିପିବାକୁ ବାଧ୍ୟହେଲେ । ବଜାରିଆମାନେ ଖେଁ-ଖେଁ କରି ହସି କହିଲେ, "ଏକାମୁହାଁ ବାବୁ ଧପାଲିଚନ୍ତି, ଇସ୍ପାତ୍ରେ ଗାଈ ତାଡ଼ରହିଚି ଖିଆଲ ନାହିଁ…" ଇତ୍ୟାଦି ।

ପରେଶବାବୁଙ୍କ କାନକୁ କିନ୍ତୁ ସବୁ କଥା ଗଲାନାହିଁ । ତାଙ୍କ ଛାତି ଭିତରୁ ଅଟଡ଼ା ଖସିପଡ଼ିଲା, କାନ ଲାଲ ପଡ଼ିଗଲା । କପାଳରେ ବିନ୍ଦୁ ବିନ୍ଦୁ ଝାଳ ଫୁଟିଉଠିଲା । ଭୟରେ ନୁହେଁ, ଲୋଭରେ । ଅସହ୍ୟ ଲୋଭ । ଏହି ଲୋଭର ଦାଉ ଏଡ଼ିବା ପାଇଁ ସେ ନିଇତି ବଜାର କରି ସିବା ସମୟରେ ଏ ଦୋକାନକୁ ନ ଚାହିଁ ଶୀଘ୍ର ଶୀଘ୍ର ଚାଲିଯାଆନ୍ତି । ମ୍ୟୁନିସିପାଲିଟି ଯିବା ପାଇଁ ଅନ୍ୟ ଅନେକ ବାଟ ଅଛି; କିନ୍ତୁ ପରେଶବାବୁ ଏହି ବାଟ ଦେଇ ନ ଯାଇ ମଧ୍ୟ ରହିପାରନ୍ତି ନାହିଁ । ତାଙ୍କ ପାଦ ଘୁରିଁ ଘୁରି ଚାଲିଆସେ, ତାଙ୍କୁ ଆକର୍ଷଣ କରି ଆଣେ ସେହି ଲଡ଼୍ଡ଼ୁ । ଆଜି ଏ ଲୋଭ ଦୁର୍ଦ୍ଦମନୀୟ ହୋଇଉଠିଚି । ଲୋଭ ସହିତ ପ୍ରଥମ ଇନ୍ଦ୍ରିୟଟା ମଧ୍ୟ କିପରି ଜାଗ୍ରତ ହୋଇଚି ।

ଭାଇସ୍‌ରୟ୍ ଲର୍ଡ଼ କ୍ୟାନିଙ୍ଗ୍‌ଙ୍କ ପତ୍ନୀ ଲେଡ଼ି କ୍ୟାନିଙ୍ଗ୍ ଲୋଭରେ ପଡ଼ିଥିଲେ । କୋଉ ମୁଗର କଥା ସେ, ଲର୍ଡ଼ କ୍ୟାନିଙ୍ଗ୍ ଓ ତାଙ୍କ ପତ୍ନୀ ଗତ ହୋଇ, ବ୍ଲାକ୍‌ବେରି ବା ଷ୍ଟ୍ରବେରି ଫଳେଇ, ସେଇ ଫଳ ରୂପେ ପୁଣି ଆଉ କାହା ମଧ୍ୟରେ ପ୍ରବେଶ କରି, ସେ ଲୋକ ପୁଣି ମରି ଏହିପରି କେତେ ଜନ୍ମ ତାଙ୍କର ହୋଇଗଲାଣି । ବ୍ରିଟିଶ ରାଜତ୍ୱ ଯାଇ ଭାରତ ସ୍ୱାଧୀନ ହେଲାଣି; କିନ୍ତୁ ଲେଡ଼ି କ୍ୟାନିଙ୍ଗ୍ ଅମର ରହିଗଲେ ତାଙ୍କର ଲୋଭ ପାଇଁ । ତାଙ୍କର ଅର୍ଥର ଅଭାବ ନ ଥିଲା; ତେଣୁ ଗୋଟିଏ ପ୍ରକାରର ମିଷ୍ଟାନ୍ନ ଲୋଭରେ ପଡ଼ି ସେ ସେହି ମିଷ୍ଟାନ୍ନ ପ୍ରଚୁର ପରିମାଣରେ କିଣି ଖାଇବାକୁ ଲାଗିଲେ । ତାଙ୍କର ନାମାନୁସାରେ ସେ ମିଠେଇର ନାଁ ହେଲା ଲେଡ଼ି କ୍ୟାନିଙ୍ଗ୍ ବା ଲେଡ଼ିକେନି ।

ପରେଶବାବୁଙ୍କ ଲୋଭ ପାଇଁ ସେ ଅମର ହୋଇପାରିବେ ନାହିଁ । ଭାଇସ୍‌ରୟ୍ ବା ପ୍ରେସିଡ଼େଣ୍ଟ ତ ଛାଡ଼ନ୍ତୁ, ସାମାନ୍ୟ ହେଡ଼୍ କରଣି ବି ସେ ନୁହନ୍ତି । ପଚିଶ ଟଙ୍କା ଦରମାରେ

ଅଦାଲତ କରୁଣି ସେ । ତାଙ୍କର ବଜେଟ୍ ଭିତରେ ଯେଉଁ ସାମାନ୍ୟ କେତୋଟି ଡିପାର୍ଟମେଣ୍ଟ ଅଛି, ସେମାନଙ୍କ ଭିତରେ ଉପନେନ୍ଦ୍ର ସ୍ବର କୌଣସି କାର୍ଯ୍ୟ ନାହିଁ । ଜଉ ଅଛି ତାଙ୍କର କେବଳ ନେହୁରା ହବାପାଇଁ—ସେ ସ୍ତ୍ରୀ ପାଖରେ ହେଉ ବା ହାକିମଙ୍କ ପାଖରେ ହେଉ, ମହାଜନ ପାଖରେ ହେଉ ବା ଭଗବାନଙ୍କ ପାଖରେ ହେଉ; ଅବଶ୍ୟ ସେ ନେହୁରାର ଫଳ ସବୁଠି ସମାନ ।

ଧର୍ମପତ୍ନୀଙ୍କ ହୁକୁମ, ପ୍ରତ୍ୟହ ବଜାର ଆଠଅଣାରୁ ବେଶି ହବ ନାହିଁ ଏବଂ କଅଣ କଅଣ କିଣାହେବ, ସେ ବରାଦ କରିବାର ଅଧିକାର ମଧ୍ୟ ଧର୍ମପତ୍ନୀଙ୍କର ଏକଚାଟିଆ । ଯେଉଁ ତାଲିକା ସେ ଦିଅନ୍ତି, ସେ ସବୁ କିଣି ଗୋଟିଏ ପଇସା ମଧ୍ୟ ପାନ ପାଇଁ ବାହାର କରିବା ଦୁଃସାଧ୍ୟ । ଥରେ ସେ ଦୋକାନୀକୁ ସଜନା ଶାଗ ଦାମ୍‌ରୁ ଗୋଟିଏ ପଇସା କାଟିବା ପାଇଁ ନେହୁରା କରିଥିଲେ: କିନ୍ତୁ ଯେଉଁ ଅପମାନ ଦୋକାନୀ ସେଦିନ ତାଙ୍କୁ ଦେଇଥିଲା, ତା ପରଠୁଁ ସେ ଆଉ କେବେହେଁ ଦାମ୍ କାଟିବାକୁ ଚେଷ୍ଟା କରିନାହାନ୍ତି । ଆଉ ଥରେ ସେ ତାଲିକାରେ ଥିବା କୋଶଳା ଶାଗ ଯେଉଁ ଜାଗାରେ ଦନ ପା' ଶାଗ ଆଣି ଦୁଇଟି ପଇସାର ଗୋଟିଏ ସିଗାରେଟ କିଣି ମନ ଆନନ୍ଦରେ ଧୂଆଁ ଗ୍ରୁଡ଼ି ଗ୍ରୁଡ଼ି ଘରକୁ ଫେରିଥିଲେ, କିନ୍ତୁ ସେ ଦିନ ଘରେ ଯାହା ଘଟିଥିଲା ତା' ପରେ ସେ ଚେଷ୍ଟା ମଧ୍ୟ ସେ ଗ୍ରୁଡ଼ିଛନ୍ତି । ଧର୍ମପତ୍ନୀ ସେ ଦିନ ଶାଗର ପରିମାଣ ଦେଖି ସନ୍ଦେହ କରି ପଡ଼ିଶାଘରୁ ସେରତରାଜୁ ଆଣି ଓଜନ କରିସାରିବାପରେ ଯେଉଁ ସବୁ ବାକ୍ୟବାଣ ମାରିଥିଲେ ଯେଥିରେ ପରେଶବାବୁ ଅତି କ୍ଷୋଭ ଓ ଦୁଃଖରେ ମନେ ମନେ ହସି କହିଥିଲେ, ହାୟ୍ କବିମାନେ ଖାଲି ନୟନବାଣ କଥା ଲେଖିଯାଇଛନ୍ତି ।

ପରେଶବାବୁ ଦୋକାନ ଉପରକୁ ଉଠିଯାଇ ସେଇ ଲଡ୍‌ଡ଼ୁ ଆଡ଼େ ଚାହିଁଲେ । ମଟରରୁ ଓହ୍ଲାଇ ଜଣେ ଭଦ୍ରଲୋକ ସେ ଲଡ୍‌ଡ଼ୁରୁ ସେରେ କିଣି ନେଇ ମଟରରେ ବସିଥିବା ଜଣେ ଭଦ୍ରମହିଳାଙ୍କ ହାତକୁ ବଢ଼ାଇଦେଲେ । ଭଦ୍ରମହିଳାଙ୍କ ଆଖି ଓ ପାତଳା ଓଠରେ ଆନନ୍ଦ ଖେଳିଗଲା । ପରେଶବାବୁ ତରତର ହୋଇ ଦୋକାନରୁ ଖସିଯିବାକୁ ବାହାରିଲେ; କିନ୍ତୁ ପାଦ ତାଙ୍କର ଆଗେଇଲା ନାହିଁ । ଆଖି ତାଙ୍କର ସେହି ମିଠେଇରେ ଲାଗି ରହିଲା । ମିଠାଇର ବାସନାରେ ନାକପୁଡ଼ିଆ ତାଙ୍କର ବାରମ୍ବାର ଫୁଲିଉଠିଲା ।

ବାବୁ, କଅଣ ଦେବି ? ଦୋକାନୀ ପଚାରିଲା ।

ନା, ସେ ଘଣ୍ଟା ମାରିଗୋଡ଼ାଇଲା ଯେ···

ସେଟା ଗଲାଣି···

ଏହା ପରେ ଦୋକାନରେ ଆଉ ରହିବାର କାରଣ ନାହିଁ; କିନ୍ତୁ ଦୋକାନରୁ ଗ୍ରୁଲି ମଧ୍ୟ ଯାଇପାରି ନାହାନ୍ତି । ଏମିତି କିଛି ନୂତନ ପ୍ରକାର ମିଠାଇ ନୁହଁ, ସେଇ ହଳଦିଆ ବୁନ୍ଦିଆରେ ଗୋଲ ଲଡ୍‌ଡ଼ୁ । କେବଳ ମଝିରେ ମଝିରେ ଗୋଟିଏ ଲାଲ ଓ ଗୋଟିଏ ଗୋଟିଏ ସବୁଜ ରଙ୍ଗର ବୁନ୍ଦିଆ ଦାନା ଓ ଲଡ୍‌ଡ଼ୁ ଉପରେ ଗୋଟିଏ ସୁନ୍ଦର

ବଡ଼ କ୍ରୀମ୍ ଓ କଚ୍ଚ ପେସ୍ତା । ଏହି ରଙ୍ଗର ସମାବେଶ ଏପରି ସୁନ୍ଦର ଭାବରେ କରା-ହୋଇଛି ଯେ ସେ ସମସ୍ତ ଲଡ଼୍ଡୁଟିର ଆକର୍ଷଣୀ ଶକ୍ତି ଦୁଗୁଣ ହୋଇପଡ଼ିଛି । ସେଥିରେ ପୁଣି ଏହି ମିଠାଇଟିର ଥାଳଟି ଯେପରି ସାଧାରଣତଃ ଗୁଡ଼ିଆ ଦୋକାନ ଆଲମାରିରେ ମିଠାଇ ଥାଳ ସବୁ ସଜା ହୋଇ ରହିଥାଏ ସେପରି ଭାବରେ ସଜାହୋଇନାହିଁ; ଗୋଟିଏ ବେଢ଼ଂ-ସୁଦୃଶ୍ୟଚିତ୍ରିତା, ସୁପୁଷ୍ଟକଟିମ୍ବିନୀ ନାରୀ, ଥାଳଟି ତାର ବେନି ଘନ ବକ୍ଷ ନିକଟରେ ଧରି ଥାଳଟି ଅର୍ପଣ କରିବା ଭଙ୍ଗୀରେ କାଚ ଆଲମାରି ମଧ୍ୟରେ ଛିଡ଼ା ହୋଇ ରହିଛି ।

ପରେଶବାବୁ ଘନ ଘନ ଦୁଇ ତିନି ଥର ସିଆଡ଼େ ଚାହିଁ ଦୋକାନରୁ ଓହ୍ଲାଇ ଯିବାକୁ ବସିଲେ । ତା'ପରେ ମନେହେଲା କାଚ ଆଲମାରି ମଧ୍ୟରୁ ଯେ ନାରୀମୂର୍ତ୍ତି ଖିଲଖିଲ ହସି କହୁଛି, ଆସନ୍ତୁ ନା । ପରେଶବାବୁଙ୍କ କାନ ଲାଲ ପଡ଼ିଗଲା । ଆଉ ଜଣେ ଭଦ୍ରଲୋକ ସେଇ ମିଠାଇ କିଣି ନେଇଗଲେ । ପରେଶବାବୁଙ୍କର ମନେହେଲା ମିଠାଇ ଯେପରି କହୁଛି ନାହଂ ଧନସ୍ଥାନେନ ଲଭ୍ୟ । ସେ ଦୋକାନରୁ ବାହାରି ଆସି ପାହାଚ ଉପରେ ଛିଡ଼ାହେଲେ । ଅଦୂରରେ ରାସ୍ତା ଉପରେ ଗାଈଟି ଅପେକ୍ଷାରେ ନୀରବରେ ଛିଡ଼ା ହୋଇ ରହିଛି ଏବଂ ଷଣ୍ଢଟି ବାରମ୍ବାର ତାର ଗ୍ରୀବା ଲେହନ କରୁଛି ଏବଂ ମଝିରେ ମଝିରେ ହମ୍ବାରୁ ବ୍ୟସ୍ତ ହୋଇପଡ଼ୁଛି । ପରେଶବାବୁ କଣେଇ ସେଆଡ଼େ ଥରେ ଚାହିଁ ପୁଣି ଦୋକାନ ଭିତରେ ଥିବା ସେଇ ମିଠାଇଥାଳଟିକୁ ଚାହିଁଲେ । ଆଉ ଲୋଭ ସମ୍ଭାଳି ନ ପାରି ସେ ଦୋକାନ ଉପରକୁ ଉଠିଯାଇ ପଚାରିଲେ, ଇୟା ଦାମ୍ କେତେ ?

—କାହାର, 'ଦଲମୋହନୀ' ? ଛ' ଟଙ୍କା ।

ପରେଶବାବୁ ଅପ୍ରସ୍ତୁତ ଭାବରେ କହିଲେ—ନାଁ, ମୁଁ ଗୋଟି ପଚାରୁଥିଲି ।

ଗୋଟିକୁ ଛ' ଅଣା ।

ଦାମ୍ ଶୁଣି ପରେଶବାବୁ ମୁହଁ ମେଲା କରି ଚାହିଁ ରହି ଭାବିବାକୁ ଲାଗିଲେ ।

ଛ'ଅଣା ! ଦୁଇଅଣା ହୋଇଥିଲେ ବା ସେ ଦୋକାନୀକୁ ନେହୁରା-ନେହୁରି କରି କିଛି ଦାମ୍ କଟାକଟି କରାଇ ପାରନ୍ତେ । ଛ' ଅଣା ! ସେତକ ସେ କେଉଁଠୁ ଯୋଗାଡ଼ କରିବେ ! ଅସମ୍ଭବ । ଛିଃ ।

ଆଉ ଜଣେ ଦୁଇ ସେର 'ଦଲ୍‌ମୋହନୀ' ନେଇଗଲେ । ପରେଶବାବୁ ଆଲମାରି ଭିତରକୁ ଚାହିଁଲେ । ନିତମ୍ବିନୀର ଥାଳରେ ଆଉ ଅଳ୍ପ କେତୋଟି ମିଠେଇ ପଡ଼ିରହିଛି । ନିତମ୍ବିନୀ ବକ୍ଷୋଷ୍ଟରେ ଓ ଏର୍ଣ୍ଣାନନରେ ଆହ୍ଵାନର ହାସ୍ୟ । ପରେଶବାବୁ ମୁହଁ ଫେରାଇ ନେଇ ଅନ୍ୟ ଆଡ଼େ ଚାହିଁଲେ । ଷଣ୍ଢ ସଫଳତା ଲାଭ କରିଛି ।

ପରେଶବାବୁ ମନ ଭିତରେ ବୈରାଗ୍ୟ ଆଣିବାକୁ ଚେଷ୍ଟାକଲେ ।

...ଏକଦା ସଂମୁକ୍ତ ଓ ତୁଲ୍ୟନାମବିଶିଷ୍ଟ ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷର ଆଶ୍ରୟ ନେଇଅଛନ୍ତି । ସେମାନଙ୍କ ମଧ୍ୟରୁ ଗୋଟିଏ ବିଚିତ୍ର ଆସ୍ଵାଦଯୁକ୍ତ ଫଳ ଭକ୍ଷଣ କରେ ଏବଂ

ଅପରଟି ଭକ୍ଷଣ ନ କରି କେବଳ ଦର୍ଶନ କରେ । ଏହି ଦେହବୃକ୍ଷରେ ଜୀବ କମଗ୍ନ ରହି ମୋହ ହେତୁ ଶୋକ କରିଥାଏ । ଯେ ଯେତେବେଳେ ବିଶ୍ୱବ୍ୟାପୀ ପରମାତ୍ମାଙ୍କୁ ହୃଦୟଙ୍ଗମ କରେ, ସେତେବେଳେ ସଂସାର ଅତିକ୍ରମ କରେ ।

...ପୃଥିବୀରେ ଯେତେ ଜୀବ ସୃଷ୍ଟି ହୋଇଛନ୍ତି, ସମସ୍ତଙ୍କ ଦେହରେ ପରମେଶ୍ୱର ଅଛି; କିନ୍ତୁ ଅନ୍ୟାନ୍ୟ ଜୀବମାନଙ୍କଠାରେ ପରମେଶ୍ୱରର ଆକର୍ଷଣୀ ଶକ୍ତି ବୋଧ କରିବାପାଇଁ ଚିନ୍ତା ଶକ୍ତି, ବୁଦ୍ଧି ବା ଇଚ୍ଛା ନାହିଁ । ମନୁଷ୍ୟ କିନ୍ତୁ ପରମେଶ୍ୱରର ଶକ୍ତି ବିଷୟରେ ଯୁକ୍ତ କରିବାର ଇଚ୍ଛା ପାଇଛି ଏବଂ ସେହି ଇଚ୍ଛା ଚରିତାର୍ଥ କରିବା ପାଇଁ ଧର୍ମ, ଦର୍ଶନ ଓ ଆଦର୍ଶ ସୃଷ୍ଟି କରିଛି । ସବୁର ଜୀବନଧାରଣ ସହିତ କୌଣସି ସମ୍ପର୍କ ନାହିଁ; ତେଣୁ ଏସବୁ ମିଥ୍ୟା କୁହାଯାଇପାରେ, କିନ୍ତୁ ଏ ମିଥ୍ୟାରେହିଁ ମନୁଷ୍ୟତ୍ୱ ନିହିତ । ଏହି ମିଥ୍ୟାନିହିତ ବସ୍ତୁ ପାଇବାର ଇଚ୍ଛାଦ୍ୱାରା କ୍ରମବିକାଶ-ନିୟମାନୁସାରେ ମନୁଷ୍ୟ ଦିନେ ଦେବତା ନ ହେବ, କିଏ କହିପାରେ ! ଏହି ଆଦର୍ଶ ଅନୁସାରେ ଆମର ଅର୍ଥନୀତି, ଅର୍ଥନୀତି କାହିଁକି ଶିକ୍ଷା, ଶାସନ ସବୁ ଗୁଳିତ ହେବା ଉଚିତ, କିନ୍ତୁ ବର୍ତ୍ତମାନ ତାର ଠିକ୍ ଓଲଟା ହେଉଛି । ମନୁଷ୍ୟ କିପରି ବେଶି ରୋଜଗାର କରିବ ସେହି ଲକ୍ଷ୍ୟାନୁସାରେ ଶିକ୍ଷା, ଶାସନ, ଅର୍ଥନୀତି ଗ୍ଳିଛି... ସାଂସାରିକ ଦୃଷ୍ଟିରୁ ଦେଖିବାକୁ ଗଲେ ମଧ୍ୟ ମୋର ଏ ମିଠାଇ ଖାଇବା ଅନ୍ୟାୟ । ମୋର ସଂସାରର ସମସ୍ତଙ୍କର ଲୋଭ ଚରିତାର୍ଥ କରିବାର ଭାର ମୋ ଉପରେ । ମୁଁ ଯଦି ଲୋଭରେ ପଡ଼ି ମୋ ଲୋଭ ଚରିତାର୍ଥ କରେ, ତେବେ ମୁଁ ଖାଲି ଯେ ଅନ୍ୟାୟ କରିବି ତା ନୁହେଁ, ବ୍ୟଭିଗ୍ରୀ ମଧ୍ୟ ହେବି । ସରକାର ଯଦି ଲୋଭରେ ପଡ଼େ, ତେବେ ସେ ରାଜତନ୍ତ୍ର ହେଉ ବା ଗଣତନ୍ତ୍ର ହେଉ ବା ସମାଜବାଦୀ ହେଉ ବା କମ୍ୟୁନିଷ୍ଟ ହେଉ, ସେ ସରକାର ବ୍ୟଭିଗ୍ରୀ...।

ପରେଶବାବୁ ଅନେକ ବହି ପଢ଼ିଛନ୍ତି ଓ ଅନେକ କଥା ଜାଣନ୍ତି । ତାଙ୍କର ଚିନ୍ତା-ଶକ୍ତି ମଧ୍ୟ ଅଛି; କିନ୍ତୁ ଶୁଷ୍କ ଚିନ୍ତା ଓ ବିଶ୍ଳେଷଣ ତାଙ୍କର ଏକ ଦିଗରେ ଗ୍ଳିଲା ଏବଂ ତା ସହିତ ଲୋଭ ମଧ୍ୟ ଅନ୍ୟ ଦିଗରେ ଗ୍ଳିଲା । ଚିନ୍ତା କରୁ କରୁ ହଠାତ୍ ତାଙ୍କ ମନରେ ପ୍ରଶ୍ନ ଜାଗିଲା, ଏ ପରମାତ୍ମା ଲୋଭ, ନୈରାଶ୍ୟ ବା ଅକ୍ଷମତାଜନିତ ବୈରାଗ୍ୟରୁ କଅଣ ଲଭ ହୁଏ ?

ଆଉ ଜଣେ ଭଦ୍ରଲୋକ ସେରେ 'ଦଲମୋହନୀ' ନେଇଗଲେ, ମାତ୍ର ଦୁଇଟି ପଡ଼ି ରହିଛି । ଆଉ ସମୟ ନାହିଁ । ଦର୍ଶନ ଓ ବିଶ୍ଳେଷଣର ବେଳ ନାହିଁ । ଶୀଘ୍ର, ଅତି ଶୀଘ୍ର କିଛି ବ୍ୟବସ୍ଥା କରିବାକୁ ହେବ ।

ପରେଶବାବୁ ପୁଣି ଦୋକାନ ପାହାଚ ଉପରକୁ ଉଠିଲେ । ଦର୍ଶନ ବିଶ୍ଳେଷଣ ପରିବର୍ତ୍ତେ ଭୟରେ ତାଙ୍କର ପାଦ ଆଉ ଚଳିଲାନାହିଁ । ଏହାପରେ ଶୂନ୍ୟ ଥଳିରେ ଘରକୁ ଫେରିଗଲେ ଯାହା ଅବସ୍ଥା ହେବ, ସେହି ଦୃଶ୍ୟ ତାଙ୍କ ଆଖି ସାମନାରେ ଖେଳିଗଲା ।

…ନାଃ, ଦରିଦ୍ରର ଏ ଅଧିକାର ନାହିଁ । ଦରିଦ୍ର ପାଇଁ ଅଛି ଆତ୍ମା, ପରମାତ୍ମା, ଧର୍ମ, ତ୍ୟାଗ, ସଂଯମ । ସରକାର ଯେତେ ଉପଦେଶ ଦେଉଛନ୍ତି, ସେ ସବୁ ତ ଆମରି ପାଇଁ ! ଆମେ ଟିକିଏ ଲୋଭରେ ପଡ଼ି କିଛି କଲେ ତ ଉପଦେଶ, ପୁଲିସ୍, ଶାସନ ଆମରି ଉପରେ ଅଜାଡ଼ି ପଡ଼ୁଚି । ନାଃ, ସଂଯମହିଁ ଆମର ଭଲ । ଆମରି ସଂଯମ ଉପରେ ତ ସରକାର ପ୍ରତିଷ୍ଠିତ । ଉପରେ ଜଣେ ଦୁଇଜଣ ଅସଂଯମୀ ହେଲେ କିଛି ଯାଏଆସେ ନାହିଁ । ତଳେ ଆମେ ଯଦି ଅସଂଯମୀ ହେବା…

ଜଣେ ଭଦ୍ରଲୋକ ତାଙ୍କୁ ଠେଲି ଭିତରକୁ ପଶିଯାଇ କହିଲେ, ଧଳ୍‌ମୋହିନୀ ଗୋଟେ…

ଆଲମାରି ଭିତରକୁ ଗ୍ଢହିଁ ପରେଶବାବୁ ଦେଖିଲେ ନାତମ୍ବ୍ରିମାର ଘନବକ୍ଷ ନିକଟରେ ଆଉ ଗୋଟିଏ ମାତ୍ର "ଧଳମୋହିନୀ" । ତାଙ୍କର ଆଉ କାଣ୍ଡଜ୍ଞାନ ରହିଲ ନାହିଁ । ସବୁ ଦର୍ଶନ, ସବୁ ଚିନ୍ତା କୁଆଡ଼େ ଖସିଗଲା । ଦୋକାନ ଭିତରକୁ ପଶିଯାଇ ଗୋଟିଏ ଚୌକିରେ ବସିପଡ଼ି କହିଲେ, "ମୋତେ ବ ଗୋଟିଏ ।"

କେହି ନାହାନ୍ତି ତାଙ୍କ ଆଦେଶ ଶୁଣିବା ପାଇଁ । କିଛି କ୍ଷଣ ଅପେକ୍ଷା କଲେ ସେ । ତଥାପି କେହି ଆସିଲେ ନାହିଁ । ପୁଣି ଦ୍ୱିଧାରେ ପଡ଼ିଲେ ପରେଶବାବୁ । ଅସହ୍ୟ ଏ ଦ୍ୱିଧା ।

କେଉଁ ନାଗର ଲଲ ଦୋପଟ୍ଟ । ଉଡ଼ିଯାଉଚି, ସେ ଆନନ୍ଦରେ ଚିତ୍କାର କରି ସମସ୍ତଙ୍କୁ ଏ ବିଷୟ ଜଣାଇ ଗାଉଚି, ମେରେ ଲଲ୍ ଦୋପଟ୍ଟା ଉଡ଼୍‌ଯାଏ…ଦୋକାନୀ ମଶ୍‌ଗୁଲ୍ ହୋଇ ତାହା ଶୁଣୁଚି । ପରେଶବାବୁ ମଧ୍ୟ ଗୀତ ଶୁଣିବାକୁ ଲଗିଲେ । ଶୁଣୁ ଶୁଣୁ ତାଙ୍କର ଚିନ୍ତା ସେଆଡ଼େ ଗ୍ଢଲିଗଲା…ଧନ୍ୟରେ ବମ୍ବେଇ ଫିଲମ୍…ଧନ୍ୟରେ ଆଧୁନିକା !! କେଲା ଯେମିତି ମାଙ୍କଡ଼କୁ ନଚେଇବା ସମୟରେ କୁହେ, ବାବୁଙ୍କୁ ପେଟ ଦେଖେଇଥା, ପଇସା ଦେବେ, ସେମିତି ଏ ନାଗୀ ପିଲ୍ଲ ହଲେଇ, ପେଟ-ଫେଟ ଦେଖେଇ ପଇସା ଟାଣୁଚି । ସରକାରଙ୍କର ଏଥିପ୍ରତି ତ ଦୃଷ୍ଟି ନାହିଁ…ମନୁଷ୍ୟତ୍ୱ ଯୁଆଡ଼େ ଯାଉ ପରବାଏ ନାହିଁ । ପଇସା ରୋଜଗାର କର, ଜାତୀୟ ଧନ ବଢ଼ାଅ…ଏହି ଲକ୍ଷ୍ୟ । ଏକଆଡ଼େ କାମ, ଲୋଭ ଆଦି ଚରିତାର୍ଥ କରିବାର ଉପାୟ ବଢ଼ିବାରେ ଲଗିଚି, ଅନ୍ୟଆଡ଼େ ସେ ସବୁ ତ୍ୟାଗ କରିବାର ଉପଦେଶ ମଧ୍ୟ ଅଜାଡ଼ି ପଡ଼ୁଚି ଶିକ୍ଷା, ବକ୍ତୃତାରେ । ମଣିଷ ମଲ ତ ଦ୍ୱିଧାରେ ପଡ଼ି !

ଆଉ ଜଣେ ପ୍ରବେଶ କରି ଚୌକିରେ ବସିଲେ ତାଙ୍କ ପାଖରେ । ତାଙ୍କ ମୁହଁରୁ 'ଧ' ବାହାରିଚି କି ନାହିଁ ପରେଶବାବୁ ସମାଜଚିନ୍ତା ତ୍ୟାଗକରି ଉତ୍କ୍ଷିପ୍ତ ଭାବରେ ଚିତ୍କାର କରି କହିଲେ, ମୁଁ କେତେବେଳୁ ଗୋଟାଏ ଧଲ୍‌ମୋହିନୀ ମାଗୁଚି, କେହି ଶୁଣିବାକୁ ନାହିଁ ।

ତାଙ୍କ ଚିତ୍କାରରେ ଦୁଇ ତିନି ଜଣ ଧାଇଁ ଆସି ତରବର ହୋଇ ଆଲମାରିରୁ ଧଳମୋହିନୀ' ବାହାର କରି ତାଙ୍କ ଆଗରେ ଥୋଇଲେ । ପରେଶବାବୁ ତରବର ହୋଇ

ହେଟକ ଖାଇଦେଇ ଦେବଦାମ୍ନୀ ହାମନାରେ ପଇସା ପକେଇ ଦେଇ ବାହାରିଆସିଲେ । ନାନା ବରୁଦ୍ଧାତ୍ମକ ଚନ୍ତା, ଇଚ୍ଛା, ଅନିଚ୍ଛା ଇତ୍ୟାଦି ଭିତରେ ପଡ଼ି ସେ ଏତେ ଅଧୀର ହୋଇପଡ଼ିଥିଲେ ଯେ 'ଦିଲ୍ ମୋହିନୀ' ଯେ କେବଳ ଖାଇଲେ , କିନ୍ତୁ କିଛି ଆସ୍ୱାଦ ପାଇଲେ ନାହିଁ । ଏତେବେଳଯାଏ ସେ ପ୍ରାୟ ଅଚେତ ଥିଲେ କହିଲେ ଚଳେ ।

ବାହାରକୁ ଆସି ତାଙ୍କ ଚେତା ପଶିଲା । ବଜାର ଗଳିଆଡ଼େ ଗୁହିଁଲେ । ଆଉ ମାରକେଟ ଆଡ଼େ ନ ଯାଇ ବନାରସି ଖିଲିପାନ ଦୋକାନରୁ ଗୁରି ପଇସା ଦେଇ ଗୋଟିଏ ଖିଲିପାନ ଓ ଗୁରି ପଇସା ଦେଇ ଗୋଟିଏ ସିଗାରେଟ୍ କିଣି ସେ ଘରଆଡ଼କୁ ଗୁଲିଲେ । ପାଦ କିନ୍ତୁ ତାଙ୍କର ଚଳିଲା ନାହିଁ । ହେଲେ ଉପାୟ ନାହିଁ । ଦୋକାନ ଘଣ୍ଟାରେ ଦେଖିଲେ ଦଶ ବାଜିଛି । ସ୍ତ୍ରୀ-ଭୟଠୁ ଗୃହକର-ଭୟ ପ୍ରବଳତର ହୋଇଉଠିଲା । ଶୀଘ୍ର ଶୀଘ୍ର ପାଦ ପକେଇ ସେ ଗୁଲିଲେ ।

କି କୈଫିୟତ ଦେବେ ଘରେ ? ସେ କିଛି ଭାବି ସ୍ଥିର କରି ପାରିଲେ ନାହିଁ । ଥରେ ଭାବିଲେ ଆଉ ଘରକୁ ଯିବେ ନାହିଁ, ସିଧା ଷ୍ଟେସନ ଯାଇ ପଳେଇଯିବେ ହରଦ୍ୱାର ; ସନ୍ନ୍ୟାସୀ ହେବେ । ଷ୍ଟେସନ ଆଡ଼େ କିଛିଦୂର ଗଲେ ବି ଗୁଲି; କିନ୍ତୁ ମନ ତାଙ୍କର ବଳିଲା ନାହିଁ । ପୌରୁଷକୁ ତାଙ୍କର ବାଧିଲା । କାହା ଭୟରେ ସେ ସନ୍ନ୍ୟାସୀ ହେବେ, କାହିଁକି ?

ପରେଶବାବୁ ଫେରି ପୁଣି ଘରଆଡ଼େ ପାଦ ଚଳାଇଲେ । ଘର ଅଳ୍ପ ବାଟ ଅଛି, ଗତି ତାଙ୍କର ଶିଥିଳ ହୋଇଆସିଲା । କିଛିକ୍ଷଣ ଛିଡ଼ାହୋଇ ସେ ଉପାୟ ଭାବିବାକୁ ଲାଗିଲେ ।

...ହଁ । ବାଃ, ଠିକ୍ ଏଇ ଠିକ୍ ଉପାୟ, ଏକୁ ସନ୍ଦେହ ଯିଏ କରିବ ସେ ହ୍ୟାପ୍ ପାଳି ! ମନେ ମନେ ସେ ହେଣ୍ଡିଟାଏ ମାରିଦେଲେ ।

ଗୋଟାଏ ଗଳି ଭିତରକୁ ଯାଇ ପରେଶବାବୁ ଏପଟ ସେପଟ ଗୁହିଁ ଦେହରୁ କମିଜ ଓହ୍ଲାଇ କମିଜର ପିଠିପଟରେ କିଛି ନର୍ଦ୍ଦମା କାଦୁଅ ବୋଳିଦେଲେ ଏବଂ କମିଜଟି ପୁଣି ପିନ୍ଧି ଘରକୁ ଗଲେ ।

ଘରେ ପଶୁ ନପଶୁଣୁ ସେ ପାଟିକରି ଡାକିଲେ, ବୋଉ, ଦୋଉ ମ ...

ସେ 'ବୋଉ' ଡାକରେ ସେ ଯଥାସମ୍ଭବ ଭୟ ଓ ହତାଶ ଫୁଟେଇଲେ ।

ଜନନୀ ବ୍ୟସ୍ତହୋଇ ଠାକୁରପୂଜା ପାଖରୁ ବାହାରି ଆସି କହିଲେ, କରେ ପରି, ଏମିତି କାହିଁ ଡାକୁଚୁ ! କଅଣ ହେଲା କରେ ?

—ଆଉ କଅଣ, ବଞ୍ଚିଗଲି କହ । ପଙ୍ଖାରେ ଟିକିଏ ବର୍ତ୍ତିଦେଲୁ ମୋତେ...

—ଇଲୋ...ମୋର ପୁଅର କଅଣ ହେଲା ଲୋ... ଏ ବୋହୂ, ଟିକିଏ ବଞ୍ଚଣାଟା ଆଣ, ଇରେ ଗୋଟିଯାକ କାଦୁଅ କେମିତି ହେଲୁରେ...

—କହୁଚ, ଆଗେ ଟିକିଏ ପଙ୍ଖା କରିଦେ, ଦମ୍ ମାରେ ..

ଜନନୀ ବ୍ୟସ୍ତ ହୋଇ ପଙ୍ଖା ଆଣି ବିଞ୍ଚିବାକୁ ଲାଗିଲେ ।

ଗୋଟିଏ ଦୁଇଟା ଦୀର୍ଘଶ୍ୱାସ ମାରି, ମୁଣ୍ଡରେ ପାଣିଦେଇ ଗାମୁଛାରେ ପୋଛି ବୋହୂ ଦେହକୁ ଆଉଜି ପଡ଼ି ପରେଶବାବୁ କହିଲେ, "ବଜାର କରି ଫେରୁଥିଲି । ଗୋଟାଏ ଷଣ୍ଢ କଅଣ କଲା ନା, ପଛରୁ ଧାଇଁଆସି ମୋ ଥଳିରୁ ଖଡ଼ାଯାକ ଟାଣି ନେଇଗଲା, ଥଳିଟା ମୋ ହାତରୁ ପଡ଼ି ପରିବାତକ ବିଞ୍ଛି ଗଲା । ଆଉ ଦୁଇଟା ଷଣ୍ଢ, ଦୁଇଟା ଗାଈ, ଦୁଇଟା ବାଛୁରି କେଉଁଠି ଥିଲେ ଦଉଡ଼ିଆସିଲେ ପରିବା ଖାଇବାକୁ···(କହିଦେଇ କିନ୍ତୁ ତାଙ୍କର ସନ୍ଦେହ ହେଲା, ସଂଖ୍ୟାଟା ବୋଧହୁଏ ବେଶୀ ହୋଇଗଲା, ଆଉ ସଂଖ୍ୟାର ସାମଞ୍ଜସ୍ୟଟା ବି ଅବାସ୍ତବ ହେଲା ! )

କିନ୍ତୁ ସୁଧାରିନେବାର ଆଉ ବାଟ ନାହିଁ । ସେ ସେମିତି କହିଚାଲିଲେ, ମୁଁ ସେମାନଙ୍କୁ ଘଉଡ଼ାଇଦେବା ପାଇଁ ଟେଙ୍ଗା ଉଠାଇଲାବେଳେ ଗୋଟିଏ ଷଣ୍ଢ ତ ଭୁଷି ଦେଲା ମୋତେ ! ମୁଁ ତ ତଳେ ପଡ଼ିଗଲି । ଏତିକିବେଳେ ଗୋଟାଏ ମୋଟର ତ ଠିକ୍ ଆସି ମୋ ଗୋଡ଼ ମାଡ଼େନମାଡ଼େ···ତୋ ଆଶୀର୍ବାଦରୁ ବଞ୍ଚିଗଲି···

ଜନନୀ ଏକଥା ଶୁଣି ଅଧୀର ଭାବରେ କାନ୍ଦିପକାଇଲେ । ଦଉଡ଼ି ଯାଇ ଠାକୁରଙ୍କ ପାଖରୁ ସେତେକ ଫୁଲ, ବେଲପତ୍ର ଓ ପାଦୁକ ଆଣି ପୁଅ ମୁଣ୍ଡ ଉପରେ ଅଜାଡ଼ିଦେଲେ ।

ସ୍ତ୍ରୀ ସବୁ ଶୁଣି ଗମ୍ଭୀର ଭାବରେ ସନ୍ଦିଗ୍ଧ ଦୃଷ୍ଟିରେ ଚାହିଁ ପଚାରିଲେ, "ସତ କହୁଚ···? କହିଲେ କଅଣ ନା, ଦୁଇଟା ଷଣ୍ଢ, ଦୁଇଟା ଗାଈ ଦୁଇଟା ବାଛୁରି···ସବୁ ଦି' ଦିଟା·· ମନ ରହିଗଲା···କଅଣ କୁହନ୍ତି···

ପରେଶବାବୁ ଚିତ୍କାର କରି କହିଲେ—ଦେଖୁଚୁ, ଦେଖୁଚୁ ବୋଉ, ଦେଖୁଚୁ ତୋ ବୋହୂକୁ, ଟିକିଏ ଦୟାମାୟା ନାହିଁ । କିନ୍ତୁ ମନେ ମନେ କହିଲେ, ଶଳା ବଦମାସ୍ ମାଇକିନିଆର କି ବୁଦ୍ଧି ଦେଖୁଚ ! ଟିକିଏ ଗର୍ବ ବି ହେଲା ସ୍ତ୍ରୀ ପାଇଁ; କିନ୍ତୁ ଧରାପଡ଼ିଯିବାରୁ ତାଙ୍କ ରାଗ ଆହୁରି ବଢ଼ିଗଲା । ଗର୍ଜନ କରି କହିଲେ, "ଚୁପ୍ କର ବଦମାସ କାହାଁକା, ନେହିଁ ତ···।" ସ୍ତ୍ରୀ ମୁହଁ ଛଞ୍ଚାଡ଼ି ଚାଲିଗଲେ ।

ଜନନୀଙ୍କ ମୁହଁରୁ ଅନର୍ଗଳ ଗାଳି ଚାଲିଲା ବୋହୂ ଉପରେ । ପରେଶବାବୁ ମଧ୍ୟ ସେଥିରେ ଯୋଗଦେଇ କହିଲେ, ମା' ବାପଠାରୁ ବଳି ଆଉ କେହି ନାହିଁ ଦୁନିଆରେ । ସମସ୍ତେ ଶୋଷିବାକୁ ଚାହାନ୍ତି । ମୋ ଜୀବନଠୁଁ ତାର ପଇସା ବେଶି ହେଲା । ସ୍ତ୍ରୀ କଥା ତ ଛାଡ଼, ସେ ତ ସବୁଅଡ଼ୁ ଶୋଷେ ।

ଏ କଥାରେ ସ୍ତ୍ରୀଙ୍କ ଆଖିରୁ ଅଗ୍ନି ବର୍ଷିବାକୁ ଲାଗିଲା । ସେ ତରଚି ଚାହିଁ କହିଲେ, କଅଣ ଅଛି ଯେ ଶୋଷିବ, ସବୁଅଡ଼ୁ ତ ଶୁଖିଲା ।"

ପରେଶବାବୁ ଆଉ ସମ୍ଭାଳି ପାରିଲେ ନାହିଁ । ଏ ଅପମାନରେ ସେ କାଣ୍ଡଜ୍ଞାନ ହରାଇ ଦୌଡ଼ିଗଲେ ରୋଷେଇଘର ଭିତରକୁ ସ୍ତ୍ରୀଙ୍କୁ ମାରିବାକୁ । ମାରିବାପାଇଁ ହାତ ମଧ୍ୟ

ଉଠାଇଲେ; କିନ୍ତୁ ପାରିଲେନାହିଁ । ଅକ୍ଷମ କ୍ରୋଧ ତାଙ୍କର ଯାଇ ପଡ଼ିଲା ଭାତହାଣ୍ଡି ଉପରେ । ଭାତହାଣ୍ଡି ଟେକି ଆଣି ସେ ଅଗଣାରେ କଚାଡ଼ିଦେଲେ । ସ୍ତ୍ରୀ ଓଢ଼ଣା ଟାଣି ଚାଲିଗଲେ ଖଟ ଉପରକୁ ।

ଜନନୀ କେବଳ ଚିତ୍କାର କରିବାକୁ ଲାଗିଲେ, କଅଣ କହିଲୁ ଲୋ ଛତରଖାଇ ! ପୁଅକୁ ଶୋଷି ଖାଉଛୁ ତୁ ? ଖାଉଛୁ ? ଖାଉଛୁ ? ପୁଅ ମୋର ଶୁଖିଯାଉଛି କାହିଁକି ? ଟିକିଏ ଦୁଧ ତ ଖାଇବାକୁ ପାଉନାହିଁ ମୋ ପୁଅ । ସବୁ ତ ତୁମର ପିଲାରେ ଖରଚ କଲୁ ।

ସ୍ତ୍ରୀ ଘର ଭିତରେ ଥାଇ କହିଲେ, ତୁମ ପୁଅ ଖାଇବାକୁ ପାଉନାହାନ୍ତି, ଆଉ ମୋ ପିଲା ?

ପରେଶବାବୁ ତମତମ ହୋଇ କମିଜ ପିନ୍ଧି ବାହାରିଗଲେ କଚେରି । ଘଣ୍ଟାକୁ ଚାହିଁ ଦେଖିଲେ ସାଢ଼େ ଦଶ ବାଜିଗଲାଣି । ପରେଶ ବାବୁ ଧଇଁସଇଁ ହୋଇ ଦୌଡ଼ିଛନ୍ତି କଚେରି । ଘର କଳିଆ ତାଙ୍କର ଆଉ ମନେ ନାହିଁ, ସେ ଭାବୁଛନ୍ତି କଡ଼ା ହାକିମ କଥା । ଏତେ ଡେରି ପାଇଁ କି କାରଣ ଦେଖାଇବେ··· ।

ଲୋଭର ଗୋଟାଏ ଝଡ଼ ବୋହିଗଲା ଯେମିତି । କଚେରିରେ ପହଞ୍ଚି ଦେଖିଲେ କିଛି ବିପଦ ଘଟିନାହିଁ । ନିଜ ଚୌକି ଉପରେ ବସି ପଙ୍ଖାଟାକୁ ପୂରା ଖୋଲିଦେଲେ । ଝାଳ ପୋଛୁ ପୋଛୁ ସମସ୍ତ ଘଟଣାଟି ଉପରେ ଥରେ ଆଖି ବୁଲାଇ ଦେଇ ହସିପକେଇ ମନେ ମନେ କହିଲେ, ମୁଁ ଶଳାଟି ତ ଖରାପ ଲୋକ ନୁହେଁ, ଭଲ ଲୋକ । ମଦ, ଲୋଭ, ହିଂସା ଏସବୁ ଅଛି ବୋଲି କଅଣ ଭଲ ଗୁଣ ନାହିଁ ? ସେ ବି ତ ଅଛି । ମୋଟାମୋଟି ମୁଁ ଭଲ ଲୋକ ନା ନାହିଁ ? ତେବେ ହ୍ୟାପ୍, ମୁଁ ଏମିତି କାହିଁକି ହେଲି, ଆଁ ? ଗୁଡ଼ଃ । ଦେଖ ତ ଗୋବର୍ଦ୍ଧନଙ୍କ ଗତି, ଝୁଲି ପେଲି ତ ଚାଲିଛନ୍ତି !

ମନଟା ତାଙ୍କର ହଠାତ୍ ପ୍ରଶାନ୍ତ ହୋଇଗଲା । ମନରୁ ସବୁ ପୋଛିଦେଇ ସେ କାମରେ ମନୋନିବେଶ କଲେ । ଆଉ ବଡ଼ବାବୁଙ୍କୁ ହସି ହସି କହିଲେ, ବଡ଼ବାବୁ, ଆଜିଠୁଁ ମୋତେ ଯେତେ ଇଚ୍ଛା ସେତେ କାମ ଦିଅନ୍ତୁ, ଅନ୍ୟମାନଙ୍କ ବଳକା କାମ ବି ଦିଅନ୍ତୁ । ମୁଁ ସବୁ ଚଟାପଟ୍ କରିଦେବି ଦେଖିବେ ।

ବଡ଼ବାବୁ ଚଷମା ଉପରୁ କିଛିକ୍ଷଣ ତରଚି ଚାହିଁ କହିଲେ, ମନ ଯଦି ସେମିତି ହେଉଚି ତେବେ ନିଜ କାମଟି ବାବୁ ଆହୁରି ଭଲ କରି କର । ପରକାମ କରି ବାହାଦୁରି ନେବାକୁ ଚେଷ୍ଟା କରନା, ବୁଝିଲ । ଆଉ ମୁଁ କାହିଁକି ସେମିତି କରି ଅନ୍ୟମାନଙ୍କୁ ଖରାପ କରିବି ? ନିଜ କାମ ଖୁବ୍ ଭଲ କରି କର । ଆଉ ଅନ୍ୟର କାମ ଦେଲେ ବରଞ୍ଚ ନ କରିବାକୁ ପାଟିତୁଣ୍ଡ କର, ବୁଝିଲ କି ?

ପରେଶବାବୁଙ୍କ ପାଟିରୁ ଅଡୁଆ ଖସିପଡ଼ିବାଭଳି ଲାଗିଲା ପୁଣି; କିନ୍ତୁ ସେ ଯେମିତି ହସି ହସି କହିଲେ—ବୁଝିଲି ବୁଝିଲି ।

□□□

# ପାଷାଣର ପ୍ରାଣ

ଯାଦବବାବୁଙ୍କ ଦେଢ଼ବର୍ଷର ପୁଅକୁ ଯେତେବେଳେ ଜର ହବାର ମାସେ ହୋଇଗଲା, ସେତେବେଳେ ହୋମିଓପ୍ୟାଥିକ ଡାକ୍ତର କହିଲେ, ତାଙ୍କର ସନ୍ଦେହ ହେଉଛି; ତେଣୁ ଥରେ ଏକ୍ସ-ରେ' କରାଇନେବା ଉଚିତ। ଅଳ୍ପ ପଇସା ଖରଚ ହେବ ବୋଲି ସେ ଏପର୍ଯ୍ୟନ୍ତ ହୋମିଓପ୍ୟାଥି କରାଉଥିଲେ। ଡାକ୍ତରଙ୍କ କଥାରେ ତାଙ୍କ ମୁଣ୍ଡରେ ବଜ୍ରପାତ ହେଲା—ପ୍ରଥମତଃ ରୋଗ ପାଇଁ ଏବଂ ଦ୍ୱିତୀୟତଃ ଖର୍ଚ୍ଚ ପାଇଁ।

କିନ୍ତୁ ଉପାୟ ବା କଅଣ? ଏତେ ଦିନେ ରୋଗଟିଏ ପୁଞ୍ଜିଭୂତ ହୋଇଛି। ନିଜର ଜୀବନ ଦେଇ ମଧ୍ୟ ତାକୁ ବଞ୍ଚାଇବାକୁ ହେବ; କିନ୍ତୁ ମାସ ଶେଷରେ ଏକ୍ସ-ରେ' କରାଇବାର ଖରଚ ପାଇବେ କେଉଁଠୁ ସେ। ହାସପାତାଳ ଯିବାପାଇଁ ରିକ୍ସା ଭଡ଼ା ତାଙ୍କ ପକ୍ଷରେ ନାହିଁ, ଏକ୍ସ-ରେ' ଖର୍ଚ୍ଚ ବହିବା ତ ଦୂରର କଥା। ଧାର କରି କରି ସେ ନାକ୍ୟାନ୍ତ ହୋଇ ସାରିଲେଣି; ଆଉ କିଏ ବା ଦେବ ମାସ ଶେଷରେ! ନିଜକୁ ନିଜେ ଧିକ୍କାର ଦେଇ ସେ କହିଲେ, ଧିକ୍ ଗରିବର ଜୀବନକୁ। କିନ୍ତୁ କିଏ ଏହା ପାଇଁ ଦାୟୀ? କାହାକୁ ସେ ଦୋଷ ଦେବେ ଏହା ପାଇଁ? ଯଦିଓ ଭଗବାନଙ୍କ ଅସ୍ତିତ୍ୱ ବିଷୟରେ ତାଙ୍କର ବିଶ୍ୱାସ ନାହିଁ ବା ତାଙ୍କର ଦୈନନ୍ଦିନ ଦୁଃଖ କଷ୍ଟ ଓ ଅନ୍ୟାନ୍ୟ କ୍ଷୁଦ୍ର କର୍ତ୍ତବ୍ୟ ଭିତରେ ସେ ବିଷୟରେ ଚିନ୍ତା କରିବାର ସମୟ ପାଇନାହାନ୍ତି, ତଥାପି ସେ ତାକୁହିଁ ମନେ ମନେ ପରୋକ୍ଷେ ଗାଳିଦେଇ ପୁଣି ଭୟରେ ପ୍ରାର୍ଥନାକରି କହିଲେ, ଭଗବାନ, ଏଇ କଅଣ ତୁମ ବିଚାର! ଦରିଦ୍ର କରିଛ ଏବଂ ତା' ଉପରେ ଏ ରୋଗ ଦେଇ ମୋତେ ଉପହାସ କରୁଛ!!

ପହିଲା ଆହୁରି ସାତ ଦିନ ଅଛି। ଅଫିସ୍‌ରୁ ଲେଖାଇ ସେ ମାଗଣା ଏକ୍ସ-ରେ' କରାଇ ପାରନ୍ତେ ହୁଏତ। କିନ୍ତୁ ସରକାରୀ ହସ୍ପିଟାଲ ଧୀର ମନ୍ଥର ଗତିକୁ ରୋଗ ଅନେଇ ବସି ନ ଥିବ। ସାତ ଦିନ ଭିତରେ କଅଣ ନା କଅଣ ହୋଇଯିବ ହୁଏତ। ଥରେ ଭାବିଲେ ପଡ଼ୋଶୀ-ଘରୁ ଧାର କରିବାକୁ; କିନ୍ତୁ ସେ କଥା ଭାବିବାବେଳକୁ ଆଖି ତାଙ୍କର ଛଳଛଳ ହୋଇଆସିଲା। ତାଙ୍କ ପଡ଼ୋଶୀ ଘରେ ଅଛନ୍ତି ଜଣେ କଣ୍ଟି ବଣିଆ, ଖୁବ୍ ଧନୀ। କିଛିଦିନ ତଳେ ସାମାନ୍ୟ କଥାରେ ସେମାନଙ୍କ ସହିତ କିଞ୍ଚିତ୍ ବାଦାନୁବାଦ ହେଉ ହେଉ ଶେଷକୁ ଗୋଟାଏ ଅପ୍ରୀତିକର ଘଟଣା ଘଟିଯାଇଛି। ସେମାନେ ସେମାନଙ୍କର ପିଲାମାନଙ୍କ ଘୁଅପୋଛା କାଗଜ ଯାଦବବାବୁଙ୍କ ବାଡ଼ିକୁ ଫିଙ୍ଗିଦିଅନ୍ତି। ଏହାର ପ୍ରତିବାଦ କରିବା ପାଇଁ ଯାଦବବାବୁଙ୍କ ସ୍ତ୍ରୀ ଯାଦବବାବୁଙ୍କୁ ବାରମ୍ବାର କହିଲେ ମଧ୍ୟ ଯାଦବବାବୁ ଭୟରେ ସେମାନଙ୍କୁ କିଛି ନ କହି ନିଜେ ସେ ସବୁ ସଫା କରିଦେଇଛନ୍ତି। ସ୍ତ୍ରୀ ପଚାରିଲେ ସେ କହିଦିଅନ୍ତି, ସେମାନେ କ୍ଷମା ମାଗି ଆଉ ଭବିଷ୍ୟତରେ ଯେପରି ଏପରି ନ ଘଟେ, ସେଥିପ୍ରତି କଡ଼ା ନଜର ରଖିବାକୁ

କହୁଛନ୍ତି । ସ୍ତ୍ରୀ ଆଗରେ ନିଜର ପୌରୁଷ ରକ୍ଷାକରିବା ପାଇଁ ସିନା ସେ ମିଛଟାଏ କହୁ-ଥିଅନ୍ତି; କିନ୍ତୁ ସ୍ତ୍ରୀ ଏଥିରେ ବିଶ୍ୱାସ କରନ୍ତି ନାହିଁ । ଦିନେ ଆଉ ଥରେ ପୂର୍ବପରି ମଙ୍ଗଳା କାଗଜ ପଢ଼ିବାରୁ ଯାଦବବାବୁଙ୍କର ସ୍ତ୍ରୀ ସେଦିନ ନିଜେ ତାହାର ପ୍ରତିବାଦ କଲେ । କଥା କ୍ରମେ କ୍ରମେ କଳିକଜିଆ ଆଡ଼କୁ ଅଗ୍ରସର ହେଲା । ଯାଦବବାବୁ ଦୁଇପକ୍ଷର କାହାରିକୁ ସମ୍ଭାଳି ନ ପାରି ଅସହାୟ ଶ୍ରୋତା ଭାବରେ ଛିଡ଼ାହୋଇ ରହିଲେ । ଶେଷରେ ପଡ଼ିଶାଘରୁ ବୃଦ୍ଧର ବାହାରିଆସି ତାର ବୃଦ୍ଧସ୍ୱାମିନୀଙ୍କୁ କହିଲା, ମା, କାହିଁକି ଛୋଟଲୋକଗୁଡ଼ାଙ୍କ ସହିତ କଥା କହୁଚନ୍ତି । ହାଣ୍ଡି ମାଙ୍କଡ଼ଚର୍ ମାଚୁଚ ଯା'ର ସେ ପୁଣି କେତେ ବଡ଼ପଣରେ କଥା କହୁଚ ଦେଖୁନା । ବୃଦ୍ଧସ୍ୱାମିନୀ ବିଜୟୋଲ୍ଲାସରେ ମୁହଁ ବୁଲି ସେଠୁ ଚାଲିଗଲେ । ଯାଦବବାବୁ ତାଙ୍କ ସ୍ତ୍ରୀଙ୍କୁ ଓ ସ୍ତ୍ରୀ ତାଙ୍କୁ ଅନାଇଲେ । ଦୁଇଜଣ ଆଖି ଛଳଛଳ କରି ନୀରବରେ ମୁଣ୍ଡ ପୋତି ସେଠାରୁ ଫେରିଆସିଲେ । ଯାଦବବାବୁ ଘରକୁ ଆସି ଦୀର୍ଘନିଃଶ୍ୱାସ ପକାଇ କେବଳ କହିଲେ,—ନ ଧନହୀନ ବନ୍ଧୁର୍ମଧ୍ୟେ ଜୀବନଂ ।

କେଉଁଠୁ ଟଙ୍କା ପାଇବେ ଏହି ଚିନ୍ତାରେ ସାରାଦିନଟି ତାଙ୍କର ଗଲା । କିଛି ଉପାୟ ନ ପାଇ ସନ୍ଧ୍ୟାବେଳକୁ ସେ ଗଲେ ଶ୍ରୀ ଶ୍ରୀ ଗୋପାଳଜୀଉଙ୍କ ମନ୍ଦିରକୁ । ତାଙ୍କର ବିଶ୍ୱାସ ନଥାଉ ପଛକେ ବଡ଼ ବଡ଼ ସାଧୁମାନେ ତ କହିଛନ୍ତି ଭଗବାନଙ୍କୁ ଆତୁର ହୋଇ ଡାକିଲେ ସେ ବାଞ୍ଛା ପୂରଣ କରନ୍ତି । ଗୋଡ଼ହାତ ଧୋଇ ବହୁକାଳର ଦରଛିଣ୍ଡା ମଠା ଧୋତିଟି ପିନ୍ଧି ସେ ଗଲେ ମନ୍ଦିରକୁ । ମୂର୍ତ୍ତିକୁ ଚାହିଁ ସେ ଚେଷ୍ଟାକଲେ ମନରେ ଆତୁରତା ଆଣିବାକୁ । କିନ୍ତୁ ଆତୁରତା ପରିବର୍ତ୍ତେ ତାଙ୍କର ମନକୁ ଆସିଲା ଯେତେ ତର୍କ, ଯେତେ ଟିପ୍ପଣୀ ବିଚାର ଭଗବାନଙ୍କ ଅସ୍ତିତ୍ୱ ବିଷୟରେ । ଭଗବାନ କଅଣ ଅଛନ୍ତି ? ଥିଲେ ତାଙ୍କର କଅଣ ଆକାର ଆକୃତି ଅଛି ? ଆମର ଆତୁରତା ବା ଭାବପ୍ରବଣତାରୁ ତାଙ୍କର ଅସ୍ତିତ୍ୱ ବିଷୟରେ ଯେଉଁ ବିଶ୍ୱାସ ଜନ୍ମେ ତାହାର ସତ୍ୟତା ବିଷୟରେ ଅନ୍ୟ ପ୍ରମାଣ କଅଣ ଅଛି ? ପାଗଳ ନିଜକୁ ଅଧୀଶ୍ୱର ଭାବି ସେହିପରି ବ୍ୟବହାର କରେ; କିନ୍ତୁ ତାହାର ସେ ଜ୍ଞାନ ହାସ୍ୟାସ୍ପଦ । ଆମର ଏ ଭାବପ୍ରବଣତାଜନିତ ଜ୍ଞାନ ସେହିପରି ହାସ୍ୟାସ୍ପଦ ନୁହେଁ କାହିଁକି ? ସମସ୍ତେ କହୁଛନ୍ତି, ବିଶ୍ୱାସ କଲେ କୃଷ୍ଣ ମିଳେ, ତର୍କରେ ନୁହେଁ । ବିଶ୍ୱାସ ଉପରେ ଏତେ ଜୋର ଦିଆହୋଇଛି କାହିଁକି ? ଦୁଇ ଯୁକ୍ତ ଦୁଇ ସମାନ ଚାରି । କେହି ତ କହୁନାହିଁ ବିଶ୍ୱାସ କଲେ ଏହା ଜାଣି ପାରିବ । ଜଣେ ବଡ଼ ମନସ୍ତାତ୍ତ୍ୱିକଙ୍କ କଥା ତାଙ୍କର ମନେପଡ଼ିଲା । ସେ ତାଙ୍କ ବହିରେ ଭଗବାନବିଶ୍ୱାସର ସାତୋଟି କାରଣ ଦର୍ଶାଇଛନ୍ତି, ଯଥା—ଅମର ହେବାର ଆନ୍ତ୍ର ଇଚ୍ଛା, ପ୍ରତିପତ୍ତି ପାଇବାର ଇଚ୍ଛା, ପ୍ରାକୃତିକ ବିପର୍ଯ୍ୟୟ ପ୍ରତି ଭୟ ଇତ୍ୟାଦି । ଏସବୁ ତର୍କ-ବିତର୍କ ଭିତରେ ଯାଦବବାବୁ ପୂଅକଥା ଭୁଲିଯାଇଥିଲେ । ସେ କଥା ମନେପଡ଼ିବାରୁ ସେ ପୁଣି ଚେଷ୍ଟା କଲେ ମନରେ ଆତୁରତା ଆଣିବାକୁ ।

ପିଲାବେଳେ ତାଙ୍କର ବୋଉ ରାତି ନ ପାହୁଣୁ ଗଜନିସ୍ତାରଣ ଯେତେବେଳେ ବୋଲୁଥିଲେ, ସେତେବେଳେ ସେ କାନ୍ଦପକାଉଥିଲେ । କୁମ୍ଭୀର ଯେତେବେଳେ ହାତୀକୁ ଭୁଲାଇ

ପାଣି ଭିତରକୁ ନେଇ ପାଣିରେ "ଉତ୍କର୍ଷଣ ପଙ୍କିଳ, ଗମ୍ଭୀର ଜଳରେ ବୁଡ଼ିଲି, ଖଗେ ଧଇଲି ପାଦ ସ୍ତବ, ଦନ୍ତେଣ କଣ୍ଟି ତା କାମୋଡ଼ି । କାମୁଡ଼ି କରେ ତୃଣଣ୍ଟୁଣ, ବୋଲଇ ଘେନବି ତୋ ପାଣ", ସେତେବେଳେ ତାଙ୍କର ଆଖି ଛଳଛଳ ହୋଇଯାଉଥିଲା । ହାତୀ କୁମ୍ଭୀରଠାରୁ ନିସ୍ତାର ପାଇବାର ଆଉ ଉପାୟ ନ ପାଇ ଯେତେବେଳେ "ଶଙ୍କରଇ ମନେ, ଯେ କାଳେ ଥିଲି ଘୋରବନେ, ଶାର ସିଂହ ଯେ ପର୍ବତରେ, ଥିଲି ମୁଁ ଯେବଣ କାଳରେ, ମୁଣ୍ଡି ମାରଇ ବୋଲିକରି, ଚୂର୍ଣ୍ଣ ହୋଇଲେ ଉପଗ୍ରନ୍ଥ । ମୁନବ ହସ୍ତ କୁନ୍ଦାକୁନ୍ଦ, ଆତଙ୍କ କଲେ ଭବଗ୍ରାହୀ, ଥରେ ମୁଁ ବଞ୍ଚିବି ଏଠାଇ, ମନରେ ପ୍ରକଟେ ଯିବି ମୁଣ୍ଡି । ଏମନ୍ତେ ମନେ ବିଗୁଣିଲା, ପଦ୍ମ ଯେ ନାଡ଼େକ ପାଇଲା । ତୋଳି ଧଇଲା ପଦ୍ମମୂଳ, ଡାକିଲା ରଖ ଆଦମୂଳ । ରଖ ହେ ଦେବକୀ-ନନ୍ଦନ, ରଖ ହେ ଶ୍ରୀ ମଧୁସୂଦନ" ସେତେବେଳେ ଯାଦବବାବୁ କୋହ ସମ୍ଭାଳି ନ ପାରି କଇଁକଇଁ ହୋଇ କାନ୍ଦି ବୋଉକୋଳରେ ମୁହଁ ଲୁଚାଇ ଦେଉଥିଲେ । ବୋଉ ତାଙ୍କ ପିଠିରେ ହାତ ବୁଲାଉ ବୁଲାଉ କରୁଣ ସ୍ୱରରେ ଗଜ ନିସ୍ତାରଣ ସ୍ତବ ଗାଇଯାଉଥିଲେ । ସେଇ କଥା ଯାଦବବାବୁ ବର୍ତ୍ତମାନ ମନେପକାଇଲେ । ବୋଉ ଯେଉଁ ସ୍ତବ ଗାଉଥିଲେ ମନେ ମନେ ସେ ସେମିତି ସୁରରେ ଗାଇବାକୁ ଲାଗିଲେ , କିନ୍ତୁ ବୃଥା । ଉପରନ୍ତୁ ହାତୀ ସମୁଦ୍ର ଭିତରେ ପଦ୍ମନାଡ଼ ପାଇବାର ଦେଖି ସେ ହସିଲେ । ଯେତେ ତର୍କ, ଯେତେ ସବୁ ବଡ଼ ବଡ଼ ମନସ୍ତାତ୍ତ୍ୱିକମାନଙ୍କର ସୂକ୍ଷ୍ମ ବିଶ୍ଳେଷଣ ତାଙ୍କର ମନେପଡ଼ିବାକୁ ଲାଗିଲା । କୌଣସି ପ୍ରକାରେ ସେ ଆତୁର ହୋଇ ଡାକିପାରିଲେ ନାହିଁ । ତାଙ୍କର ଜ୍ଞାନ ଯେପରି ତାଙ୍କର କଣ୍ଠରୋଧ କରିବାକୁ ଲାଗିଲା । ସେ ଅଧୀର ହୋଇ କହିଲେ, "ଭଗବାନ, ପଣ୍ଡିତମାନେ କହନ୍ତି ବିଦ୍ୟା ଏପରି ଧନ ଯେ ଚୋର ଡକେଇତ ଏହାକୁ କାଢ଼ିନେଇ ପାରିବେ ନାହିଁ । ଲୋଡ଼ା ନାହିଁ ମୋର ଏ ଧନ । କାଢ଼ି ନେଇଯାଅ ଏ ଧନ, ଫେରାଇଦିଅ ମୋର ପିଲାବେଳର ବିଶ୍ୱାସ, ଆତୁରତା । ସେଥିରେ ମଧ୍ୟ କିଛି ଫଳ ହେଲାନାହିଁ । ଶେଷରେ ବିରକ୍ତ ହୋଇ ସେ ମୂର୍ତ୍ତିକୁ ଗୁହାରି କହିଲେ, ନାହିଁ ବା ଆସିଲା ଆତୁରତା, ମୁଁ ଯେ ଆତୁର, ଏଥିରେ ତ ସନ୍ଦେହ ନାହିଁ, ଦେଖିବା ଯେ ତୁମେ କେଡ଼େ ଅନ୍ତର୍ଯାମୀ, କେଡ଼େ ଭବଗ୍ରାହୀ ।

ପରଦିନ ସକାଳେ କିନ୍ତୁ ସେ ଭଗବାନଙ୍କ ଭକ୍ତବାତ୍ସଲ୍ୟ ଉପରେ ନିର୍ଭରକରି ନିଶ୍ଚେଷ୍ଟ ହୋଇ ରହିପାରିଲେ ନାହିଁ । ଗତି ନ ପାଇକରି ସେ ହାକିମଙ୍କ ଦ୍ୱାରସ୍ଥ ହେଲେ ଟଙ୍କା ଧାର ପାଇଁ । ଅନେକ କ୍ଷଣ ପରେ ହାକିମ ଆସି ଯାଦବବାବୁଙ୍କ ଗୁହାରି ଶୁଣି କଟମଟ କରି ଗୁହାଁ କହିଲେ, ଉଚିତ, କିନ୍ତୁ ମନେ ରଖିବେ ଯାହାର ପୋଷଣ କରିବାର କ୍ଷମତା ନାହିଁ, ତାର ସନ୍ତାନ ଉତ୍ପାଦନ କରିବାର ଅଧିକାର ନାହିଁ ।

ଯାଦବବାବୁ ନୀରବରେ ସେତିକ ହଜମ କରି ଟଙ୍କା ନେଲେ । ଟଙ୍କା ପାଇଁ ଯେଉଁ ଆନନ୍ଦ ସେ ପାଇଲେ ହାକିମଙ୍କ ବାକ୍ୟବାଣର ଆଘାତ ସେଥିରେ ତାଙ୍କୁ ଜଣାପଡ଼ିଲାନାହିଁ ।

ପୁଅର ଏକ୍ସ୍-ରେ' ହୋଇଗଲା । ଡାକ୍ତର ଫଟୋ ଦେଖି ଏକପୃଷ୍ଠାବ୍ୟାପୀ ଔଷଧ ଓ ପଥ୍ୟ ଆଦି ଲେଖିଦେଇ କହିଲେ, ଏସବୁ ନିତାନ୍ତ ଦରକାର । ଆଉ ଗୋଟିଏ କଥା,

ଗୋଟିଏ ଭଲ ଥର୍ମମିଟର କିଣିବେ । ବେଶି ନୁହେଁ ସାଢ଼େ ଗ୍ୱରି ଟଙ୍କା ଦାମ । ସେଥିରେ ପ୍ରତ୍ୟହ ଦୁଇବେଳା ଜର ଦେଖି ଗୋଟାଏ ଖାତାରେ ଲେଖିରଖି ମୋତେ ଦେଖାଉଥିବେ ।

ଡାକ୍ତର ଟଙ୍କା ନେଇ ଗ୍ୱଲିଗଲେ । ଯାଦବବାବୁ କାଗଜଟିକୁ ଶୂନ୍ୟ ଦୃଷ୍ଟିରେ ଗ୍ୱହିଁ ରହିଲେ । ଯାଦବବାବୁଙ୍କ ସ୍ତ୍ରୀ ତାଙ୍କର ଗହଣାଚିକ ଧରି ଛିଡ଼ା ହୋଇ କହିଲେ, ଚିନ୍ତା କରନି, ପୁଅ ବଞ୍ଚି ମଣିଷ ହେଲେ ସବୁ ହବ । ଏତକ ନିଅ । ଯାଦବବାବୁ ଥରେ ମାତ୍ର ସ୍ତ୍ରୀଙ୍କୁ ଗ୍ୱହିଁ ସେତକ ଧରି ଗ୍ୱଲିଗଲେ ।

ଚିକିତ୍ସା ଗ୍ୱଲିଲା । ଡାକ୍ତରଙ୍କ ଉପଦେଶ ଅନୁସାରେ ସେ ଗୋଟିଏ ଥର୍ମମିଟର ମଧ୍ୟ ଆଣିଲେ । ସକାଳ ଓଳି ସେ ନିଜେ ଜର ଦେଖି ଖାତାରେ ଲେଖିଦେଇଯାଆନ୍ତି । ଉପର ଓଳି ଅଫିସରୁ ଆସିବାକୁ ତାଙ୍କର ଡେରି ହୁଏ । ସେ ଓଳି ସ୍ତ୍ରୀ ଜର ଦେଖନ୍ତି ।

ଦୁଇଦିନ ପରେ ଯାଦବବାବୁ ଅଫିସରୁ ଫେରି ଶୁଣିଲେ ଯେ ଥର୍ମମିଟରଟି ଭାଙ୍ଗି ଯାଇଚି । ଯାଦବବାବୁ ଶୁଣି କିଛି କହିଲେ ନାହିଁ । ପୁଅକୁ ଟିକିଏ ଗେହ୍ଲାକରି କହିଲେ, ହଇରେ ଟୋକା ! ଭାଙ୍ଗି ଦେଲୁ । ଟଙ୍କା କେଉଁଠୁ ଆଣିବି ପୁଣି କିଣିବାକୁ ? ପୁଅ ବାପାଙ୍କୁ ଗ୍ୱହିଁ ହସିଦେଲା । ଯାଦବବାବୁ ଆନନ୍ଦରେ ଚୁମ୍ବନ ପରେ ଚୁମ୍ବନ ଦେଇ ଗଲେ ବଜାରକୁ ଆଉ ଗୋଟିଏ କିଣିବାକୁ । ଗହଣା ବନ୍ଧକ ଦେଇ ଆଣିଥିବାର ଟଙ୍କାରୁ ବର୍ତ୍ତମାନ ମଧ୍ୟ ଶହେଟଙ୍କା ଅଛି । ଟଙ୍କାର ଚିନ୍ତା ବର୍ତ୍ତମାନ ତାଙ୍କର ନାହିଁ ।

ପରଦିନ ସକାଳେ ସେ ଜର ଦେଖିବାପାଇଁ ପୁଅର ଜାମା ଟେକି ଥର୍ମମିଟରଟି ତା କାଖରେ ଗୁଞ୍ଜିଦେବା ସମସ୍ତରେ ପୁଅ କିରି କିରି ହସି ହାତ ଛାଟିଦେଲା । ଏଥିପାଇଁ ସେ ପ୍ରସ୍ତୁତ ନଥିଲେ । ଥର୍ମମିଟରଟି ତାଙ୍କ ହାତରୁ ଖସିଯାଇ ତଳେ ପଡ଼ିଯାଇ ଭାଙ୍ଗିଗଲା । ପାରଦଗୁଡ଼ିକ ପଦ୍ମପତ୍ରରେ ଜଳବିନ୍ଦୁ ପରି ଟଳଟଳ ହୋଇ ଏଣେତେଣେ ଗଡ଼ିଗଲେ । ରାଗରେ ଅଧୀର ହୋଇ ଯାଦବବାବୁ ପୁଅକୁ ଗୋଟାଏ ଗ୍ୱପୋଡ଼ା ମାରିବାକୁ ହାତ ଉଠାଇଲେ । ପୁଅ ସେ ପର୍ଯ୍ୟନ୍ତ ହସୁଚି । ବାପାଙ୍କୁ ସେ କି ଅର୍ଥସଙ୍କଟରେ ପକାଇଛି, ସେ ଜାଣେ ନାହିଁ । ଯାଦବବାବୁ ଗୋଟିଏ କ୍ଷୁଦ୍ର ନିଃଶ୍ୱାସ ପକାଇ ହସି କହିଲେ, ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ବି ଅନେଇ ବସିଚି ଦରିଦ୍ରଙ୍କୁ ଉପବାସ କରିବା ପାଇଁ !

କାହାରିକୁ କିଛି ନ କହି ସେ ବାକ୍ସରୁ ସାଢ଼େ ଗ୍ୱରିଟଙ୍କା ନେଇ ବଜାରକୁ ଯାଇ ସାଙ୍ଗେ ସାଙ୍ଗେ ଆଉ ଗୋଟିଏ ଥର୍ମମିଟର କିଣିଆଣିଲେ । ବଜାରରୁ ଫେରି ଜର ଦେଖି ଖାତାରେ ଲେଖିରଖି ସେ ସ୍ତ୍ରୀଙ୍କୁ ଡାକି କହିଲେ, ଦେଖ, ଖୁବ୍ ସାବଧାନ ହୋଇ ଜର ଦେଖିବ ସେ ଓଳି । ଏଥର ଭାଙ୍ଗିଲେ ମୁଁ କେଉଁଠୁ ଆଣିବି କହିଲ ?

କିନ୍ତୁ ଯେତେ ସାବଧାନ ହେଲେ ବି କିଛିଦିନ ପରେ ଆଉ ଗୋଟିଏ ଭାଙ୍ଗିଗଲା । ଯାଦବବାବୁ ଯେଉଁଦିନ ଅଫିସରୁ ଫେରି ଯେମିତି ଶୁଣିଲେ ଆଉ ଗୋଟିଏ ଭାଙ୍ଗିଚି, ମୁଣ୍ଡରେ ତାଙ୍କର ବଜ୍ର ପଡ଼ିଗଲା । ରାଗରେ, ଅଭିମାନରେ ହତାଶରେ ସେ କାଣ୍ଡଜ୍ଞାନ ହରାଇ ବସି ଖାଇବା ଥାଳି ସ୍ତ୍ରୀ ଉପରକୁ ଫୋପାଡ଼ି ଦେଇ ଦୁମ୍‌ଦୁମ୍ କରି ଦୁଇ ବିଧା ପୁଅ ପିଠିରେ

ବସାଇଦେଲେ । ସ୍ତ୍ରୀ ବୁଝିଲେ, ଏ ମାଡ଼ ତାଙ୍କୁହିଁ ହେଉଛି । ଏହା ପରେ ଗୁରୁତର କାଣ୍ଡ ଘଟିଗଲା । ଯାଦବବାବୁଙ୍କ ସ୍ତ୍ରୀ ତଳେ ମୁଣ୍ଡ ବାଡ଼େଇ ପାଟିକରି କାନ୍ଦିଉଠିଲେ—ମୋ ପୁଅକୁ ମାରିଦେଲେ ଲୋ । ଯାଦବବାବୁ ମୁଣ୍ଡରେ ହାତଦେଇ ବସିପଡ଼ିଲେ । ସମସ୍ତଙ୍କ ଖାଇବା ସେଦିନ ବନ୍ଦହେଲା ।

ପରଦିନ ଯାଦବବାବୁ ଅଫିସକୁ ଛୁଟି ଦରଖାସ୍ତ ପଠାଇଦେଇ କହିଲେ, ମୁଁ ତୁମକୁ ଦେଖାଇଦେବି କିପରି ସାବଧାନତା ସହିତ ପିଲାଙ୍କ ଜର ଦେଖିବା ନିୟମ । ଉପର-ଓଳି ସନ୍ଧ୍ୟା ସମୟରେ ସେ ସ୍ତ୍ରୀଙ୍କୁ ଡାକି କହିଲେ, ମୁଁ ବସିଛି, ତୁମେ ଦେଖ । ସ୍ତ୍ରୀ ଗମ୍ଭୀର ଭାବରେ ପୁଅକୁ କୋଳରେ ବସାଇ ସାବଧାନତା ସହିତ କାଖତଳେ ଥର୍ମୋମିଟରଟି ଦେଲେ । ଯାଦବବାବୁ ଘଡି ଧରି ବସିଲେ । ଏକମିନିଟ୍ ପରେ କହିଲେ, ଏଥର କାଢ଼ । ସ୍ତ୍ରୀ ଥର୍ମୋମିଟରଟି କାଢ଼ି ଆଣି ଲଣ୍ଠନ୍ ନିକଟରେ ଧଇଲେ ।

ଯାଦବବାବୁ ଚିତ୍କାର କରି କହିଲେ, ଆରେ ! ଅରେ ! ଏ କ'ଣ କରୁଚ ! ଲଣ୍ଠନ୍ ତାପରେ ପାରା ଉଠିଯିବ ଯେ ।

ସ୍ତ୍ରୀ କହିଲେ, ଆମକୁ ଶିଖାଇବାକୁ ହେବନାହିଁ । ଲଣ୍ଠନ୍ ଚିମିନିରେ ପାରାକୁ ଲଗାଇଲେ ବି ପାରା ଉଠିବ ନାହିଁ । ଏଇ ଦେଖ ।

ଏହା କହୁ କହୁ ସେ ଥର୍ମୋମିଟରର ପାରା ଅଂଶଟି ଲଣ୍ଠନ୍ ଚିମିନିରେ ଲଗାଇଦେଲେ । ଦେଖୁ ଦେଖୁ ଏକ ସେକେଣ୍ଡ ଭିତରେ ପାରା ଆନନ୍ଦରେ ଡେଇଁ ଡେଇଁ ଶେଷ ସୀମାଯାଏ ଉଠିଗଲା । ଭୟରେ ସେ ଥର୍ମୋମିଟରଟି କାଢ଼ି ଆଣି ଝାଡ଼ି ପୁଅ କାଖ ତଳେ ପୁଣି ରଖିଲେ । ଏକ ମିନିଟ ପରେ ଯାଦବବାବୁ ସେଟି କାଢ଼ିଆଣି ଦେଖିଲେ । ଦେଖୁ ଦେଖୁ ପାରା ତଳକୁ ଖସିବାକୁ ଲଗିଲା ।

ଯାଦବବାବୁ କାନ୍ଦ କାନ୍ଦ ହୋଇ କହିଲେ, ଏ କଅଣ କଲ ! ହେଲା ଖରାପ କରି ।

ସ୍ତ୍ରୀ ପୁଣି ଝାଡ଼ି କାଖ ତଳେ ଦେଲେ । କାଢ଼ିଆଣି ଦେଖିଲେ ପାରା ତରତର ହୋଇ ତଳକୁ ଖସିଯାଉଛି ।

ଯାଦବବାବୁ ନିଷ୍ପଣ୍ଡ ଭାବରେ ହସି ଗାଇଲେ, ଉଡ଼ିଯାଉଛୁ ଲୋଟଣି ପାରାରେ, ଦୁନିଆରେ ଲଗିବ ଧରା-ପରା । ହଉ, ଦେଖେ ଯଦି ଏଇଟା ବଦଳାଇ ଦେଇପାରେ ।

ଥର୍ମୋମିଟରଟି ନେଇ ସେ ଗଲେ ଦୋକାନକୁ । ଏହି ଦୋକାନରୁ ସେ ଔଷଧ ଆଦି କିଣନ୍ତି । ପ୍ରଥମେ ସେ ଦୋକାନୀକୁ ମିଛ କଥା କହିଲେ ଯେ ତାଙ୍କୁ ଦୋକାନୀ ଖରାପ ଜିନିଷଟି ଦେଇଛୁ; କିନ୍ତୁ ଦୋକାନୀ ଏହାର ତୀବ୍ର ପ୍ରତିବାଦ କରିବାରୁ ଯାଦବବାବୁ ସତ କଥାଟି କହିଦେଲେ । ଦୋକାନୀ ଯାଦବବାବୁଙ୍କ କରୁଣ କାହାଣୀ ଶୁଣି ଦୟାପରବଶ ହୋଇ କହିଲେ, ଆଚ୍ଛା, ରଖିଯାଆନ୍ତୁ ସେଟି । ଆଉ କାହାକୁ ବିକି କରିଦେବି; କିନ୍ତୁ ଯଦି ନପାରେ ତେବେ ଆପଣଙ୍କୁ ଦାମ ଦେବାକୁ ପଡ଼ିବ । ଆପାତତଃ ଆଉ ଗୋଟିଏ ନେଇଯାଆନ୍ତୁ ।

ଯାଦବବାବୁ ନୂଆ ଅର୍ମାମିଟରଟି ଧରି ଘରକୁ ଫେରିଲେ । କଥାଟା କିନ୍ତୁ ତାଙ୍କୁ ଭଲ ଲାଗିଲା ନାହିଁ । ତାଙ୍କର କେବଳ ମନେହେଲା ହୁଏତ ତାଙ୍କ ପରି ଅଭାବଗ୍ରସ୍ତ କେହି ସେଇଟି ନେଇ ହଇରାଣ ହେବ । କାହିଁକି ସେ ଠକାଇବେ ଅନ୍ୟକୁ ? ମନ ତାଙ୍କର ଅସ୍ୱସ୍ତିରେ ଭରିଉଠିଲା । ଆଖି ତାଙ୍କର ଛଳଛଳ ହୋଇଗଲା । ବିଛଣାରେ ଶୋଇ ଅନେକ କ୍ଷଣ ଛଟପଟ ହୋଇ ସେ ହଠାତ୍ ଉଠି ବାହାରିଗଲେ ଦୋକାନକୁ । ସେ ନିଜର ଖରାପ ଅର୍ମାମିଟରଟି ଫେରାଇଆଣିଲେ ଓ ଆଉ ଗୋଟିଏ କିଣି ଆଣିଲେ ।

ତାଙ୍କ ମୁଣ୍ଡ ଉପରୁ ଯେପରି ଗୋଟିଏ ଭାରି ବୋଝ ଖସିଗଲା । ବାଟରେ ଗୋପାଳ-ଜୀଉଙ୍କ ମନ୍ଦିରକୁ ଯାଇ ସେ ମୂର୍ତ୍ତିକୁ ଚାହିଁରହିଲେ । ପଥରର ସେ ମୂର୍ତ୍ତି ତାଙ୍କୁ ସେଦିନ ମନେହେଲା ଯେପରି ପ୍ରାଣବନ୍ତ ହୋଇଯାଇଛି । ମୂର୍ତ୍ତିକୁ ଚାହିଁ ସେ ଆତୁର ଭାବରେ କହିଲେ, ଭଗବାନ ମୋତେ ଧନ ମାନ ନ ଦିଅ, ଆପତ୍ତି ନାହିଁ; କିନ୍ତୁ ଅସାଧୁ କର ନାହିଁ ।

ଆଖିରୁ ତାଙ୍କର ପାଣି ଝରିପଡୁଥିଲା ; କିନ୍ତୁ ମନରେ ଏକ ଅପୂର୍ବ ଆନନ୍ଦର ଶିହରଣ ।

□□□

## ମହାପୁରୁଷ ବାଗ୍

ଘଟଣାଟି ଘଟିଥିଲା ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେବାର କିଛିଦିନ ପରେ । ଉଦ୍‌ଘାଟନ ବେଳେ ନେତା ମହାଶୟ ଆବେଗଭରା କଣ୍ଠରେ ବକ୍ତୃତା ଦେଇଥିଲେ, ଏ ଉଦ୍ୟାନ ଜାତି-ଧର୍ମ-ଆୟ-ପଦବୀ-ନିର୍ବିଶେଷରେ ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଏଠି ଉଚ୍ଚ-ନୀଚ ଭେଦାଭେଦ ନାହିଁ; ଅପିଚ ଏଠି ମେହେନ୍ତରର ମଧ୍ୟ ଏକା ବେଞ୍ଚରେ ଉଚ୍ଚପଦସ୍ଥ କର୍ମଚାରୀ ସହିତ ବସିବାର ଅଧିକାର ଅଛି···ଇତ୍ୟାଦି, ଇତ୍ୟାଦି । ବକ୍ତୃତାଟାକୁ ହାତୁଡ଼ି ମାରି ସମସ୍ତଙ୍କ ମୁଣ୍ଡରେ ଢୁକାଇଦେବା ପାଇଁ ସେ ବହୁବାର ବଜ୍ରମୁଷ୍ଟିରେ ଟେବୁଲ ବାଡ଼େଇଥିଲେ ।

କିନ୍ତୁ କଥା କଥା । ବକ୍ତୃତା ବକ୍ତୃତା । ଆଦର୍ଶ ଆଦର୍ଶ । ଯେମିତି ଅଦାଲତରେ ସାକ୍ଷୀ ସମସ୍ତେ ସତ କଥା କହିବ ବୋଲି ଶପଥ ନେଇ ମଧ୍ୟ ମିଛ ଅନର୍ଗଳ କହିଯାଏ ଏବଂ ପଚାରିଲେ, କୁହେ—ଆଜ୍ଞା, ସତ କହିଲେ କଅଣ ଦୁନିଆ ଚଳିବ ନା କେହି ବଞ୍ଚିପାରିବେ; କିମ୍ବା, ଗୋଟାଏ ପ୍ରକାର ନିୟମ ତିଆରି ହେଲେ ମଧ୍ୟ କୁହାଯାଏ ନିୟମ ଅକ୍ଷରେ ଅକ୍ଷରେ ପାଳିଲେ କାମ ଅଚଳ ହୋଇଯିବ— ସେମିତି ମହାପୁରୁଷ ବାଗ୍‌ର ଆଦର୍ଶ, ଆଦର୍ଶରେ ହିଁ ରହିଗଲା ।

କାର୍ଯ୍ୟତଃ ଏଠାରେ କେବଳ ସେଇମାନେ ପ୍ରବେଶ କରିବାର ଅଧିକାର ପାଇଲେ, ଯେଉଁମାନଙ୍କର ମାସିକ ଆୟ ସ୍ୱଳ୍ପଅଙ୍କବିଶିଷ୍ଟ ସଂଖ୍ୟାରୁ ଊଣା ନୁହେଁ, କିମ୍ବା ଯେଉଁମାନେ ଖୁବ୍ ଉଚ୍ଚପଦସ୍ଥ କର୍ମଚାରୀ, କିମ୍ବା ବିଧାନସଭା ଆଦିର ସଭ୍ୟ, ସେମାନଙ୍କର ପାଖାପାଖି ଲୋକେ ଯିବାକୁ ଭୟ କଲେ । ଅନ୍ୟ ପରେ ନା କଥା । ତା'ଛଡ଼ା ଉଦ୍ୟାନର ମହାର୍ଘ ପରିବେଶ, ଉଦ୍ୟାନ ଭିତରେ ଥିବା ନୃତ୍ୟଶାଳା, ନୃତ୍ୟଶାଳାରେ ମହାର୍ଘ ପରିଚ୍ଛଦଧାରୀ ପାନରତ ନରନାରୀ, ପାନ ପରେ ନଗ୍ନ ଉଚ୍ଛୃଙ୍ଖଳତା, ମଖମଲ ଭଳି ଘାସ, ନାନା ବର୍ଣ୍ଣର ଝରଣା ଇତ୍ୟାଦି ପାଇଁ ସାଧାରଣ ଲୋକେ କେବଳ ଆର୍ଥିକ ଦୃଷ୍ଟିରୁ ନୁହେଁ, ନୈତିକ ଦୃଷ୍ଟିରୁ ମଧ୍ୟ ଭୟ କଲେ ମହାପୁରୁଷ ବାଗ୍ ଭିତରକୁ ଯିବାପାଇଁ ।

କିନ୍ତୁ ଯେହେତୁ ସମ୍ମାନିତ ବ୍ୟକ୍ତିମାନେ ମହାପୁରୁଷ ବାଗ୍‌କୁ ଯାଆନ୍ତି, ତେଣୁ ସାଧାରଣ ଲୋକଙ୍କର ଧାରଣା ଜାତହେଲା, ମହାପୁରୁଷ ବାଗ୍‌କୁ ପ୍ରବେଶ କରିପାରିଲେ ସେମାନେ ସମ୍ମାନିତ ହେବେ । 'ମୂର୍ଖନାଂ ମତିଭ୍ରମ' । ଅତଏବ ଯାହାର ମତିଭ୍ରମ ହୁଏ, ସେ ମୂର୍ଖ—ଏହା ଅଯୌକ୍ତିକ ହେଲେ ମଧ୍ୟ ଅନେକ କ୍ଷେତ୍ରରେ ଓଲଟାଟା, ସର୍ପରେ ରଜ୍ଜୁଭ୍ରମ ଭଳି, ସତ୍ୟ ବୋଲି ଧାରଣା ଜନ୍ମେ । ସେଇ ଭ୍ରମରେ ପଡ଼ି ଅନେକେ ମହାପୁରୁଷ ବାଗ୍‌ରେ ପ୍ରବେଶ କରିବାର ଯୋଗ୍ୟତା ହାସଲ କରିବାପାଇଁ ସସ୍ତ୍ରୀକ ମଦ୍ୟପାନ କରିବା, ଅବାଧ ପ୍ରେମ କରିବା, ତଥାକଥିତ ବଡ଼ ବଡ଼ ଲୋକମାନଙ୍କୁ ନିମନ୍ତ୍ରଣ କରି ଖୁଆଇବା, ଅପେକ୍ଷାକୃତ ଦରିଦ୍ର ବନ୍ଧୁବାନ୍ଧବମାନଙ୍କ ସଂସର୍ଗ ତ୍ୟାଗକରିବା ଇତ୍ୟାଦି ଅଭ୍ୟାସ କରିବାକୁ ଲାଗିଲେଣି । ମହାପୁରୁଷ ବାଗ୍‌ରେ ପ୍ରବେଶଟାଇ ହେଲା କାମ୍ୟ ; ସେ ଯେକୌଣସି ପ୍ରକାରରେ ହେଉ । ତା' ସାଙ୍ଗକୁ କିଛି କିଛି ବଡ଼ ବଡ଼ କଥା ଓ ସେ କଥା କହିଲାବେଳେ ଆବେଗ ପ୍ରକାଶ କରିବାର କାଇଦା ହାସଲ କରିପାରିଲେ ତ ମଣିକାଞ୍ଚନ ସଂଯୋଗ ! ସବୁ ଅସାଧୁତା ସଫଳତାର ସହ ଘୋଡ଼େଇ ହୋଇଯିବ । ଖାଲି ଏତିକି କଷ୍ଟ କରିବାକୁ ପଡ଼ିବ ଯେ, ବକ୍ତୃତା ଦେଲା ପରେ ଜଣେ ଅଧ ମଳିମୁଣ୍ଡିଆ ଦେଖି ତା କାନ୍ଧରେ ହାତ ପକାଇବାକୁ ପଡ଼ିବ; କିନ୍ତୁ ସେ କଷ୍ଟ କେତେ କ୍ଷଣ ! ଫୋଟୋ ଉଠାଇବାକୁ ଯେତେ ସମୟ ଲାଗେ । ଫୋଟୋଗ୍ରାଫର୍ ତ ପ୍ରସ୍ତୁତ ଥିବେ ।

କିନ୍ତୁ ଆମ ସ୍ୱାମୀଜୀଓ ସେପରି କୌଣସି ଭ୍ରମରେ ପଡ଼ିନଥିଲେ । ତାଙ୍କ ଭ୍ରମ ଜାତ ହେଲା ନିଛକ ବୋକାମିରୁ । ମହାପୁରୁଷ ବାଗ୍ ଉଦ୍‌ଘାଟନବେଳେ ନେତା ମହାଶୟ ଯେଉଁ ବକ୍ତୃତା ଦେଇଥିଲେ, ସେ ତାକୁ ଓଲଟା ବୁଝିଲେ; ଅର୍ଥାତ୍ ତାହା ଆନ୍ତରିକ ବୋଲି ଭାବିଲେ । ସ୍ୱାମୀଜୀଓଙ୍କର ଦୁର୍ଭାଗ୍ୟକୁ (ସେତେବେଳେ ସେ ଅବଶ୍ୟ ସୌଭାଗ୍ୟ ମଣିଥିଲେ) ବକ୍ତୃତା ପରେ ନେତା ମହାଶୟ ତାଙ୍କ କାନ୍ଧରେ ହାତ ରଖି ହସି କଥା କହୁଥିଲେ ଏବଂ ସେ ଫୋଟୋ ସବୁ ଖବରକାଗଜରେ ବାହାରିଯାଇଥିଲା । ପ୍ରାୟତଃ ଦେଖାଯାଏ ବାହାରକୁ ଯା ସତ୍ୟ ବା ମିଥ୍ୟା ବୋଲି ଦିଶେ, ପ୍ରକୃତରେ କଥାଟା ଠିକ୍ ତା'ର ଓଲଟା । ତାଙ୍କର

ସହକର୍ମୀ ବନ୍ଧୁମାନେ ତାଙ୍କୁ ନେତାଙ୍କ ବକ୍ତୃତାରେ ନିହିତ ଜଟିଳ ସତ୍ୟଟା ବୁଝାଇବାକୁ ଯେତେ ଚେଷ୍ଟାକଲେ ମଧ୍ୟ ସେ ବାହାରର ସରଳ ସତ୍ୟଟାକୁ ହିଁ ଗ୍ରହଣ କଲେ ।

ରାମାରାଓ ଦେଖିବାକୁ ସୁନ୍ଦର । ସେ କବି-ପ୍ରକୃତିର । କାମ କରୁ କରୁ ନିଜ ତିଆରି ଗୀତମାନ ଗାଇବା ତାଙ୍କର ଅଭ୍ୟାସ । ସୁନ୍ଦର ଗାଇପାରନ୍ତି ସେ । କାମରୁ ଫୁରସତ୍ ପାଇବା ମାତ୍ରକେ ସେ ଗୀତ ରଚନା କରିବାକୁ ବସିଯାଆନ୍ତି ଓ ଦଦର ହାରମୋନିଅମ୍‌ରେ ସୁର ସଂଯୋଗ କରନ୍ତି । ଗୀତଗୁଡ଼ିକ ତେଲୁଗୁରେ । ତା'ର ଅର୍ଥ କିଛି ବୁଝି ନ ପାରିଲେ ମଧ୍ୟ ମୁଗ୍ଧ ହୋଇଯିବା ଭଳି ସୁର ସେସବୁ ଗୀତର । ଜଣକୁ ସେ ଗୋଟିଏ ଗୀତର ଅର୍ଥ ବୁଝାଉଥିବାର ମୁଁ ଶୁଣିଛି—ମୁଁ ସମସ୍ତଙ୍କ ଗୋଡ଼ ସେବା କରିବ'ର, ହେ ଜଗନ୍ନାଥ, ତୁମର ଗୋଡ଼ ନଥିବାର ସତ୍ୟ କି ? ରାମାରାଓଙ୍କ ସ୍ତ୍ରୀ ସୁନ୍ଦରୀ । ସେ ମଧ୍ୟ ରାମାରାଓଙ୍କ ସହିତ ତନ୍ମୟ ହୋଇ ଗୀତ ଗାଆନ୍ତି ଲୁହପାଣି ଗଡ଼ୁ ଗଡ଼ୁ ।

ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେଲା ପରେ ରାମାରାଓ ଓ ତାଙ୍କ ସ୍ତ୍ରୀ ଦୁହିଁଙ୍କ ଇଚ୍ଛା ହେଲା ସେ ପ୍ରମୋଦୋଦ୍ୟାନକୁ ଯିବାପାଇଁ । ସମ୍ମାନିତ ହେବା ପାଇଁ ନୁହେଁ, ନେତା ମହାଶୟଙ୍କ କଥାରେ ଅନୁପ୍ରାଣିତ ହୋଇ । ଦିନେ ଶନିବାର ଅପରାହ୍ଣ ସେମାନେ ବାହାରିଲେ । ରାମାରାଓ ପିନ୍ଧିଲେ ପରିଷ୍କାର ଧୋତି ଓ ପଞ୍ଜାବି, କାନ୍ଧରେ ଚାଦର । ତାଙ୍କ ସ୍ତ୍ରୀ ପିନ୍ଧିଲେ ନାଲି ରଙ୍ଗର ଖଣ୍ଡେ ଶାଢ଼ି । ତାଙ୍କର ପଡ଼ୋଶୀ ଓ ବନ୍ଧୁ ରିକ୍ସାବାଲା ଗଙ୍ଗାୟା ସେମାନଙ୍କୁ ନେଇଗଲେ ।

ଉଦ୍ୟାନ ଫାଟକ ପାଖରେ ସେତେବେଳେ ମଟର ଭିଡ଼ । ମଟରରୁ ବାହାରୁଥାଆନ୍ତି ମହାର୍ଘ ପେଣ୍ଟକୋଟ-ପରିହିତ ଓ ମହାର୍ଘ ଝୀନବାସ-ପରିହିତ ନରନାରୀମାନେ । ବାହାରିବା ପରେ ସମସ୍ତେ ଗୋଳେଇ ମିଶେଇ ହୋଇ ଯାଉଥାନ୍ତି । ପୁରୁଷମାନଙ୍କର ଯୁବକସୁଲଭ ପରିପାଟୀ ଓ ନାରୀମାନଙ୍କ ଅଙ୍ଗପ୍ରସ୍ତୁତିରୁ ସେମାନଙ୍କର ବୟସ କଳନା କରିବା ଭୁଲ ହେବ । ସେମାନଙ୍କୁ ଦେଖିଲେ ଡାର୍‌ୱିନ୍‌ଙ୍କ ମତ ପ୍ରତି ସ୍ୱତଃ ସମ୍ମାନ ଆସିଯାଏ । 'ହ୍ୟାଲୋ ମିସେସ୍ ପ୍ରକାଶ, ହ୍ୟାଲୋ ହ୍ୟାଲୋ ମିଷ୍ଟର ଚକ୍ରବର୍ତ୍ତୀ, ହା' ଡୁ ଡୁ'ରେ ବାୟୁମଣ୍ଡଳ ମୁଖରିତ ହୋଇଉଠିଥାଏ । ଦୂରକୁ ଖାଲି ଶୁଭୁଥାଏ, ହାଉ ହାଉ, ଗାଁ ହାଟ ଗୋଳମାଳ ଭଳି । ସମସ୍ତେ ଦଳ ଦଳ ହୋଇ ପ୍ରବେଶ କରୁଥାନ୍ତି ଉଦ୍ୟାନ ଭିତରକୁ । ଦରଓ୍ୱାନ୍ ସଲାମ କରି କରି ଦଇଞ୍ଚିଷ, ହାତ ତା'ର ବଥେଇଯିବଣି ନିଶ୍ଚୟ ।

ଏଇ ସମୟରେ ରାମାରାଓ ଓ ତାଙ୍କ ସ୍ତ୍ରୀଙ୍କୁ ନେଇ ଗଙ୍ଗାୟାର ରିକ୍ସା ଫାଟକ ପାଖରେ ଛିଡ଼ାହେଲା । ରାମାରାଓ ମଧ୍ୟ ଅନ୍ୟମାନଙ୍କୁ ଅନୁକରଣ କରି ସ୍ତ୍ରୀଙ୍କ ହାତ ଧରି ରିକ୍ସାରୁ ଓହ୍ଲାଇ ଦେଇ ଫାଟକ ପାଖରେ ଛିଡ଼ାହେଲେ । ଦରଓ୍ୱାନ୍‌ର ହାତ ସଲାମ କରୁ କରୁ ଅଧାରେ ସନ୍ଦିଗ୍ଧ ଭାବରେ ଅଟକିଗଲା ଓ ହଠାତ୍ ପ୍ରସାରିତ ହେଲା ବାଧା ଦେବାର ଭଙ୍ଗୀରେ । ଯିଏ ପେଣ୍ଟକୋଟ ପିନ୍ଧି ନାହିଁ, ସିଏ କେମିତି ଯିବ ଭିତରକୁ ।

କିନ୍ତୁ ସୌଭାଗ୍ୟବଶତଃ ଠିକ୍ ସେଇ ସମୟରେ ମହାପୁରୁଷ ବାଗ୍ ଉଦ୍‌ଘାଟକ ନେତା ମହାଶୟଙ୍କ ମଟର ଗାଡ଼ି ଅମକ ଛୁଟିଆସିଲା । ବହୁମୂଲ୍ୟ ମଟର ଆନନ୍ଦରେ ନାଚି ଉଠିଲା । ଓହ୍ଲାଇଲେ ନେତା ଓ ନେତ୍ରୀ । ସମସ୍ତେ ସେଣ୍ଟକୋଟଧାରୀ । ପଦସ୍ଥ ଓ ଧନୀମାନେ ସାଙ୍ଗରେ ଗୋଡ଼େଇ ଗୋଡ଼େଇ ନେଇଗଲେ ମନ୍ତ୍ରୀଙ୍କୁ ଉଦ୍ୟାନଭିତରକୁ । ସେ ସୁଅରେ ଦରଓ୍ୱାନ୍‌ର କ୍ଷୀଣ ବାଧା ଭାସିଗଲା । ରାମାରାଓ ଓ ତାଙ୍କ ସ୍ତ୍ରୀ ମଧ୍ୟ ଭାସିଗଲେ ଭିତରକୁ ସେ ସୁଅରେ ପଡ଼ି । ଭୟରେ ରାମାରାଓ ଥରେ ମନ୍ତ୍ରୀଙ୍କ ସାମନାକୁ ଲାଗିଯାଇ ହସି ନମସ୍କାର କଲେ । ଇତିମଧ୍ୟରେ ସେ ଦେଖିଲେ ତାଙ୍କ ସ୍ତ୍ରୀଙ୍କୁ ଭିଡ଼ନେଇ ଧରି ଚାଲିଛନ୍ତି ପୁଲିସ୍ ସାହେବ ମିଷ୍ଟର ପ୍ରକାଶ୍ । ରାମାରାଓ ତାହା ଦେଖି ମନେ ମନେ ଗର୍ବ ଅନୁଭବ କଲେହେଁ ଖାଲି ସେ ନ ହେଲେ ତା ନୁହେଁ ।

ସନ୍ଧ୍ୟା ହୋଇଗଲାଣି । ହଠାତ୍ ଜଳିଉଠିଲା ମହାପୁରୁଷ ବାଗ୍‌ରେ ନାନା ବର୍ଣ୍ଣର ବିଜୁଳି ଆଲୁଅ ସବୁ । ଉଦ୍ୟାନର ଫୁଆରା ସବୁ ହଠାତ୍ ଆନନ୍ଦରେ ଲମ୍ଫ ଦେଲେ ଆକାଶକୁ । ବୃକ୍ଷମାନଙ୍କରେ ଜଳିଉଠିଲା ନାଲି ନେଲି ରଙ୍ଗର ଫୁଲସବୁ । ସେ ବୃକ୍ଷଗୁଡ଼ିକ ମଧ୍ୟ ଅଦ୍ଭୁତ । କଏ ଠିକ କୋଣିଆ, କଏ ଗୋଲ କୋଣିଆ, କଏ ପୁଣି ବାଘ ପରି, କଏ ହାତୀ ପରି !

ଅଳ୍ପ ସମୟ ପରେ ମହାପୁରୁଷ ବାଗ୍‌ରୁ ନୃତ୍ୟ ଓ ଗାନଶାଳାରୁ ରକ୍ ଏଣ୍ଡ୍ ରୋଲ୍ ବାଦ୍ୟ ବାଜିଉଠିଲା । ସମସ୍ତେ ପାଗଳ ଭଳି ଦୌଡ଼ିଲେ ନୃତ୍ୟଶାଳାକୁ । ନେତା ଓ ନେତ୍ରୀ ମଧ୍ୟ । ରାମାରାଓଙ୍କ ସ୍ତ୍ରୀଙ୍କୁ ଟାଣି ନେଉଥାନ୍ତି ମିଷ୍ଟର ପ୍ରକାଶ । ରାମାରାଓଙ୍କ ସ୍ତ୍ରୀ ବ୍ୟାକୁଳ ଭାବରେ ଖୋଜୁଥାଆନ୍ତି ତାଙ୍କ ସ୍ୱାମୀଙ୍କୁ । ଏଣେ ରାମାରାଓଙ୍କୁ ଆକ୍ରମଣ କରିଥାଆନ୍ତି ମିସେସ୍ ସାବିତ୍ରୀ ଧନପତି, ପ୍ରସିଦ୍ଧ ବ୍ୟବସାୟୀ କୋଟିପତି ମିଷ୍ଟର ଧନପତିଙ୍କ ସ୍ତ୍ରୀ । ମିସେସ୍ ଧନପତି ଭାବିଥାଆନ୍ତି ରାମାରାଓ ବିଧାନସଭାର ଜଣେ ସଭ୍ୟ, ଆଉ ମିଷ୍ଟର ପ୍ରକାଶ୍ ଭାବିଥାଆନ୍ତି ରାମାରାଓଙ୍କ ସ୍ତ୍ରୀ ଜଣେ ନାରୀନେତ୍ରୀ ।

ମହାପୁରୁଷ ବାଗ୍‌ର ଫାଟକ ବନ୍ଦ ହୋଇଗଲାଣି ସେତେବେଳକୁ । ନୃତ୍ୟଶାଳାରେ ଆରମ୍ଭ ହୋଇଗଲାଣି ମଦ୍ୟପାନ । ସମବେତ ନର-ନାରୀ ସମସ୍ତେ ମାଛଭଳି ପାନ କରୁଥାଆନ୍ତି ସୁରା । ଆଜି ନେତା-ଇନ୍ଦ୍ର ନିଜେ ନୃତ୍ୟଶାଳାରେ ବିରାଜମାନ ଶଚୀ ଦେବୀଙ୍କ ସହିତ । ସେମାନଙ୍କର ଉପସ୍ଥିତିର ଉପଯୁକ୍ତ ସମ୍ମାନ ଦେବାପାଇଁ ଆଜି ସମସ୍ତେ ବହୁତ ବହୁତ ପାନ କରିବାକୁ ବାଧ୍ୟ । ଇନ୍ଦ୍ର ଓ ଶଚୀ ଦେବୀ ମଧ୍ୟ ବହୁତ ପାନ କଲେ । ରାମାରାଓ ମଧ୍ୟ ମିସେସ୍ ଧନପତିଙ୍କ ବାଧ୍ୟ-ବାଧକତାରେ ପଡ଼ି ପାନକଲେ । ତେଣେ ତାଙ୍କ ସ୍ତ୍ରୀଙ୍କ ମୁଖରେ ମିଷ୍ଟର ପ୍ରକାଶ୍ ମଧ୍ୟ ପେଗ୍ ପରେ ପେଗ୍ ଢାଳୁଥାଆନ୍ତି । ସେ ଖାଲି ହଁ ଟା କରି ଛଡ଼ାହୋଇଥାଆନ୍ତି, ଆଉ ତାଙ୍କ ଆଖି ବ୍ୟାକୁଳ ଭାବରେ ଖୋଜୁଥାଏ ସ୍ୱାମୀଙ୍କୁ ।

ରକ୍ ଏଣ୍ଡ୍ ରୋଲ୍ ଉଦ୍ଦାମଭାବରେ ବାଜିଉଠିଲା ଏକ ଉଦ୍ଦାମ ନୃତ୍ୟର ସଙ୍କେତ ଦେଇ । ମୁଗ୍‌ଧ ହୋଇ ସମସ୍ତେ ବେତାଳିଆ ନାଚିଲେ । ନେତା-ମହାଶୟ ଟଳଟଳ ଆଖି

ହସି ହସି ମିଷ୍ଟର ପ୍ରକାଶ୍‌ଙ୍କୁ ଠେଲିଦେଇ ରାମାରାଓଙ୍କ ସ୍ତ୍ରୀଙ୍କୁ ନେଇ ନାଚିବାକୁ ଲାଗିଲେ ଉଦ୍ଦାମ ଭାବରେ ।

ସେତେବେଳେ ରାମାରାଓ ଥାଆନ୍ତି ମିସେସ୍ ଧନପତିଙ୍କ ବଜ୍ରଆଲିଙ୍ଗନରେ । ମିସେସ୍ ଧନପତି କହୁଥାଆନ୍ତି, ଡାର୍ଲିଂ, ତୁମେ କବି ? ଯଦି ହୁଅ, ଗୋଟିଏ ମଜୁଆଲା ଗୀତ ଗାଅ । ରାମାରାଓଙ୍କୁ ନିଶା ଘାରିଥିଲେ ମଧ୍ୟ ଯଥେଷ୍ଟ ଜ୍ଞାନ ଥାଏ । ଗୀତ ଗାଇବାକୁ ସେ କୁଣ୍ଠାବୋଧ କରୁଥାଆନ୍ତି; କିନ୍ତୁ ଯେତେବେଳେ ମିସେସ୍ ଧନପତି ତାଙ୍କ କାଖ ହୋଇପଡି ବାରମ୍ବାର ଅନୁରୋଧ କଲେ, ସେତେବେଳେ ରାମାରାଓ ଆଉ ସମ୍ଭାଳି ନପାରି ଖୁବ୍ ଉଚ୍ଚ ସ୍ୱରରେ ଗାଇବାକୁ ଲାଗିଲେ ସେଇ ଗୀତ, ଯାହାର ଅର୍ଥ, ମୁଁ ସମସ୍ତଙ୍କ ଗୋଡ଼୍‌ଡ଼ ସେବା କରିବାର, ହେ ଜଗନ୍ନାଥ, ତୁମ ଗୋଡ଼୍‌ଡ଼ ନ ଥିବାର ସତ୍ତ୍ୱ କି ? ରାମାରାଓଙ୍କ ମତରେ ଏ ଗୀତ ତାଙ୍କର ଶ୍ରେଷ୍ଠ ରଚନା, ସମସ୍ତେ ଶୁଣି ମୁଗ୍ଧ ହୋଇଯିବେ , କିନ୍ତୁ ସମସ୍ତେ ତାଙ୍କ ଆଡ଼କୁ କ୍ରୁଦ୍ଧ ଦୃଷ୍ଟିରେ ଅନାଇ ରହିଥିବାର ଦେଖି ସେ ଚମକିଗଲେ ।

ହଠାତ୍ ଏପରି ବେଖାପ୍‌ପା ଗୀତ ଶୁଣି ରକ୍ ଏଣ୍ଡ୍ ରୋଲ୍ ବାଦ୍ୟ ବନ୍ଦ ହୋଇଗଲା । ନେତା ଗର୍ଜି ଉଠିଲେ, ହୁ ଇଜ୍ ଦ୍ୟାଟ୍ ଫୁଲିଶ୍ ? ସମସ୍ତ ନରନାରୀ ଗର୍ଜି ଉଠିଲେ ଶତ ଫଣିମା ଭଳି, ହୁ, ହୁ, ହୁ, ହୁ,...... । ନୃତ୍ୟଶାଳା ଭିତରେ ହୁ-ହୁ ଝଡ଼ ବୋହିଗଲା । ସମସ୍ତେ ନାଚ ବନ୍ଦ କରି କ୍ରୁଦ୍ଧ ନୟନରେ ଛିଡ଼ାହୋଇ ଥାଆନ୍ତି ।

ରାମାରାଓଙ୍କ ନିଶା କମିଯିବାକୁ ଲାଗିଲା । ସେ ନେତାଙ୍କ ଆଡ଼େ ହସି ହସି ଗୁହାରି ହେଲେ, ଆଜ୍ଞା ମୋତେ ଚିହ୍ନିପାରୁ ନାହାନ୍ତି ? ମୁଁ ପରା ମୋଚି ରାମାରାଓ, ଆପଣଙ୍କ ଜୋତା କେତେ ଥର ମରାମତି କରି ଆପଣଙ୍କ ଘରକୁ ନେଇଯାଇଛି । ଆପଣଙ୍କ ସହିତ ମୋର ଫୋଟୋ ବାହାରିଛି ଖବରକାଗଜରେ ।

ହୁ-ହୁ ? ଝଡ଼ ଆହୁରି ଜୋରରେ ବହିବାକୁ ଲାଗିଲା । ଗଳା ଧକ୍‌କା ଖାଇ ରାମାରାଓ ଓ ତାଙ୍କ ସ୍ତ୍ରୀ ନୃତ୍ୟଶାଳାରୁ ବିତାଡ଼ିତ ହେଲେ ।

ତାହାର କିଛି ଦିନ ପରେ ଦିନେ ଦେଖିଲି ରାମାରାଓଙ୍କ ଘରପାଖରେ ପୁଲିସ୍ । ପଚାରି ବୁଝିଲି ରାମାରାଓ ପୁଲିସ୍ ସାହେବଙ୍କ ଘରୁ ଜୋତା ଚୋରି କରିଥିବାରୁ ପୁଲିସ୍ ତାକୁ ଧରିବାକୁ ଆସିଛି । ରାମାରାଓଙ୍କୁ ହାତକଡ଼ା ପକାଇ ପୁଲିସ୍ ନେଇଗଲେ । ରାମାରାଓଙ୍କ ସ୍ତ୍ରୀ କାନ୍ଦି ଉଠି କହିଲେ, କାହିଁକି ତୁମେ ମନ୍ତ୍ରୀଙ୍କ କଥାରେ ଭୁଲି ସେ ପୋଡ଼ା ବଗିଚାକୁ ଯାଇଥିଲ ଗୋ —କାହିଁକି ?

ରାମାରାଓଙ୍କୁ ପଚାରିଲି, କଥାଟା କଅଣ ରାମାରାଓ ? ତୁମେ ଜୋତା ଚୋରି କରିଚ ସତେ ? ରାମାରାଓଙ୍କ ଆଖିରୁ ପାଣି ଝରିପଡ଼ିଲା । ସେ ମ୍ଲାନ ଭାବରେ ହସି କହିଲେ, ଏକଦମ୍ ମିଛକଥା ଆଜ୍ଞା ! ମୋର ମହାପୁରୁଷ ବାଗ୍ ଭିତରକୁ ଯିବାର ଫଳ ଇଏ । ବିଶ୍ୱାସ ନ କରି

ପଚାରିଲି, କିନ୍ତୁ ତୁମ ଘରୁ ତ ପୁଲିସ୍ ସାହେବଙ୍କ କୋଠା ବାହାରିଲା ? ସେ ସେମିତି ହସି କହିଲା, ମୁଁ ବି ତ ବୁଝି ପାରୁନାହିଁ ସେ କଥା ।

ରାମରାଓ ଜେଲ ହାଜତରେ ରହିଲେ । ତାଙ୍କୁ ଜାମିନରେ ମଧ୍ୟ କେହି ନେଲେନାହିଁ । ଛ' ମାସ ପରେ ବିଚାର ଶେଷ ହେଲା । ରାୟ ହେଲା ଚୋରି ପ୍ରମାଣିତ ହୋଇ ଥିବାରୁ ରାମାରାଓଙ୍କୁ ଛ' ମାସ ଜେଲ । ରାମାରାଓ ଓକିଲ ଦେବାକୁ ନାରାଜ ହେଲେ ଏବଂ ଦୋଷ ସ୍ୱୀକାର କଲେ । ବିଚାରକଙ୍କୁ ବିଶେଷ କଷ୍ଟ ପଡ଼ିଲା ନାହିଁ ବିଚାର କରିବାକୁ ।

ଛ' ମାସ ଜେଲ୍ ମିଆଦ ପରେ ରାମାରାଓ ଜେଲ୍‌ରୁ ଖଲାସ ହୋଇ ବାହାରିଲେ ଉପରଓଳି । ସେଦିନ ଥାଏ ମହାପୁରୁଷ ବାଗ୍ ଉଦ୍‌ଘାଟିତ ହେବାର ବାର୍ଷିକ ଉତ୍ସବ । ରାମାରାଓ ସେଇ ବାଟେ ଘରକୁ ଫେରୁଥାନ୍ତି । ଫାଟକ ପାଖରେ ଛିଡ଼ାହୋଇ ସେ ନେତାଙ୍କ ଗୁରୁଗମ୍ଭୀର ବକ୍ତୃତା ଶୁଣିଲେ—ମହାପୁରୁଷ ବାଗ୍ ତାର ଆଦର୍ଶରେ ଆଗେଇ ଚାଲିଛି । ଜାତି-ଧର୍ମ-ଅର୍ଥ-ପଦବୀ-ନିର୍ବିଶେଷରେ ଏଠି ସମସ୍ତଙ୍କ ପ୍ରବେଶ ଅଧିକାର ଅଛି । ମୁଁ ଆଜି ପୁଣି ଥରେ ଜଣାଇରଖୁଛି, ଏ ଦେଶରେ ଆଜି ଗଣତନ୍ତ୍ର ଶାସନ ଥିବାରୁ···

ରାମାରାଓ ଶୁଣି ମ୍ଲାନଭାବରେ ହସିଲେ । ହଠାତ୍ ଦୁମ୍‌ଦୁମ୍ ଶବ୍ଦ, ଶୁଣି ଚମକି ପଡ଼ି ରାମାରାଓ ଦେଖିଲେ ନେତା ଟେବୁଲ ଉପରେ ବିଧା ମାରୁଛନ୍ତି ।

ରାମାରାଓ ଏଥର ଠୋ-ଠୋ କରି ହସିପକେଇଲେ । ଦରୱାନ୍ ସେଠାରୁ ତାଙ୍କୁ ତଡ଼ିଦେଲା । ଘରକୁ ଆସି ରାମାରାଓ ଦେଖିଲେ ଘରେ ସ୍ତ୍ରୀ ନାହିଁ । ଶୁଣିଲେ ପୁଲିସ୍ ତାକୁ କେବେଠୁଁ ଧରିନେଇ ଯାଇଥିଲା ପୁଲିସ୍ ସାହେବ ଘରକୁ । ତା'ପରେ ସେ ଆଉ ଫେରିନାହିଁ ।

ଘରକୋଣରେ ତାଙ୍କର ଦାଦାର ହାର୍‌ମୋନିୟମ୍, କବିତାଖାତା ଓ ଯୋତା ମରାମତି ଯନ୍ତ୍ରପାତି ସବୁ ସାଇତା ହୋଇ ଥୁଆହୋଇଛି । ଗଲାବେଳେ ତାଙ୍କ ସ୍ତ୍ରୀ ସେସବୁ ସଜାଡ଼ି ସାଇତି ରଖିଦେଇ ଯାଇଛନ୍ତି ।

□□□

# ଅପରାଧୀ

ଶ୍ରୀ ଦଣ୍ଡଧାରୀ ମହାପାତ୍ର, ଏମ୍. ଏ. ବି. ଏଲ୍. ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ, ବାହାରିଚନ୍ତି ତାଙ୍କର ବଙ୍ଗଳାକୁ । ସୁନ୍ଦର ସରକାରୀ ଘର । ସାମନାରେ ଫୁଲ ବଗିଚା । ପୋର୍ଟିକୋରେ ମଟର ରହିଚି ଓ ବେଟହେରା ତାକୁ ଯତ୍ନସହକାରେ ପୋଛୁଚି । ଗୌରକାନ୍ତି, ସୁଦୀର୍ଘ, ସୁନ୍ଦର ଦେଖିବାକୁ ମହାପାତ୍ର ସାହେବ । ଚାଲିଚାଲିଦେଲେ ସେ ଶରୀର ଉପରାର୍ଦ୍ଧ

ଟିକିଏ ଝୁଙ୍କାଇ ଗମ୍ଭୀର ସ୍ୱରରେ କହନ୍ତି ମୁହଁରେ ପାଇପ ଗୁଞ୍ଜି । ସ୍ୱର ସୁନ୍ଦର ଢଙ୍ଗେ ତାଙ୍କ ଏପରି ଠାଣିରେ କହିଲାବେଳେ । ବିବାହ କରିଛନ୍ତି ମଧ୍ୟ ସୁଶିକ୍ଷିତା, ସର୍ବାଙ୍ଗସୁନ୍ଦରୀ ଧନୀ କନ୍ୟା ସୁଷମା ଦେବୀଙ୍କୁ । ଛାତ୍ରାବସ୍ଥାରେ ସେ କଠୋର ପରିଶ୍ରମୀ ଥିଲେ । ଦରିଦ୍ର ଗୃହରେ ଜନ୍ମ ହୋଇଥିଲେ ମଧ୍ୟ ପିଲାବେଳୁ ତାଙ୍କର ଉଚ୍ଚ ଆକାଂକ୍ଷା ଥିଲା – ବଡ଼ ହେବେ । ତାଙ୍କର ଆଶା ଫଳବତୀ ହୋଇଛି; କିନ୍ତୁ ସାଫଲ୍ୟ ସହିତ ଶିଥିଳତା ଆସିନାହିଁ । ନିଜର ପରିଶ୍ରମ ଯୋଗୁଁ ଅଳ୍ପଦିନ ମଧ୍ୟରେ ଚାକିରିରେ ସୁନାମ ଅର୍ଜ୍ଜନ କରିଛନ୍ତି ।

ପ୍ରାତଃଭୋଜନ ପରେ ସେ ଆଗେଇଗଲେ ମଟରକୁ । ସୁଷମା ଦେବୀ ଘରୁ ବାହାରି ଆସିଲେ ଓ ବଗିଚାରୁ ଗୋଟିଏ ଗୋଲାପ ଆଣି ବଢ଼ାଇଦେଲେ ମହାପାତ୍ର ସାହେବଙ୍କ ଆଡ଼େ । ହସି ହସି ଫୁଲଟି ନେଇ ସେ ଆଗେଇଗଲେ ମଟର ଆଡ଼େ । ଚପରାସୀ ସଲାମ କରି ମୋଟର ଦୁଆର ଖୋଲି ଛିଡ଼ାହେଲା । ମହାପାତ୍ର ସାହେବ ମୁହଁରେ ପାଇପ ଗୁଞ୍ଜି ମୋଟରରେ ସାଇଁ କରି ବାହାରିଗଲେ । ଝଲକାଏ ଧୂଆଁ ମୋଟରର ପଛପଟୁ ବାହାରି କିଛିକ୍ଷଣ ପୋର୍ଟିକୋ ଭିତରେ ଏଣେତେଣେ ବୁଲି ମିଳାଇଗଲା ।

ସାଇଁ କରି ମୋଟର ଆସି ତାଙ୍କର ବିଚାରାଳୟ ସାମନାରେ ଛିଡ଼ାହେଲା । ମୋଟରରୁ ବାହାରି ପାଇପ୍‌ରେ ପୁଣି ଅଗ୍ନି ସଂଯୋଗ କରି ସେ ସେଇ ସୁନ୍ଦର ଠାଣିରେ ପଶିଲେ ଘର ଭିତରକୁ । ପେସ୍କାର ଚୌକି ଛାଡ଼ି ଛିଡ଼ାହୋଇ ନମସ୍କାର କଲେ । ପୁଲିସ୍‌ବାଲାମାନେ ଛିଡ଼ାହୋଇ ସାଲ୍ୟୁଟ୍ କଲେ । ଓକିଲମାନେ ଛିଡ଼ାହୋଇ ନମସ୍କାର କଲେ । କାହାରି ଆଡ଼କୁ ନଚାହିଁ ସମସ୍ତଙ୍କୁ ମୁଣ୍ଡ ହଲାଇ ପ୍ରତିନମସ୍କାର କରି ମହାପାତ୍ର ସାହେବ ଚୌକିରେ ବସି ପେସ୍କାର ଆଡ଼େ ଚାହିଁଲେ । ପେସ୍କାର ବୁଝିଲେ ସେ ଦିନକାର ମକଦ୍ଦମାଗୁଡ଼ିକର ନଥିପତ୍ର ଆଣିବାର ଆଦେଶ ହେଲା ।

ଶୀଘ୍ର ମକଦ୍ଦମା କାର୍ଯ୍ୟ ଶେଷ କରିବାକୁ ହେବ । ଦିନ ତିନିଟାବେଳେ ଅଛି ସମାଜମଙ୍ଗଳ କେନ୍ଦ୍ର ସମିତିର ସଭା ଓ ଜଳପାନ । ନିଜ ଅକ୍ଲାନ୍ତ ପରିଶ୍ରମରେ ସମାଜମଙ୍ଗଳ କେନ୍ଦ୍ର ପାଇଁ ନାନା ସ୍ଥାନରେ ଅନେକଗୁଡ଼ିଏ ଘର ତିଆରି କରିସାରିଲେଣି । ଯେଉଁଥିରେ ସେ ହାତ ଦେଉଛନ୍ତି, ସେଥିରେ ସେ ସଫଳ ହେଉଛନ୍ତି; ଭାଗ୍ୟବଳରେ ନୁହଁ, ନିଜର ପୁରୁଷକାର ବଳରେ । ନିଜର ସାଫଲ୍ୟମୟ ଜୀବନର ତୃପ୍ତି ପ୍ରତିଫଳିତ ହୋଇଛି ତାଙ୍କର ଚରିତ୍ରରେ, ଆଦର୍ଶରେ । ଜୀବନ ଉଦ୍ଦେଶ୍ୟମୟ, କର୍ମମୟ । ତାଙ୍କର ଘରର ଟେବୁଲ ସାମନାରେ ଯୋଗବାଶିଷ୍ଠ ରାମାୟଣର କେତେକ ଅଂଶ ବଡ଼ ବଡ଼ ଅକ୍ଷରରେ ଲେଖାହୋଇ ରହିଛି : "ଇହସଂସାରରେ ଯଥାଯୋଗ୍ୟ ପୁରୁଷାର୍ଥ ପ୍ରୟୋଗ କଲେ ସମସ୍ତେ ସବୁ ବିଷୟ ସର୍ବଥା ପ୍ରାପ୍ତ ହୋଇପାରିବେ । ପ୍ରାକ୍ତନ ପୁରୁଷାର୍ଥକୁ ଅର୍ଥାତ୍ ଦୈବକୁ ବର୍ତ୍ତମାନ ପୁରୁଷକାର ଦ୍ୱାରା ଜୟ କରିବା ସମ୍ଭବ । ଉତ୍ସାହ ସମନ୍ୱିତ ଦୃଢ଼ାଭ୍ୟାସୀ ଯତ୍ନଶୀଳ ପୁରୁଷ ଶତ ଶତ ସୁମେରୁ ପର୍ବତକୁ ମଧ୍ୟ ଚୂର୍ଣ୍ଣ କରିପାରେ । ହତବୁଦ୍ଧି ସମ୍ପନ୍ନ ପୁରୁଷକାରହୀନ ବ୍ୟକ୍ତିମାନେ କେବଳ କୁହନ୍ତି, ଦୈବ ମୋତେ ଏହିପରି କାର୍ଯ୍ୟରେ ନିଯୁକ୍ତ କରିଛନ୍ତି ।" ପୁଣି ଆଉ

ଗୋଟିଏ ପଟାରେ ବଡ଼ ବଡ଼ ଅକ୍ଷରରେ ନାଲି କାଳିରେ ଲେଖା ଅଛି ଯୋଗବାଶିଷ୍ଠ ରାମାୟଣର ଆଉ ଗୋଟିଏ କଥା : "ଅଳ୍ପବଳ ବ୍ୟକ୍ତିମାନେ ପ୍ରଯତ୍ନଶାଳୀ ବଳବାନ୍ ବ୍ୟକ୍ତିମାନଙ୍କର ଉପଭୋଗ ସ୍ୱରୂପ ।"

ଅସାଧୁତା ବା ଆଳସ୍ୟ ସେ ଟିକିଏ ମାତ୍ର ସହ୍ୟ କରିପାରନ୍ତି ନାହିଁ । କଠୋର ହସ୍ତରେ ଓ ନିର୍ମମ ଭାବରେ ସେ ତାହା ଦମନ କରନ୍ତି । ନିଜର ଜୀବନକୁ ମଧ୍ୟ ସେ ଗଢ଼ିଚନ୍ତି ସେହିପରି କଠୋର ଭାବରେ । ତଥାପି ତାଙ୍କର କର୍ମରେ ତୃପ୍ତି ନାହିଁ । କୁସୁମପୁର ଗ୍ରାମର ଲୋକେ କେତେକ ଟାଉଟରଙ୍କ କଥାରେ ମାତି ତାଙ୍କର ସମାଜମଙ୍ଗଳ କାମରେ ବାଧା ଉପୁଜାଉଛନ୍ତି । ତାଙ୍କ ସାମନାରେ ଥୁଆହୋଇଥିବା ସେହି ବିପୋର୍ଟଟି ପଢ଼ି ତାଙ୍କର କପାଳର ରେଖା ଘୃଣା ଓ କ୍ରୋଧରେ କୁଞ୍ଚିତ ହୋଇଗଲା । ମନେ ମନେ ସେ କହିଲେ, ଲୋକେ ଶିକ୍ଷିତ, ସାଧୁ ଓ ସର୍ବୋପରି ସୁଶୃଙ୍ଖଳ ନ ହେବା ପର୍ଯ୍ୟନ୍ତ ଗଣତନ୍ତ୍ର ସଫଳ ହେବା ଅସମ୍ଭବ ।

ଅଳ୍ପଦିନ ପୂର୍ବେ କୁସୁମପୁରରେ ଘଟିଥିବା ଗୋଟିଏ ଘଟଣା ତାଙ୍କର ମନେ ପଡ଼ିଯିବାରୁ ମନ ତାଙ୍କର କ୍ରୋଧାନ୍ୱିତ ହୋଇଉଠିଲା । ନାରୀମଙ୍ଗଳ କାର୍ଯ୍ୟ ପାଇଁ ସୁଷମା ଦେବୀ ଯାଇଥିଲେ ସେ ଗ୍ରାମକୁ ଓ ତାଙ୍କ ସହିତ ସେ ମଧ୍ୟ ଯାଇଥିଲେ । ସନ୍ଧ୍ୟାବେଳେ ସୁଷମା ଦେବୀଙ୍କ ସଭାପତିତ୍ୱରେ ଗୋଟିଏ ସଭା ହେବାର କଥା ପଡ଼ିଲା; କିନ୍ତୁ କୁସୁମପୁରର ମୁଖିଆମାନେ ଘୋର ଆପତ୍ତି ଜଣାଇଲେ ଯେ ସେମାନଙ୍କର ଝିଅ-ବୋହୂମାନେ ସେ ସଭାରେ ଯୋଗ ଦେଇପାରିବେ ନାହିଁ । ଆସ୍ଫାଳନ କରି ସେମାନେ କହିଲେ ଯେ କୁସୁମପୁରର ଲୋକେ ବହୁଯୁଗର ପରମ୍ପରା ଛାଡ଼ି ନାରୀମାନଙ୍କୁ ଘରକଣରୁ ପଦାକୁ ବାହାର କରିପାରିବେ ନାହିଁ । ମହାପାତ୍ର ସାହେବ ରାଗିଯାଇ କହିଲେ, ଏ ବିଜ୍ଞାନ ଓ ନାରୀ ସ୍ୱାଧୀନତାର ଯୁଗରେ ପର୍ଦ୍ଦାନସୀନ୍ ନାରୀ ଦେଖିଲେ ମୋତେ ଚିଡ଼ମାଡ଼େ !"

ଶୁଣିଲେ ପଧାନ ଛିଡ଼ାହୋଇ ହାତ ଯୋଡ଼ି ଗୋଟାଏ ବକ୍ତୃତା ଝାଡ଼ିଦେଲା । ଲୋକଟା ଟିକିଏ ପାଠଶାଠ ପଢ଼ିଛି । ତେଣୁ ସବୁ କଥାରେ ସେ କଥା କୁହେ, ଭାରି ବଡ଼ ବଡ଼ କଥା କୁହେ । ସମସ୍ତଙ୍କୁ ନମସ୍କାର କରି ସେ କହିଲା···

···ହଁ ଆଜ୍ଞା, ଚିଡ଼ମାଡ଼ୁଥିବ ଆପଣଙ୍କୁ । ଯିଏ ଯେତେ ବଡ଼ ଜ୍ଞାନୀ ହେଉନା କାହିଁକି ବା ବଡ଼ ପାହ୍ୟାକୁ ଯାଇଥାଉନା କାହିଁକି ଗଣତନ୍ତ୍ର ଶାସନରେ କେହି ଏତେ ବଡ଼ ନୁହେଁ ଯେ ତାର ଚିଡ଼ ମାଡ଼ିବାକୁ ଲୋକେ ଡରିଯିବେ । ଆଉ ଯଦି ଡରେଇଲେ, ତେବେ ଗଣତନ୍ତ୍ର ଶାସନ ହେଲା କି ? ଆପଣ ଆପଣଙ୍କ ମତାମତ କହିବେ ସିନା, ଚିଡ଼ ମାଡ଼େ, ଘୃଣା ହୁଏ—ଏସବୁ କହିପାରିବେ ନାହିଁ । ମୁଁ ଯଦି କୁହେ, ଆପଣଙ୍କ ସ୍ତ୍ରୀ ଯେଉଁ ଭଳି ସ୍ୱାମୀଙ୍କ ସେବା ଛାଡ଼ି ସଦାବେଳେ ପାଉଡ଼ର ମାଖି ଦାମିକା ଶାଢ଼ି ପିନ୍ଧି ବୁଥାରେ ଏପାଖ ସେପାଖ ଧାଁ-ଧପଡ଼ କରି ସବୁ ପୁରୁଷଙ୍କ ସହିତ ଅବାଧରେ

ମିଳାମିଶା କରୁଚନ୍ତି, ତା ଦେଖି ମୋତେ ଚଢ଼ମାଡ଼େ ଓ ଘୃଣା ହୁଏ, ତେବେ ଆପଣଙ୍କୁ କେମିତି ଲାଗିବ ! ଆଜ୍ଞା, ମୁଁ ତ ମୂର୍ଖ, ମୋ ଦୋଷ ଧେନବେ ନାହିଁ । ତେବେ ମୁଁ ଯାହା ବୁଝିଚି ଗଣତନ୍ତ୍ରର ମୂଳକଥା ହେଉଚି ନିଜର ମତାମତ ବିଷୟରେ ନମ୍ରତା ରଖିବା, ଅର୍ଥାତ୍ ନିଜର ମତ ଯେତେ ଦୃଢ଼ ବା ଯୁକ୍ତିସଙ୍ଗତ ହେଉ ନା କାହିଁକି, ଅନ୍ୟର ମତାମତ ଶୁଣିବା ପାଇଁ ମନର ଦୁଆର ସଦାବେଳେ ଖୋଲାରଖିବା । ନିଜର ମତର ଔଦ୍ଧତ୍ୟ ପ୍ରକାଶ କରିବା ନୁହେଁ । ଯେଡ଼େ ମୂର୍ଖ ହେଉ ନା କାହିଁକି ସମସ୍ତଙ୍କଠାରୁ କିଛି ଶିଖିବାର ଅଛି ଆଜ୍ଞା ! ପଞ୍ଚମୁଖେ ଦର ।

ଗୀତାରେ ପରା ଆଜ୍ଞା କହିଚି ତଦ୍‌ବିଦ୍ଧି ପ୍ରଣିପାତେନ, ପରିପ୍ରଶ୍ନେନ ସେବୟା । ପ୍ରଣିପାତ ମାନେ ନମ୍ରତା ଅର୍ଥାତ୍ ସବୁ ମତାମତ ଶ୍ରଦ୍ଧା ସହକାରେ ଶୁଣିବା । ପରିପ୍ରଶ୍ନ ମାନେ ଉପରଠାଉରିଆ ଦି' ଗୋଟି କଥା ଆଣିନେଇ ଆଖିଠାରି ପକାଇଦେବା ନୁହେଁ, ମୂଳକଥା ବୁଝିବାକୁ ଚେଷ୍ଟାକରିବା । ସେବା ମାନେ ସମସ୍ତଙ୍କ ଗୋଡ଼ ଘଷିବା ନୁହଁ, ସମସ୍ତଙ୍କ ସହିତ ଘନିଷ୍ଠଭାବେ ମିଳିବା, ଦୁଃଖ-ସୁଖରେ ଭାଗୀ ହେବା; କିନ୍ତୁ ମୁହଁରେ ଗଣତନ୍ତ୍ର କଥା କହି କାମରେ ଏକଛତ୍ର ଶାସନ ଭଳି କଥା କହିବା—ଏ ଦୋମୁହାଁ ନୀତିରେ ଲୋକେ ବାଉଳା ହୋଇଯିବେ, ଅସାଧୁତା ବଢ଼ିବ । ନାହିଁ ଯଦି ଏକଛତ୍ର ଶାସନ ଚାହାନ୍ତି, ତେବେ କରନ୍ତୁ ; ଆମର ଆପତ୍ତି ନାହିଁ । ଆମେ ମୁହଁ ସିଲାଇ କରିଦେବୁ, କେବଳ ଖୋଲିବୁ ଆପଣଙ୍କ ମତର ଜୟଗାନ କରିବାକୁ; କିନ୍ତୁ ଯେତେ ଘିଅ-ଦୁଧରେ ଆପଣ ଦେଶଟାକୁ ଭସାନ୍ତୁ, ଯଦି ମଣିଷକୁ ତାର ନିଜର ମତ ପ୍ରକାଶ କରିବାକୁ ନ ଦେବେ, ତାକୁ ସେ ସବୁ ଆଦୌ ସୁଖ ଲାଗିବ ନାହିଁ । ସୁନା ଶିକୁଳି କି କେବେ ଭଲ ଲାଗେ ? ଯେତେ ମଙ୍ଗଳକର କାମ ହେଉ ନା କାହିଁକି ଜବରଦସ୍ତ ଉପରେ ଲଦିଦେଲେ ତାହା ଏକଛତ୍ର ଶାସନ ଓ ସେଇ କାମକୁ ଲୋକଙ୍କ ସମର୍ଥନ ନେଇ ଲୋକଙ୍କ ମତାମତ ନେଇ କଲେ ଗଣତନ୍ତ୍ର ଶାସନ । ନାହିଁ, ଅମୁକ ଦେଶ ତମୁକ କଲାଣି, ଆମେ ଗୋଳ କରିବା, ଏମିତି ଅନ୍ଧାଧୁନ୍ଧିଆ ଜିଦ୍‌ରେ ଲାଭ କଅଣ ?···

'ବସଃ ତୁମେ, ଢେର୍ କହିଲଣି ବାଜେକଥା ।'—ମହାପାତ୍ର ସାହେବଙ୍କ ପାଞ୍ଚ ଟଳୋକ ଗର୍ଜିଉଠିଲେ ।

'ଆଜ୍ଞା ବସୁଚି' କହି ସୁନେଇ ପଧାନ ବସିପଡ଼ିଲା ସତ ; କିନ୍ତୁ ମହାପାତ୍ର ସାହେବଙ୍କ ଅନ୍ତରାତ୍ମା ଜଳାଇଦେଇଗଲା ।

ପେସ୍‌କାର ମକଦ୍ଦମା ନଥିପତ୍ର ଧରି ଛିଡ଼ାହେଲା । ପ୍ରଥମ ନଥିଟି ନେଇ ପଢ଼ି ମହାପାତ୍ର ସାହେବ ଆଦେଶ ଦେଲେ, ମୁଦାଲାକୁ ଡକାଅ ।

ଝୁମୁକା ପରଜା ହାଜର ହୋ, ଝୁମୁକା ପରଜା ହାଜର ହୋ···

ଝାଳ ପୋଛୁ ପୋଛୁ ଗୋଟିଏ ଲୋକ ଦୌଡ଼ି ବିଚାରାଳୟ ଭିତରକୁ ପ୍ରବେଶ କରି ବଲବଲ କରି ଚାରିଆଡ଼େ ଚାହିଁଲା । ପିନ୍ଧିଚି ଖଣ୍ଡିଏ ସାନ ଗାମୁଛା । ସେଥିରେ ପୁଣି ପିଗୁଳର

ଫାଟିଲେ ଭଣ୍ଡାର । ପୁଲିସ୍ କନେଷ୍ଟବଲ ତାର ହାତ ଧରି କାଠଗଡ଼ା ଭିତରେ ଭରତି କରିଦେଲା । ଚାରିଆଡ଼େ ସୁନ୍ଦର କାଠର କାନ୍ଥ ଦେଖି ତାକୁ ଖୁବ ଆନନ୍ଦ ଲାଗିଲା । ସେ କନେଷ୍ଟବଲକୁ ଚାହିଁ କୃତଜ୍ଞତାସୂଚକ ହସ ହସି ବଡ଼ବାବୁଙ୍କୁ ଜୁହାର କଲା । ମହାପାତ୍ର ସାହେବ କାଗଜରୁ ମୁହଁ ନ ଟେକି ପଚାରିଲେ—ତୁମର ନାମ ?

—ଟୁଣୁକା ପରଜା ।

—ପିତାର ନାମ ?

ମୁଦାଲା ନୀରବ ।

—ପିତାଙ୍କ ନାମ କଅଣ ? ପ୍ରଶ୍ନରେ ବିରକ୍ତି । ସମାନ୍ୟ ଟିକିଏ ସମୟ ନଷ୍ଟ ହେଲେ ତାଙ୍କୁ ବିରକ୍ତି ଲାଗେ ।

ଟୁଣୁକା ପରଜା ଚଞ୍ଚଳିତ ।

—ବାପା ନା' ଜାଣୁନା ? ପେସ୍‌କାର ରାଗିଯାଇ ପଚାରିଲା ।

—ଆଜ୍ଞା, ମନେ ପଡ଼ୁନାହିଁ । ଟୁଣୁକା କହିଲା ।

ମହାପାତ୍ର ସାହେବ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ମୁଦାଲା ଆଡ଼େ । ଟିକିଏ ଘୃଣା ଓ ବିରକ୍ତି ମଧ୍ୟ ଫୁଟିଉଠିଲା ତାଙ୍କ ମୁହଁରେ ।

ପେସ୍‌କାର ନଥି ଦେଖି କହିଲେ—ବାପାର ନାମ ତୋର ଝାରି ପରଜା ?

—ହୁଁ ହୁଁ । ସବେଗେ ମୁଣ୍ଡ ହଲାଇ ହସି ଉତ୍ତର ଦେଲା ଟୁଣୁକା ।

ମହାପାତ୍ର ସାହେବ ପୁଣି ପଚାରିଲେ—ବୟସ କେତେ ?

—ଆଠବରଷ ।

ଏଥର ମହାପାତ୍ର ସାହେବ ଆଉ ଧୈର୍ଯ୍ୟ ଧରି ପାରିଲେନାହିଁ । ଗର୍ଜିଉଠି କହିଲେ, କଅଣ ତୁମେ ପାଗଳ ନା ମୋ ସହିତ ଖେଳୁଚ ? ଅଦାଲତ ଅବମାନନା ଦୋଷରେ ତୁମକୁ ଦଣ୍ଡଦେବି ଜାଣ ?

ଟୁଣୁକା ଅବାକ୍ ଭାବରେ ଚାହିଁରହିଲା । ପେସ୍‌କାର ଧୀରେ କହିଲା, ଆଜ୍ଞା ସେମାନେ ବୟସ କଅଣ ଜାଣନ୍ତି ନାହିଁ । ବୟସ ତାର ଅନ୍ଦାଜ ପଚାଶ ଲେଖନ୍ତୁ ।

ବୟସ ଲେଖି ମହାପାତ୍ର ସାହେବ ଗମ୍ଭୀର ଭାବରେ ପଚାରିଲେ, ତୁମ୍ଭେ ମଦ ମାଡ଼ ଆଠ ତାରିଖରେ ମଦ ଖାଇ ସର୍ବସାଧାରଣ ରାସ୍ତାରେ ଗୋଳମାଳ କରୁଥିବାରୁ ଅଭିଯୋଗ ଆଗତ ହୋଇଚି । ଏ ବିଷୟରେ କଅଣ କହିବ ?

ଟୁଣୁକା ଆଶ୍ଚର୍ଯ୍ୟ ହୋଇ ଚାରିଆଡ଼େ ଚାହିଁ କହିଲା, ନାହିଁ ଆଜ୍ଞା, ମୁଁ କି ଭଦ୍ର ଲୋକ, ମୋର ସେ ସାହସ ହବ କି ? ମଦ ଟିକିଏ ଖାଇ ଦେଇଥିଲି, ଟିକିଏ ମାତିଥିଲି । ଆକାଶକୁ ଚାହିଁ ମନଟା କଅଣ ହୋଇଯିବାରୁ ଗାଇଲି—ପାପ ପୁଣ୍ୟ ମଧ୍ୟେ ତୁମେ ଅଛ ପ୍ରଭୁ ଚେଣ୍ଡ ସବୁ ଅଟେ ଭଲ ଯେ···

ଝୁମ୍ପୁକା ସ୍ୱାଦମତ ସ୍ୱର ଧରି କାନରେ ହାତଦେଇ ଗାଇବାକୁ ଲାଗିଲା ଆଖି ବୁଜି ବିଭୋର ହୋଇ ।

—ଚୁପକର । ମହାପାତ୍ର ସାହେବ ଗର୍ଜି ଉଠିଲେ ।

—ହଁ ଆଜ୍ଞା, ମୁଁ ନିଜେ ରଚିଛି ଏ ଗୀତ, ହେଁ ହେଁ···

—ତୁମେ ଦୋଷୀ ନା ନିର୍ଦ୍ଦୋଷ ? ମହାପାତ୍ର ସାହେବ ଆଇନସମ୍ମତ ପ୍ରଶ୍ନ ପଚାରିଲେ ।

—ଆଜ୍ଞା, କଅଣ ଗୀତ ବାନ୍ଧିବା···

—ନାହିଁ, ମଦ ଖାଇ ଗୋଳମାଳ କରିବା କଥା ।

—ହଁ ହଁ, ହଁ ହଁ, ମୁଁ ଦୋଷୀ ।

ମହାପାତ୍ର ସାହେବ ମୁଦାଲିର ବିବୃତି ଲେଖିଦେଇ ରାୟ ଦେଲେ, ତୁମକୁ ଦଶଟଙ୍କା ଜୋରିମାନା କରାଗଲା ; ନ ଦେଲେ ଦଶଦିନ ବିନାଶ୍ରମ କାରାଦଣ୍ଡ ।

ମୁଦ ଲି ଏ ରାୟ ଅଛା ଭାବି ହସି କହିଲା, ଆଜ୍ଞା ଦଶଟଙ୍କା !!

ମହାପାତ୍ର ସାହେବଙ୍କ ଇଙ୍ଗିତରେ କନେଷ୍ଟବଲ୍ ମୁଦାଲିକୁ ନେଇଗଲା ।

ମହାପାତ୍ର ସାହେବ ଦ୍ୱିତୀୟ ନଥି ଧରିଲେ ।

ହରି ତମ୍ବୁ ହାଜର ହୋ, ହରି ତମ୍ବୁ ହାଜର ହୋ, ହରି ତମ୍ବୁ ହାଜର ହୋ···

'ହାଜର ହୋ' କହି ହରି ତମ୍ବୁ ଲମ୍ବେ ଲମ୍ବେ ଚାଲିଗଲା କାଠଗଡ଼ା ଭିତରକୁ । ନିଜେ କାଠଗଡ଼ା କବାଟ ବନ୍ଦକରି ହାତଯୋଡ଼ି ଛିଡ଼ାହେଲା । ପିନ୍ଧିଚି ଗୋଟିଏ ଧୋତି ଓ ଗୋଟିଏ ମଇଳା କମିଜ । କାନ୍ଧରେ ପଡ଼ିଚି ଖଣ୍ଡେ ଗାମୁଛା, ସ୍ଥାନେ ସ୍ଥାନେ ରକ୍ତ ଲାଗିଚି । ମୁହଁଯାକ ବସନ୍ତର ଚିହ୍ନ । ଗୋଟିଏ ଗାଲ ଅସ୍ୱାଭାବିକ ଭାବେ ଫୁଲିଚି ।

ମହାପାତ୍ର ସାହେବ ନଥିପତ୍ର ପଢ଼ି ପଚାରିଲେ, ତୁମ ବିରୁଦ୍ଧରେ ଅଭିଯୋଗ ଯେ ଗତ ମଙ୍ଗଳବାର ଦିନ ଖଇରପୁର ହାଟ ଭିତରୁ ତୁମେ ଫଗୁ ପାତ୍ରଙ୍କର ଗୋଟିଏ ପୁରୁଣା ଛତା ଚୋରିକରି ନେଇ ପଳାଇଯାଉଥିବା ସମୟରେ ତୁମକୁ ଲୋକମାନେ ଧରି ତୁମ ପାଖରୁ ଚୋରି ମାଲ ଜବତକଲେ । ଏ ବିଷୟରେ ତୁମର କଅଣ କହିବାର ଅଛି ?

—କିଛି କହିବାର ନାହିଁ ହଜୁର ! ଏ କଥା ସତ । ସାତ ବରଷ ଆଗେ ଥରେ ଚୋରିକରି ସାତମାସ ଜେଲ ଯାଇଥିଲି । ତା'ପରେ ଆଉ ଥରେ ଚୋରି କରିଥିଲି ; କିନ୍ତୁ ପ୍ରମାଣ ନମିଳିବାରୁ ଛାଡ଼ ପାଇଥିଲି । ଯେତେ ଚେଷ୍ଟାକଲେ ବି ଏ ପ୍ରକୃତି ଯାଉନାହିଁ । ସେଦିନ ସାଙ୍ଗମାନେ ଟିକିଏ ମଦ ଖୁଆଇ ଦେଲେ । ନିଶାରେ ଶଳା ଚୋରି କଥା ଫେର୍ ମନେ ପଡ଼ିଗଲା, ଚୋରି କରିପକାଇଲି ।

ଏତେକ କହି ହରି ତମ୍ବୁ କାନ୍ଦିବାକୁ ଲାଗିଲା ।

ମହାପାତ୍ର ସାହେବ ତା ଆଡ଼େ ଚାହିଁ ପଚାରିଲେ, ତୁମର ଗାଲ ଫୁଲିଚି କାହିଁକି ? ଆଉ ତୁମ ଗାମୁଛାରେ ରକ୍ତର ଦାଗ ଲାଗିଲା କେମିତି ?

—ସେ କିଛି ନୁହଁ ଆଜ୍ଞା ! ମୁଦାଲି ଗାମୁଛାଟି ଲୁଚାଇଦେଲା ।

ମହାପାତ୍ର ସାହେବଙ୍କ ସନ୍ଦେହ ହେଲା । ସେ ପୁଣି ପଚାରିଲେ ।

ହରି ଡମ୍ବ କହିଲା, ମୋତେ ଧରି ଲୋକେ ଜମିଦାରଙ୍କ ଘର ପାଖକୁ ନେଇଗଲେ । ସେ ମୋତେ ନସ୍ତକ ମାଡ଼ଦେଲେ । ମୋର ଦୁଇଟି ଦାନ୍ତ ଭାଙ୍ଗିଗଲା । ତାଙ୍କର ଦୋଷ କଅଣ ? ମୋ'ର ଦୋଷର ଫଳ ପାଇଲି ।

—ତୁମ୍ଭେ ଏ ବିଷୟରେ ଆପତ୍ତି କରିଚ ?

—ନାହିଁ ଆଜ୍ଞା, ଏମିତ ଆପତ୍ତି କଲେ ଧର୍ମ ସହିବ ନାହିଁ ।

—ତୁମ୍ଭେ ଦୋଷୀ ନା ନିର୍ଦ୍ଦୋଷ ?

—ମୁଁ ଦୋଷୀ ?

ମହାପାତ୍ର ସାହେବ ରାୟଦେଲେ, ତୁମ୍ଭଙ୍କୁ ଏକବର୍ଷ ସଶ୍ରମ କାରାଦଣ୍ଡ । ହରି ଡମ୍ବ କୃତଜ୍ଞ ଭାବରେ ମୁଣ୍ଡ ନୁଆଁଇ ଜୁହାର ହୋଇ ପୁଲିସ୍ କନେଷ୍ଟବଲକୁ ହାତ ବଢ଼ାଇଦେଲା ।

ମହାପାତ୍ର ସାହେବ ତୃତୀୟ ନଥି ପଢ଼ିବାକୁ ଲାଗିଲେ ।

ଦୁଇଜଣ ପୁଲିସ୍ କନେଷ୍ଟବଲ ଅପରାଧୀ ବଦେଇ ଦାସକୁ କାଠଗଡ଼ା ଭିତରେ ଭରିଦ କରି ଜଗି ଛିଡ଼ାହୋଇ ରହିଲେ । ବଡ଼ ବିପଜ୍ଜନକ କଏଦୀ ଏ । ତେଣୁ ତାର ହାତକଡ଼ା ଖୋଲା ହେଲନାହିଁ । ଚୋରି ଅପରାଧରେ ଏ ଦଶମାସ କାରାଦଣ୍ଡ ଭୋଗ କରୁଥିଲା । ଚାରିମାସ ଭୋଗହେବା ପରେ କିଛିଦିନ ପୂର୍ବେ ସେ ଜେଲଖାନାରୁ ପଳାଇ ଯାଇ ଧରା-ପଡ଼ିଚି । ତାର ପଳାୟନ ପନ୍ଥା ଅତି ଦୁଃସାହସିକ । ରାତିରେ ସବୁ କଏଦୀ କଏଦୀଖାନାରେ ପଶିବା ପରେ ଘରେ ତାଲା ଲାଗିଲା । କଏଦୀମାନେ ଘରେ ଶୋଇଲେ । ଘରର କାନ୍ଥ ଅତି ଉଚ । ଝରକା ଆଦୌ ନାହିଁ । କେବଳ ଛାତକୁ ଲାଗି ଆଲୁଅ ଆସିବା ପାଇଁ ସାନ ସାନ ଜାଲାକବାଟି କେତୋଟି । ରାତିରେ ସମସ୍ତେ ଶୋଇବା ପରେ ବଦେଇ ଚଦରକୁ ଚଦର ଗଣ୍ଠି ଦେଇ ତାକୁ ଫୋପାଡ଼ି ସେ ଜାଲା କବାଟିରେ ଅଟକାଇ ସେ ବାଟେ ଛାତ ଉପରକୁ ଉଠିଲା । ସେଠାରୁ ଏକାଡ଼ିଆଁକେ ଯାଇ ଉଠିଲା କଏଦୀଖାନାର ସୁଉଚ ପାଚେରି ଉପରେ । ସେଠାରୁ ଡେଇଁଲା ଚାରିଜଣ ହାତ ତଳେଥିବା ଭୂଇଁକୁ । ସେଇ ରାତିରେ ବଦେଇ ଗଲା ନିଜ ଗାଁକୁ ତିରିଶ ମାଇଲ ଦୂରରେ ।

ମହାପାତ୍ର ସାହେବ ନଥିରୁ ଘଟଣାଟି ପଢ଼ି ଉପରକୁ ଚାହିଁଲେ ମୁହାଁଳିଆ ଅଡ଼େ । ଆଖିରେ ତାଙ୍କର କଠୋରତା ଫୁଟିଉଠିଲା । ଆଇନ ବହି ବାହାରକରି ଦେଖିଲେ ଏ ଦୋଷପାଇଁ ଦୁଇବର୍ଷ ଜେଲ୍ ଦିଆଯାଇପାରେ ।

—ତୁମର କ'ଣ କହିବାର ଅଛି ? ମହାପାତ୍ର ଆଇନଗତ ପ୍ରଶ୍ନ ପଚାରିଲେ ।

ଆଖିରୁ ଲୁହ ପୋଛି ବଦେଇ କହିଲା, ଜେଲ୍‌ଖାନାକୁ ଆସିବାବେଳେ ମୋର ବାହା ହୋଇଥିଲା । ସେ ଦିନ ରାତିରେ ତା କଥା ମନେପଡ଼ିବାରୁ ମନଟା କେମିତି ଘାଣ୍ଟି ଚକଟି ହେଲା । ମୁଁ ତା'ପରେ ଯାହା କରିଚ ବେହୋସ୍‌ରେ କରିଚ । ମୋର ହୋସ୍ ହେଲା ଯାଇ ଗାଁରେ । ସେତେବେଳେ ବୁଝିଲି ମୁଁ କ'ଣ କରିଛି । ମୋତେ ଦଣ୍ଡ ଦିଅନ୍ତୁ । ମୁଁ ଦୋଷୀ, ମୁଁ

ଦୋଷୀ । ହଜୁର ତାକୁ ଗୁରୁ ବେଶି ଦନ ମୁଁ ରହପାରବ ନାହିଁ, ମୋତେ ଅଳ୍ପ ଦଣ୍ଡ ଦେବେ ।

ଏତେକ କହ ବଦେଇ ପୁଣି ଅଧୀର ହୋଇପଡ଼ଲା । ଆଖିରୁ ପାଣି ଝରି କାଠଗଡ଼ା ଭିତରେ ଠପ୍ ଠପ୍ ପଡ଼ୁଛି । ପୋଛିବାର ଉପାୟ ନାହିଁ । ଦୁଇ ହାତରେ ଲୁହା ଶିକୁଳି ।

ମହାପାତ୍ର ସାହେବ ଆଦେଶ ଦେଲେ ଶିକୁଳି ଖୋଲିଦେବାକୁ । ଲୁହ ପୋଛି ମୁଣ୍ଡ ତଳକୁ ପୋତ ମୁଦାଲା ଛିଡ଼ାହେଲା । ମହାପାତ୍ର ସାହେବଙ୍କ ହଠାତ୍ ମନେହେଲା ବଦେଇ ଗୋଟିଏ ମଣିଷ । ସେ ଧୀରେ ଧୀରେ କହିଲେ, ଦେଖ ବଦେଇ ଦାସ, ତୁମେ ନଜେ ବଗ୍ଭର କର, ମୁଦାଲା ଯେଉଁ ଅପରାଧ କରିଛ ଆଇନ ଅନୁସାରେ ତାର ଚରମ ଦଣ୍ଡ ଦୁଇ ବର୍ଷ କାରାଦଣ୍ଡ । ତୁମେ କୁହ, ମୁଦାଲାର କେତେ ଦଣ୍ଡ ପାଇବା ଉଚିତ, ତୁମେ ମନେ-କରୁଛ ।

ବଦେଇ ଦାସର ଅଦ୍ଭୁତ ପରିବର୍ତ୍ତନ ହେଲା । କାଠଗଡ଼ା ଭିତରେ ଯିଏ ଛିଡ଼ା ହୋଇଛି, ସିଏ ଆଉ ମୁଦାଲା ନୁହଁ । ସେ ବର୍ତ୍ତମାନ ବଗ୍ଭରକ । ବଦେଇ ଦାସ ଭାବୁଛି ମୁଦାଲାର କେତେ ଦଣ୍ଡ ହେବା ଉଚିତ । କିଛିକ୍ଷଣ ଭାବ ବଦେଇ କହିଲା, ଏକବର୍ଷ ଦଣ୍ଡ ପାଇବା ଉଚିତ ।

ମହାପାତ୍ର ସାହେବ ମଧ୍ୟ ଠିକ୍ ସେତିକ ଭାବିଥିଲେ । ଦଣ୍ଡାଦେଶ ଶୁଣି ମୁଦାଲା ବଦେଇ ସ୍ତମ୍ଭିତ ଭାବରେ ଛିଡ଼ାହୋଇ ରହିଲା । ମୁହଁରୁ ତାର କଥା ବାହାରିଲା ନାହିଁ । ହାତକଡ଼ି ପିନ୍ଧାଇ କନେଷ୍ଟବଲ ତାକୁ ଟାଣି ଟାଣି ନେଇଗଲେ । ବଦେଇ ଫେରି ଫେରି କେବଳ ବ୍ୟାକୁଳ ଭାବରେ ମହାପାତ୍ର ସାହେବଙ୍କ ଆଡ଼େ ଗ୍ଭହୁଁଥାଏ ।

ମହାପାତ୍ର ସାହେବ ଦୀର୍ଘ ନିଃଶ୍ୱାସ ପକାଇ ଗ୍ଭହିଁରହିଲେ ତା ଆଡ଼େ । ତାଙ୍କର ମନଟା ଘାରିଦେଲା । ଅପରାଧୀକୁ ନଜର ବଗ୍ଭର କରିବାକୁ କହିବାର ହୀନତାପାଇଁ ତାଙ୍କର ମନ ଅନୁଶୋଚନାରେ ଭରିଉଠିଲା ।

କେତେ କ୍ଷଣ ଗ୍ଭହିଁରହିଥିଲେ ସେ ଆଡ଼େ, ତାଙ୍କର ଖିଆଲ ନ ଥିଲା । ହଠାତ୍ କାଠଗଡ଼ା ଆଡ଼େ ଦୃଷ୍ଟି ପଡ଼ିବାରୁ ଦେଖିଲେ ଗୋଟିଏ ଅଦ୍ଭୁତ ମଣିଷ ଛିଡ଼ାହୋଇଛି । ବାଳଗୁଡ଼ିକ ଫୁରୁଫୁରୁ ଉଡ଼ୁଛି । ବେକ ଉପରେ ପଡ଼ିଛି ଗୋଟିଏ ବଡ଼ ଜୁଡ଼ା । କେତେ ବର୍ଷ ହେବ ବୋଧହୁଏ ମୁଣ୍ଡରେ ତେଲ ପଡ଼ିନାହିଁ କି ପାନିଆ ଲାଗିନାହିଁ, କି ସେ ଜୁଡ଼ା ବ ଫିଟି ନାହିଁ । ଦାନ୍ତଗୁଡ଼ିକ ହଳଦିଆ । ଚିପଣ୍ଡ କାଳିଆ, ପାଞ୍ଚ ହାତର ପୁରୁଷଟାଏ । ନାଁ' ତା'ର ଅବୋଲକର୍‌ା ।

ହାତକଡ଼ି ଖୋଲିଦେବାପରେ ଅବୋଲକର୍‌ା ଦାନ୍ତ ନକୁଟି ହସିଲା । ଖଚେଇ ହେଲା ପରି ମନେହେଲା । ହାତଯୋଡ଼ି ଜୁହାର ହେଲାରୁ ଦେଖାଗଲା ଦୁଇଟି ହାତଯାକ ତାର କୁଷ୍ଠରୋଗଗ୍ରସ୍ତ ।

ନିଜର କନ୍ୟାକୁ ଏ ଟାଙ୍ଗିରେ ଟିକି ଟିକି କରି କାଟିପକାଇଛି । ଅପରାଧ ଓ ଅପରାଧୀର ଇତିହାସ ଏହିପରି । ଅବୋଲକରାର ବାପା ମାଆ ତାର ପିଲାଦିନରୁ ମରିଗଲେ । ଦଶବର୍ଷ ବୟସରେ ତାହାର କୁଷ୍ଠରୋଗ ଆରମ୍ଭ ହେବାରୁ ସେ ଗାଁ ଛାଡ଼ି ପଳାଇଗଲା ମହାଦେବଙ୍କ ପାଖରେ ଧାରଣା ପଡ଼ିବାକୁ । ତା'ପରେ କିଛି ଫଳ ନ ହେବାରୁ ଅନେକ ବର୍ଷ ଏଠି ସେଠି ବୁଲି ଶେଷରେ ଗ୍ରାମକୁ ଫେରିଲା ସାଙ୍ଗରେ ସ୍ତ୍ରୀ ଓ ବାଳୁତ ନେଇ । ତାହାର କକା ଇତିମଧ୍ୟରେ ତାହାର ଜମି ଭୋଗକରୁଥିଲା । ଜମି ବା କେତେ, ମାଣେ ହେବ କି ନା; କିନ୍ତୁ କକା ଆଉ ତାକୁ ଛାଡ଼ିବାକୁ ନାରାଜ । କକା ପୁତୁରା ଭିତରେ ରୋଜ କଳି ଲଗିଲା । କକା ଖରା ଅତ୍ୟାଚାର କଲା ଅବୋଲକରା ଉପରେ । ଶେଷରେ ଦିନେ ରାତିରେ କକା ଅବୋଲକରା ଘରକୁ ଢେଳା ଢିମା ଫୋପାଡ଼ିବାକୁ ଲଗିଲା । ଅବୋଲକରା ଯେତେ ନେହୁରା ହେଲା, ଶୁଣିଲା ନାହିଁ । ସ୍ଥଳରେ ଛଣ କେରାଏ କେରାଏ କେଉଁଠି କେଉଁଠି ପଡ଼ିଛି । ଗୋଟାଏ ଢିମା ସ୍ଥଳରୁ ଗଳିପଡ଼ିଲା ଅବୋଲକରା ପୁଅ ଉପରେ । ପୁଅ ଥରେ କାନ୍ଦି ଅଜ୍ଞାନ ହୋଇଗଲା । ଅବୋଲକରା ଟାଙ୍ଗିଆ ଧରି ଧାଇଁଗଲା ବାହାରକୁ, ଆଉ ସାଙ୍ଗେ ସାଙ୍ଗେ କକା ତାର ଏକା ପାହାରକେ ଖତମ୍ । ସେତିକରେ ସନ୍ତୁଷ୍ଟ ନ ହୋଇ ଅବୋଲକରା ତାକୁ ଟିକି ଟିକି କରି କାଟିଲା ସେଠି ।

ପ୍ରଥମ ସାକ୍ଷୀ ଆସି ସାକ୍ଷ୍ୟ ଦେଇଗଲା । ଅବୋଲକରାର ସେଥି ପ୍ରତି ଭ୍ରୂକ୍ଷେପ ନାହିଁ । ସେ ବାହାରକୁ କାହାଆଡ଼େ ଚାହିଁ ହସୁଛି ଓ ହାତଠାରି ଡାକୁଛି ଓ ମଝିରେ ମଝିରେ ତାଳି ମାରୁଛି ।

—ଲୋକଟା ପାଗଳ ହୋଇଯାଇଛି ନା କଅଣ ?-ମହାପାତ୍ର ସାହେବ ପଚାରିଲେ ।

—ନା ଆଜ୍ଞା, ବାହାରେ ତାହାର ସ୍ତ୍ରୀ ତାହାର ପୁଅକୁ ଧରି ଛିଡ଼ାହୋଇଛି । ସେ ପୁଅକୁ ଖେଳାଉଛି ।

—ତାର ସ୍ତ୍ରୀ କାହିଁକି ଆସିଛି ?

—ସାକ୍ଷୀ ଦେବାକୁ ।

—ସାକ୍ଷୀ !!

—ହୁଁ ଆଜ୍ଞା, ସେଇ ତ ଏକମାତ୍ର ସାକ୍ଷୀ, ଯିଏ ସବୁ ଦେଖିଛି ।

ପ୍ରଥମ ସାକ୍ଷୀ ପରେ ଅବୋଲକରାର ସ୍ତ୍ରୀ ଆସି ଛିଡ଼ାହେଲା ତାର କୋଳରେ ଧରି କାଳିଆ କଟକଟ ବ୍ଲକଟେ ପିଲା, ଚେମିଣିଆ ଛୁଆପରି । ଅବୋଲକରାକୁ ଆଉ ସମ୍ଭାଳି ହେଲା ନାହିଁ । ସବୁ ବାଧା ଏଡ଼ି ଦେଇ ସେ ଦୌଡ଼ିଆସିଲା ତା ପୁଅ ପାଖକୁ । ମହାପାତ୍ର ସାହେବ ଆଦେଶଦେଲେ ମୁଦାଲାକୁ ବାଧା ନ ଦେବାକୁ । ଅନେକ କ୍ଷଣ ଆଦର କରିବା ପରେ ମହାପାତ୍ର ସାହେବ କହିଲେ, ଏଥର ଯାଅ ତୁମ ସ୍ଥାନକୁ । ନିଜ ଜାଗାରେ ଛିଡ଼ା ହୋଇ ଅବୋଲକରା କାନ୍ଦୁଥାଏ ଓ ପୁଅକୁ ଚାହିଁ ହସୁଥାଏ ।

ମହାପାତ୍ର ସାହେବ ଚୌକି ଛାଡ଼ି ଉଠି କହିଲେ, ଆଜି ବସ୍ତୁର ଏତିକିରେ ଥାଉ ।

ସମାଜମଙ୍ଗଳ କେନ୍ଦ୍ରର ସଭା କାର୍ଯ୍ୟ ଶେଷକରି ନିଜ ଘରକୁ ଫେରୁ ଫେରୁ ତାଙ୍କର ଖିଆଲ ଇଚ୍ଛାହେଲା ଥରେ ଜେଲ୍‌ଖାନାରେ ଆଜିକାର ଅପରାଧୀମାନଙ୍କୁ ଦେଖି ଆସିବାକୁ । ଜେଲର ସିପାହୀମାନେ ତାଙ୍କୁ ଭିତରକୁ ନେଇଗଲେ । କଏଦୀମାନେ ସେତେବେଳେ ଧାଡ଼ି ଧାଡ଼ି ହୋଇ ଖାଇବସିଥାଆନ୍ତି । ଝୁଣୁକାର ଭାତ ଥାଳରେ ହାତ ରହିଛି ; କିନ୍ତୁ ଆକାଶକୁ ଚାହିଁ ସେ ଗୀତ ଗାଇ ଚାଲିଛି ଗୁଣୁ ଗୁଣୁ ହୋଇ, ମୁହଁରେ ତାର ହସ ଲାଗି-ରହିଛି । ହରି ତମ୍ବୁ ବଡ଼ ବଡ଼ ଗୁଣ୍ଡା କରି ଖାଇଚାଲିଛି, କୌଣସି ଆଡ଼କୁ ତାର ନଜର ନାହିଁ । ମହାପାତ୍ର ସାହେବ କିଛିକ୍ଷଣ ତା ପାଖରେ ଠିଆହେବା ପରେ ତାର ନଜର ପଡ଼ିଯିବାରୁ ସେ ଛିଡ଼ା ହୋଇ ଅଇଣ୍ଠା ହାତରେ ଜୁହାର କରି ଲଜ୍ଜାରେ ହସିଦେଲା ।

ବଦେଇ ଦାସ କିନ୍ତୁ ଚାହିଁରହିଛି ଶୂନ୍ୟ ଦୃଷ୍ଟିରେ, ଆଖିରୁ ତାହାର ପାଣି ଝରି ପଡ଼ୁଛି । ଘନ ଘନ ଦୀର୍ଘ ନିଃଶ୍ୱାସ ଛାଡ଼ୁଛି ।

ଦାସେ ଖାଅ, ମହାପାତ୍ର ସାହେବ କଣ୍ଠରେ ଛିଡ଼ାହୋଇ କହିଲେ ।

ମହାପାତ୍ର ସାହେବଙ୍କୁ ଦେଖି କାନ୍ଦିପକାଇ ବଦେଇ ଦାସ କହିଲା, ହଜୁର ମୋତେ ମୋର ବସ୍ତୁରପାଇଁ କହିଲେ ?

—ମୋର ଦୋଷ ହୋଇଛି ବଦେଇ, ମୋର ଦୋଷ ହୋଇଛି । ମହାପାତ୍ର ସାହେବଙ୍କ ଆଖି ଛଳଛଳ ହୋଇଗଲା । ସେଠାରୁ ତରତର ହୋଇ ଚାଲିଗଲେ ।

ଅବୋଲକରା କୁଷ୍ଠରୋଗୀ ବୋଲି ତାକୁ ଅଲଗା ଖାଇବାକୁ ଦିଆହୋଇଛି । ସେଠି ଯାଇ ଦେଖିଲେ ଅବୋଲକରା ଭାତଗୁଣ୍ଡା ସହ ହାତ ମୁହଁକୁ ଆସୁ ଆସୁ ଅଧ-ବାଟରେ ରହିଯାଇଛି । ଅନେକକ୍ଷଣ ଛିଡ଼ାହେଲେ ସେଠି; କିନ୍ତୁ ଅବୋଲକରାର ହାତ ସେମିତି ରହିଛି । ଆଖିରୁ ତାର ପାଣି ଝରିପଡ଼ି ଭାତ ଉପରେ ପଡ଼ି ପଡ଼ି ଜମିଗଲାଣି ଅନେକ । ଯେ ଭାବୁଛି ତାର ପୁଅ ଆଜି ଖାଇବାକୁ ପାଇ ନ ଥିବ ।

କିଛି ନ କହି ମହାପାତ୍ର ସାହେବ ଘରକୁ ଫେରିଲେ । ସୁଷମା ଦେବୀ ଦୌଡ଼ି ଆସି ମୃଣାଳ ବାହୁ-ବଲ୍ଲରୀ ତାଙ୍କର ବେକରେ ଜଡ଼ାଇ ଦେଇ ପଚାରିଲେ, ଆଜି ଲଞ୍ଚ ଖାଇଆସିଲ ନାହିଁ ଯେ ? ମୁଁ ଭାବି ଭାବି···

ମହାପାତ୍ର ସାହେବ ତାଙ୍କୁ ଠେଲି ଦେଇ ନୀରବରେ ବସିପଡ଼ିଲେ ଆରାମଚୌକି ଉପରେ । ଆଜି ତାଙ୍କର ସବୁ ଯେପରି ଓଲଟପାଲଟ ହୋଇଯାଇଛି । କେବଳ ମନେ ପଡ଼ୁଛି ଝୁଣୁକାର ଗୀତ—ପାପ ପୁଣ୍ୟ ମଧ୍ୟେ ତୁମେ ଅଛ ପ୍ରଭୁ ତେଣୁ ସବୁ ଅଟେ ଭଲ ଯେ··· ସବୁ ଆଜି ତାଙ୍କୁ ବୈଚିତ୍ର୍ୟମୟ, ସୁନ୍ଦର ଲାଗୁଛି । ଏହି ବୈଚିତ୍ର୍ୟ ଯାହାଙ୍କର ସୃଷ୍ଟି, ତାଙ୍କ ପାଦତଳେ ଲୋଟିଯିବାକୁ ଉଦ୍‌ବେଗ ହେଉଛି । ଏମାନଙ୍କ ପାଦ ଧରି କହିବାକୁ ଇଚ୍ଛା ହେଉଛି, ତୁମେ ଭଲ, ତୁମେ ଭଲ···

